# ଜୀବନ ଶିଳ୍ପୀ

## ପ୍ରଫୁଲ୍ଲ କୁମାର ମହାନ୍ତି: ବ୍ୟକ୍ତିତ୍ୱ ଓ କୃତିତ୍ୱ

ସମ୍ପାଦନା

**ବସନ୍ତ କୁମାର ପଣ୍ଡା**



ଜ୍ଞାନଯୁଗ ପବ୍ଲିକେଶନ
ଭୁବନେଶ୍ୱର

Email : contact@gyanajuga.com    Website : www.gyanajuga.com

# ଜୀବନ ଶିଳ୍ପୀ

## ପ୍ରଫୁଲ୍ଲ କୁମାର ମହାନ୍ତି: ବ୍ୟକ୍ତିତ୍ୱ ଓ କୃତିତ୍ୱ

ସମ୍ପାଦନା

ବସନ୍ତ କୁମାର ପଣ୍ଡା

କମଳା ପ୍ରସାଦ ମହାପାତ୍ର

ପ୍ରକାଶନ ଉପଦେଷ୍ଟା :
ବିନୋଦ ବିହାରି ବିଶୋଇ
ମୋ: ୯୯୩୭୬୯୪୭୮୧

ପ୍ରକାଶକ :
ଜ୍ଞାନଯୁଗ ପବ୍ଲିକେଶନ,
ଏନ୍-୬/୪୨୮, ଆଇ.ଆର୍.ସି. ଭିଲେଜ୍
ନୟାପଲ୍ଲୀ, ଭୁବନେଶ୍ୱର - ୧୫
ଫୋନ୍ ନଂ : ୦୬୭୪-୨୩୬୦୭୮୧

ଅକ୍ଷରସଜ୍ଜା :
ଦିଗମ୍ବର ମହାଳିକ
ମୋବାଇଲ୍: ୮୬୩୭୨୭୫୬୭୬

ମୁଦ୍ରଣ :
ପ୍ରତିଭା ପ୍ରିଣ୍ଟର୍ସ,
ଭୁବନେଶ୍ୱର

ପ୍ରକାଶକାଳ : ୨୦୧୯

ପ୍ରଚ୍ଛଦ : ସମର

ମୂଲ୍ୟ : ଟ.୨୫୦.୦୦

# JIBAN SILPI

**Prafulla Kumar Mohanty: Personality and Achievement**

*Editing :*

**Basanta Ku. Panda**
**Kamala Pr. Mahapatra**

Price : 250.00

Published by Smt. Susama Bisoi on behalf of Gyanjuga Publication, N-6/428, IRC Village, Nayapalli, Bhubaneswar-751015, Odisha, Ph. : (0674) 2360781

ସମ୍ପାଦକୀୟ ସୂଚନା

# ବ୍ୟକ୍ତିଗତ ଓ ନୈର୍ବ୍ୟକ୍ତିକ

"The meaning of life is to find your gift
the purpose of life is to give it away."

ଏଇ ମୂଲ୍ୟବାନ୍ ଉକ୍ତିଟିର ସ୍ରଷ୍ଟା ବିଶ୍ୱସାହିତ୍ୟର ଶ୍ରେଷ୍ଠତମ ରୂପକାର ଉଇଲିଅମ୍ ସେକସ୍‌ପିଅରଙ୍କୁ ପ୍ରିୟ ଲେଖକ ଭାବେ ଗ୍ରହଣ କରି ଜୀବନରେ ସାହିତ୍ୟ ସୃଷ୍ଟିକୁ ବିମଳ ଆନନ୍ଦ ଓ ପରମ ପ୍ରାପ୍ତି ବୋଲି ମାନି ନେଇଛନ୍ତି କବି, ନାଟ୍ୟକାର, ସାହିତ୍ୟ ସମାଲୋଚକ ପ୍ରଫୁଲ୍ଲ କୁମାର ମହାନ୍ତି। ସେକ୍ସପିଅରଙ୍କ ନାଟକକ୍ଷର ମାନବ ଜୀବନର ଯେଉଁ ଅଫୁରନ୍ତ ଚିତ୍ର, ଅକଳ୍ପନୀୟ ବିଚିତ୍ର ଚରିତ୍ର ଓ ଅନତିକ୍ରମଣୀୟ ଅବତାରଣା ପ୍ରକାଶିତ,ତାହା ଲେଖକଙ୍କୁ ଚିର ପ୍ରଲୁବ୍ଧ କରିଛି ଓ ସେହିପରି ବିପୁଳ ସାହିତ୍ୟ ସୃଷ୍ଟିର ସମ୍ଭାବନା ଆଡ଼କୁ ପ୍ରଧାବିତ କରିଛି। ତେଣୁ କବିତାରୁ ନିଜର ପବିତ୍ର ରଚନାକର୍ମ ଆରମ୍ଭ କରି କ୍ରମଶଃ ନାଟକ, ଗଳ୍ପ ଓ ପ୍ରବନ୍ଧ ଆଲୋଚନା ସୃଷ୍ଟି କରିଥିଲେ ମଧ୍ୟ ସେ ପ୍ରକୃତରେ କବି। କବିତା ତାଙ୍କର ପ୍ରିୟ କଳା ଓ ସବୁ ରଚନାରେ କବିତ୍ୱର ସତ୍ତା ବିରାଜମାନ। ବଳିଷ୍ଠ ଦାର୍ଶନିକ ଗଦ୍ୟରଚନା ପାଇଁ ପ୍ରସିଦ୍ଧି ଅର୍ଜନ କରିଥିଲେ ବି ସେସବୁର ପ୍ରକାଶ ଶୈଳୀ କାବ୍ୟମୟ। ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ଏପରି ଅଦ୍ଭୁତ ଦକ୍ଷତା ଯେ ତାଙ୍କର ଯେକୌଣସି ତୁଚ୍ଛ ବସ୍ତୁ ବା ବିଷୟ ଅପୂର୍ବ ଶୋଭା ଘେନି ପାଠକକୁ ପ୍ରାଣ ସ୍ପନ୍ଦିତ କରେ। ଦୈନନ୍ଦିନ ବାସ୍ତବତା ତାଙ୍କ ଅମୃତହସ୍ତ ସ୍ପର୍ଶରେ ଏପରି କମନୀୟ ହୋଇ ଉଠେ ଯେ ଏକ ରହସ୍ୟମୟ ମାୟାରେ ପାଠକକୁ ଆବିଷ୍ଟ କରେ। ସେ 'ନିଜ ଇଚ୍ଛାର ପୃଥିବୀ' ଗଢ଼ନ୍ତି ଯେଉଁ ପୃଥିବୀରେ କ୍ଷମତା, ରାଜପଣ, ଆଦର୍ଶ ଆତ୍ମମ୍ଭରିତା, ଅନୁଶାସନ ଏପରିକି ମୂଲ୍ୟବୋଧ ଓ ନୈତିକତା ଆଦି ଅର୍ଥହୀନ। ସେ ପୃଥିବୀର ଅକପଟ ବନ୍ଧୁତା, ଆତ୍ମୀୟତା, ଜୀବନରାଗ, ମୁଖାହୀନ ମଣିଷର

ଅସଲରୂପ, ବାସ୍ତବସତ୍ୟ ଓ ଶୁଦ୍ଧ ଆନନ୍ଦ ଭିତରେ ପ୍ରତି ନିୟତ ଜୀବନର ପ୍ରକୃତ ରହସ୍ୟ ଉନ୍ମୋଚିତ ହେଉଥାଏ। ସେଥିପାଇଁ ତାଙ୍କର ପ୍ରିୟ ମହାଭାରତ ପୁଣି ସେକ୍ସପିଅରଙ୍କ ନାଟକ। ଧର୍ମମୟ ଯୁଧିଷ୍ଠିର ତାଙ୍କ ପାଇଁ ଯେତିକି ସତ୍ୟ ମନ୍ୟୁମୟ ଦୁର୍ଯ୍ୟୋଧନ ସେତିକି। ଅଥେଲୋ ଯେତିକି ବାସ୍ତବ ଇଆଗୋ ସେତିକି। ଶବ୍ଦରେ ଯାହା କହିହେବ ନାହିଁ। ଅଭିନୟରେ ତାହା କହିବା ପାଇଁ ସେ ନାଟକ ଲେଖିଲେ, ନିର୍ଦ୍ଦେଶନା ଦେଲେ, ଅଭିନୟ କଲେ। କେବଳ, ସେକିକି ନୁହେଁ, ସଂଗୀତର ମଧୁର ମୂର୍ଚ୍ଛନାରେ ଓ ଆବୃତ୍ତିର କଳକଲ୍ଲୋଳରେ ଅପୂର୍ବ ମାଦକତା ସୃଷ୍ଟିକରେ। ଏସବୁ ପରେ ଭାରତୀୟ ସଂସ୍କୃତିରେ ଭଗବଦ୍ ଗୀତାର ଶାଶ୍ୱତ ମୂଲ୍ୟକୁ କଳନାକରିବା ପାଇଁ ଯେଉଁ ଭାବଗମ୍ଭୀର ଗ୍ରନ୍ଥଟି ରଚନା କଲେ ସେଥିରେ ସାହିତ୍ୟ ସହିତ ଦର୍ଶନର ଏକାନ୍ତିକ ସମନ୍ୱୟରେ ଧର୍ମ - ସଂସ୍କୃତି ଓ ଆଧାତ୍ମିକତାର ଏକ ନୂତନ ବ୍ୟାଖ୍ୟା ପ୍ରକାଶିତ ହେଲା। ଏଥିପାଇଁ ପାଇଲେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର। ଜୀବନରେ ସେ ପଦବୀ, ପ୍ରଲୋଭନକୁ ତୁଚ୍ଛ ମନେ କରିଛନ୍ତି। ଅବଲୀଳ କ୍ରମେ ପରିତ୍ୟାଗ କରିଛନ୍ତି ସରକାରୀ ଚାକିରୀ। ଆତ୍ମମର୍ଯ୍ୟାଦା ତାଙ୍କର ଏକମାତ୍ର ଅସ୍ମିତା। ଅଭିବ୍ୟକ୍ତି ହିଁ ତାଙ୍କର ବ୍ୟକ୍ତିତ୍ୱ। ଏପରି ଜଣେ ଅନନ୍ୟ ସାଧାରଣ ବୌଦ୍ଧିକ ବ୍ୟକ୍ତିତ୍ୱ, ବହୁମାତ୍ରିକ ସ୍ରଷ୍ଟା ପୁରୁଷ, ଚିର ତରୁଣ ଜୀବନଶିଳ୍ପୀ, ବିଦଗ୍ଧ ପାଠକ, ଅଖଣ୍ଡ ପ୍ରଭାବଶାଳୀ ଶିକ୍ଷକ, ପ୍ରଚଣ୍ଡ ବାଗ୍ମୀ ସର୍ବୋପରି ଉଦାର ହୃଦୟବାନ ମଣିଷଟିର ଜୀବନରେ କେତେ ଯେ ସ୍ମରଣୀୟ ମୁହୂର୍ତ୍ତ, କେତେ ଅବିସ୍ମରଣୀୟ ଅନୁଭୂତି, କେତେ ଆନନ୍ଦ-ମଧୁର ପୁଣି ବେଦନା ବିଧୂର ଘଟଣ-ଅଘଟଣ, ସମୟର ସ୍ରୋତରେ ବହିଯାଇଥିବା କେତେ କଥା - ସେ ସବୁକୁ କେମିତି ସାଇତା ହେବ ? କିଏ କେବେ ଜୀବନୀ ବା ଆଲେଖ୍ୟ ଲେଖିବେ ? ନିଜେ ତ ଲେଖକ ଆତ୍ମଜୀବନୀ ମୂଳକ ରଚନାପ୍ରତି କେବେ ଆଗ୍ରହ ପ୍ରକଟ କରି ନାହାନ୍ତି। ଏପରି ଅନୁଭବରୁ ବକ୍ଷମାଣ ସଂକଳନର ଉନ୍ମେଷ। ୧୯୩୯ ଜୁଲାଇ ୨୩ରେ ପୃଥିବୀକୁ ଆସିଥିବା ଏଇ ଶିଶୁଟି ନିଜ ଇଚ୍ଛାର ପୃଥିବୀ ଗଢୁ ଗଢୁ କେତେବେଳେ ୮୦ବର୍ଷ ଅତିବାହିତ ହୋଇଗଲାଣି। କେବେ ପଛକୁ ଫେରି ଚାହିଁବାକୁ, ଜୀବନ ସମୀକ୍ଷା କରିବାକୁ ବା ସତ କଥା କହିଲେ ନିଜ ବିଷୟରେ ଭାବିବାକୁ ତାଂକର ସମୟ ହୋଇନି, ହୁଏତ ଜାଣିଶୁଣି ଭାବି ନାହାନ୍ତି। ସମଗ୍ର ବିଶ୍ୱ-ସାହିତ୍ୟ ପରିକ୍ରମା କରିଛନ୍ତି। ବ୍ୟାସ, ବାଲ୍ମୀକି,ହୋମର, ଭର୍ଜିଲ, ସେକ୍ସପିଅରଠୁ ଇଲିଅଟ ପର୍ଯ୍ୟନ୍ତ, ସାରଳାଠୁ ଫକୀରମୋହନ, ଗୋପୀନାଥ, ପ୍ରତିଭା, ମନୋରଂଜନଙ୍କଠୁ ରମେଶ ପାଣିଗ୍ରାହୀ, ସଚ୍ଚିରାଉତରାୟ, ଗୁରୁପ୍ରସାଦଙ୍କଠୁ ରମାକାନ୍ତ, ସୀତାକାନ୍ତ ଫନୀମହାନ୍ତି - ଏସମସ୍ତଙ୍କୁ ନୂତନଭାବେ ଆବିଷ୍କାର କରିଛନ୍ତି। କିନ୍ତୁ ଆତ୍ମସତ୍ତାର ପରିଚୟ ଦେବାପାଇଁ ଏପରି କୁଣ୍ଠା ଓ ଅମନଯୋଗିତା ଏ ଯୁଗରେ ବିରଳ। ଏଇ କଥା ସ୍ମରଣରଖି ଏଇ ଜୁଲାଇ ୨୩ରେ ତାଙ୍କର ଅଶୀତମ ଜନ୍ମତିଥିରେ

ତାଙ୍କ ବ୍ୟକ୍ତିତ୍ୱ, କୃତିତ୍ୱ ଓ ସାହିତ୍ୟ ବିଷୟରେ ଯତ୍‌ସାମାନ୍ୟ ଆଲୋଚନା ସଂଗ୍ରହ କରି ସଂକଳନ ଗ୍ରନ୍ଥଟିଏ ପ୍ରକାଶ କରିବା ପାଇଁ ଉଦ୍ୟମ କରିଛୁ। ଏଥିରେ ତାଙ୍କ ବନ୍ଧୁ, ଶୁଭାର୍ଥୀ, ଛାତ୍ର, ସାହିତ୍ୟ ସାଥୀ, ଅନୁରାଗୀ ଓ ତାଙ୍କ ସାହିତ୍ୟର ଶ୍ରଦ୍ଧାଶୀଳ ପାଠକମାନଙ୍କ ଭିତରୁ କେତେଜଣ ନିଜନିଜର ଅନୁଭୂତି ଓ ଆଲୋଚନାମୂଳକ ଲେଖାମାନ ଦେଇ ଆମକୁ ଅନୁଗୃହୀତ କରିଛନ୍ତି। ମୋ ବିଚାରରେ, ପ୍ରଫୁଲ୍ଲ ମହାନ୍ତି ସାର୍‌ଙ୍କ ଅଶୀତମ ଜନ୍ମ ତିଥିରେ ଏହା ହେବ ତାଙ୍କ ପ୍ରତି ଆମର ପ୍ରକୃତ ଶ୍ରଦ୍ଧା ଓ ସମ୍ମାନ, ଯଥାର୍ଥ ଅଭିନନ୍ଦନ।

## (ଏକ)

ଅଶୀବର୍ଷ ଅତିବାହିତ ହୋଇଥିବା ଏଇ ବିପୁଳାୟତନ ଜୀବନ ପ୍ରବାହର ସାମାଜିକ ଆକଳନ କରିବା ପାଇଁ କିଛି ବ୍ୟକ୍ତିଗତ ଓ କିଛି ନୈର୍ବ୍ୟକ୍ତିକ କଥା ମନକୁ ଆନ୍ଦୋଳିତ କରୁଛି। ପ୍ରଫୁଲ୍ଲ ସାର୍‌ଙ୍କ ସହିତ ମୋର ପରିଚୟ ସାହିତ୍ୟାନୁଷ୍ଠାନ 'ସାଂପ୍ରତିକ' ମାଧ୍ୟମରେ। ଓଡ଼ିଆ ସାହିତ୍ୟକୁ ଓଡ଼ିଶା ବାହାରେ ପ୍ରତିଷ୍ଠା ଦେବାର ଅଭିପ୍ରାୟ ନେଇ ଗଠିତ ହୋଇଥିଲା ଅଭିଜାତ ସାହିତ୍ୟ ସଂସ୍ଥା 'ସାଂପ୍ରତିକ'। ସଭାପତି ଥିଲେ ବିଶିଷ୍ଟ ଗାଳ୍ପିକ କିଶୋରୀଚରଣ ଦାସ ଓ ସାଂପଦକ ଥିଲେ ନିତ୍ୟାନନ୍ଦ ଶତପଥୀ। ତତ୍‌କାଳୀନ ବିଶିଷ୍ଟ ରାଜନେତା ବସନ୍ତ କୁମାର ବିଶ୍ୱାଳଙ୍କ ପୃଷ୍ଠପୋଷକତାରେ ଅନୁଷ୍ଠାନଟି ଆକର୍ଷଣୀୟ କାର୍ଯ୍ୟ କରୁଥିଲା। ୧୯୮୬ ଏପ୍ରିଲ ମାସରେ ବାଙ୍ଗାଲୋରଠାରେ ଆୟୋଜିତ ହେଲା ଓଡ଼ିଆ-କନ୍ନଡ଼ ଦ୍ୱିଭାଷିକ ପାଠଚକ୍ର। ଅନେକ ବିଶିଷ୍ଟ ସାହିତ୍ୟିକ ସେଠାରେ ଯୋଗଦେବାକୁ ଯାଇଥିଲେ। ପ୍ରଫୁଲ୍ଲ ସାର୍ ଥିଲେ ଅନ୍ୟତମ। ମୁଁ ସେତେବେଳେ ଅର୍ବାଚୀନ ଅଧ୍ୟାପକ। ସଂଗଠନ ଦାୟିତ୍ୱରେ ଥାଏ ଅନୁଷ୍ଠାନର ଯୁଗ୍ମ ସଂପାଦକ ଭାବରେ। ମହାପାତ୍ର ନୀଳମଣି ସାହୁଙ୍କ ଉପଭୋଗ୍ୟ ସାନ୍ନିଧ ଓ ମୁରବୀତ୍ୱରେ ସକାଳୁ ଚା ଆସର ଖୁବ୍ ଜମୁଥିଲା। ସାଙ୍ଗରେ ଥାଆନ୍ତି ଶରତ କୁମାର ମହାନ୍ତି। ଉମାଶଙ୍କର ମିଶ୍ର, ପ୍ରତିଭାରାୟ, ପ୍ରତିଭା ଶତପଥୀ ଓ ଆହୁରି କେତେ ଜଣ। ପ୍ରଫୁଲ୍ଲ ସାର୍ ବଡ଼ ମିଜାଜୀ, ଯାହା କୁହନ୍ତି କଥାମାନି ମୁଁ ଠିକ୍ ପାଳନ କରିଦିଏ। ତେଣୁ ମୋ ପ୍ରତି ତାଙ୍କ ଦୃଷ୍ଟି ଆକର୍ଷିତ ହୋଇଥିଲା। ପରେ ମୁଁ ଜାଣିଲି ସେତେବେଳେ ସେ ଉଚ୍ଚଶିକ୍ଷା ବିଭାଗର ଡେପୁଟି ଡାଇରେକ୍ଟର (ଜେନେରାଲ)। ସେଇ ସମୟରୁ ବହୁ ପ୍ରସିଦ୍ଧ ସାହିତ୍ୟିକଙ୍କ ଭଳି ମୁଁ ତାଙ୍କର ସ୍ନେହଭାଜନ ହୋଇ ଯାଇଥିଲି। ତା'ପରେ ସମୟର ବିଚିତ୍ର ଗତିରେ ସ୍ଥାନ କାଳ ପରିବର୍ତ୍ତିତ ହୋଇଛି। କିନ୍ତୁ ସଂପର୍କ ଅତୁଟ ରହିଛି। ତାଙ୍କର ଅଧ୍ୟୟନ ଓ ଆସାଧାରଣ ବାଗ୍ମୀତା ମତେ ପ୍ରଲୁବ୍ଧ କରିଛି। ବିଭିନ୍ନ

ଜାତୀୟ ଆଲୋଚନା ଚକ୍ରରେ ଏକାଠି ଯିବାର ସୁଯୋଗ ମିଳିଛି । ଯେତେ ଥର ତାଙ୍କୁ ଶୁଣିଛି, ପ୍ରତିଥର ଅଭିନବ ବିଷୟ ବିନ୍ୟାସ ଓ ଅପୂର୍ବ ଅବତାରଣା ମତେ ବିସ୍ମିତ କରିଛି । ମନେ ପଡୁଛି ଥରେ ଏକାଠି ଆମେ ଶାନ୍ତିନିକେତନ ଯାଇଥାଉ । ଆମ ସାଙ୍ଗରେ ଥାଆନ୍ତି କବି ଜୟନ୍ତ ମହାପାତ୍ର । ଜାତୀୟ ସଂପାନର ଉଦ୍‌ଘାଟନ ଅଧିବେଶନରେ କବି ଜୟନ୍ତ ମହାପାତ୍ର ନିଜର ସ୍ୱଭାବ ସୁଲଭ ଭଙ୍ଗୀରେ କାବ୍ୟସୃଷ୍ଟିର ରହସ୍ୟ ସହଜସୁନ୍ଦର ଭାବେ କହିଲେ । ତା'ପରେ ପ୍ରଫୁଲ୍ଲ ସାର୍‌ଙ୍କର ସାହିତ୍ୟ ଓ ଦର୍ଶନ ସମନ୍ୱିତ ସ୍ୱତଃସ୍ଫୂର୍ତ୍ତ, ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ସମଗ୍ର ଶ୍ରୋତୃମଣ୍ଡଳିକୁ ମନ୍ତ୍ରମୁଗ୍ଧ କରିଦେଇଥିଲା । କେହି କେହି କହୁଥିଲେ ଇଂରେଜୀରେ ଏପରି କହିପାରିବା ବ୍ୟକ୍ତି ଓଡ଼ିଶାରେ ଅଛନ୍ତି ? ସେଦିନ ଆମେ ଗୌରବ ଅନୁଭବ କରୁଥିଲୁ । ଆଉଥରେ ଦିଲ୍ଲୀରେ ସାହିତ୍ୟ ଏକାଡେମୀ ଆୟୋଜିତ ସାରଳାମହାଭାରତ ବିଷୟକ ଜାତୀୟ ପାଠଚକ୍ରରେ ତାଙ୍କର ଭିତ୍ତିପ୍ରବନ୍ଧ ଉପସ୍ଥାପନ ଥିଲା ଅତୁଳନୀୟ । ଆହୁରି ଅନେକ ଅନୁଷ୍ଠାନରେ ସାର୍‌ଙ୍କ ସହିତ ଏକାଠି ହେବାର ସୁଯୋଗ ପାଇଛି । ଏନ.ସି.ଇ.ଆର.ଟିରେ ମୁଁ ଯୋଗଦେବା ପରେ ରିଜିଓନାଲ ଇନଷ୍ଟିଚ୍ୟୁଟକୁ ବିଭିନ୍ନ କାର୍ଯ୍ୟକ୍ରମରେ ସାର୍‌ଙ୍କୁ ନିମନ୍ତ୍ରଣ କରିଛି । ପ୍ରତିଥର ନୂଆ ଓ ଅବିସ୍ମରଣୀୟ ଅନୁଭୂତି ପାଇଛି । ଏପରିଭାବେ ସାରଙ୍କ ସହିତ ଓ ସେଇ ସୂତ୍ରରେ ତାଙ୍କ ପରିବାର ସହିତ ବିଶେଷକରି ମାଡାମ୍ ମହାନ୍ତିଙ୍କ ସହିତ ଆନ୍ତରିକ ସ୍ନେହ ସମ୍ପର୍କ ଗଢ଼ି ଉଠିଛି । ସାର୍‌ଙ୍କ ଶ୍ୱଶୁର ବିଶିଷ୍ଟ ଔପନ୍ୟାସିକ ଓ ସଂସ୍କୃତି ସଂଗଠକ ଲକ୍ଷ୍ମୀଧର ନାୟକଙ୍କ ଶତବାର୍ଷିକୀ ଉପଲକ୍ଷେ ଆୟୋଜିତ ବିଭିନ୍ନ ଆଲୋଚନା ଚକ୍ରରେ ମତେ ତାଙ୍କ ସାହିତ୍ୟସୃଷ୍ଟି ସଂପର୍କରେ ପ୍ରବନ୍ଧ ଓ ବକ୍ତୃତା ଉପସ୍ଥାପନ କରିବା ପାଇଁ ଆମନ୍ତ୍ରଣ କରାଯାଇଥିଲା । ଭୁବନେଶ୍ୱରରେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଆୟୋଜିତ ସଭାରେ ଓ ରାଉରକେଲାରେ ତାଙ୍କ ପ୍ରତିଷ୍ଠିତ ଅନୁଷ୍ଠାନର ସଭାରେ ମୁଁ ଯୋଗଦେଇ ଲକ୍ଷ୍ମୀଧରଙ୍କ ପ୍ରତିଭା ଓ ସାହିତ୍ୟସୃଷ୍ଟିର ମହତ୍ୱ ସଂପର୍କରେ ଆଲୋଚନା କରିଥିଲି । ଏଥିରେ ପ୍ରଫେସର୍ ମହାନ୍ତିଙ୍କ ସମେତ ଲକ୍ଷ୍ମୀଧର ନାୟକଙ୍କ କନିଷ୍ଠ ପୁତ୍ର ସୁବିଖ୍ୟାତ ଅର୍ଥନୀତିଜ୍ଞ, ଦିଲ୍ଲୀ ସ୍କୁଲଅଫ୍ ଇକୋନମିକ୍‌ସ୍‌ର ପୂର୍ବତନ ଡାଇରେକ୍ଟର ପ୍ରଫେସର୍ ପୁଲିନ୍ ନାୟକ ମୋ ବକ୍ତବ୍ୟ ଶୁଣି ପ୍ରଭାବିତ ହୋଇ ମୋ ସହିତ ସଂପର୍କ ସ୍ଥାପନ କରିଥିଲେ । ଏହିପରି ପ୍ରଫେସର୍ ମହାନ୍ତି ଓ ତାଙ୍କ ପରିବାର ସହିତ ମୋର ସଂପର୍କ ନିବିଡ଼ ହୋଇ ଉଠିଛି । ବର୍ତ୍ତମାନ ସାର୍‌ଙ୍କ ଅଶୀତମ ଜନ୍ମ ଦିବସ ଅବସରରେ ପ୍ରକାଶ ପାଉଥିବା ସଂକଳନଟି କେତେ ସଫଳତାର ସହିତ ସଂପାଦିତ ହୋଇ ପାରିବ ତାହା ପ୍ରକାଶିତ ଗ୍ରନ୍ଥଟିରୁ କେବଳ ଜଣାଯିବ – ଭୂମିକା ଅଧିକନ୍ତୁ ।

## (ଦୁଇ)

ବ୍ୟକ୍ତିଗତ କଥାରେ ଥାଏ ଅଧିକ ଆବେଗ, ରାଗଅନୁରାଗ। ହୋଇଯାଏ ଅଧିକ ମନ୍ମୟ। ଏହା ସର୍ଜନାତ୍ମକ ସାହିତ୍ୟର ଭାବବସ୍ତୁ ହୋଇପାରେ କିନ୍ତୁ ଭାବଗମ୍ଭୀର ତାତ୍ତ୍ୱିକ ସାହିତ୍ୟ ପାଇଁ ପ୍ରୟୋଜନ ହୁଏ ନୈର୍ବ୍ୟକ୍ତିକ ନିରପେକ୍ଷତା। ଏଥିରେ ସ୍ରଷ୍ଟାର ଅମଳିନ ରୂପ ପ୍ରକଟିତ ହୁଏ। ଏହା ହୋଇଥାଏ ସତ୍ୟନିଷ୍ଠ, ଭାବସମୃଦ୍ଧ ଓ ଚିନ୍ତାଦ୍ୟୋତକ, ନବନବ ଉନ୍ମେଷଶାଳିନୀ ପ୍ରଜ୍ଞାର ପ୍ରକାଶରେ ହୋଇଥାଏ ମୌଳିକ ଓ ମହତ୍ତ୍ୱପୂର୍ଣ୍ଣ। ତେଣୁ ନୈର୍ବ୍ୟକ୍ତିକ ଓ ନିରାସକ୍ତ ଭାବେ ପ୍ରଫେସର୍ ମହାନ୍ତିଙ୍କ ଜୀବନୀ ଓ ସାହିତ୍ୟ ସୃଷ୍ଟିର ଯତ୍ ସାମାନ୍ୟ ଆକଳନ କରିବା ଉଚିତ ମନେ କରୁଛି।

୨୩ ଜୁଲାଇ ୧୯୩୯ରେ ବ୍ରହ୍ମପୁର ସହରରେ ପ୍ରଫୁଲ୍ଲ ସାର୍‌ଙ୍କ ଜନ୍ମ। ଦ୍ୱିତୀୟ ବିଶ୍ୱଯୁଦ୍ଧର ଘନଘଟା, ସ୍ୱାଧୀନତା ଆନ୍ଦୋଳନର ତୀବ୍ର ଆଲୋଡ଼ନ ଓ ସଦ୍ୟ ସ୍ୱତନ୍ତ୍ର ହୋଇଥିବା ଓଡ଼ିଶା ପ୍ରଦେଶରେ ଆତ୍ମ ପରିଚୟର ପ୍ରତିଷ୍ଠା ପାଇଁ ନିରନ୍ତର ଉଦ୍ୟମ -ଏଇ ତିନି ଘଟଣାର ଐତିହାସିକ ଓ ସାମାଜିକ ପୃଷ୍ଠଭୂମିରେ ଯେଉଁ ଶିଶୁଟି ସେଦିନ ଜନ୍ମ ନେଇଥିବ ତା' ମନରେ ଅନେକ ପ୍ରଶ୍ନ ଆନ୍ଦୋଳିତ ହେବା ସ୍ୱାଭାବିକ। କାଳ୍ପନିକ ସୁଖରେ ଭାସି ନ ଯାଇ ଜୀବନର ବାସ୍ତବ ସ୍ୱରୂପ ଉଦ୍‌ଘାଟନ କରିବା ପାଇଁ ନିଶ୍ଚୟ ସେ ଅନୁସନ୍ଧିତ୍ସୁ ହୋଇଥିବେ। ସେଇ ଅନୁସନ୍ଧିତ୍ସା ଓ କୌତୁହଳ ସାରା ଜୀବନ ତାଙ୍କୁ ଅଭିନବ ଜ୍ଞାନର ସନ୍ଧାନୀ ଓ ବିଶ୍ୱଦୃଷ୍ଟି ସଂପନ୍ନ କରାଇଛି।

ଆଲହାବାଦ ବିଶ୍ୱବିଦ୍ୟାଳୟରୁ ଉଚ୍ଚତର ଶିକ୍ଷା ସମାପ୍ତ କରିବା ପରେ ପ୍ରଫେସର୍ ମହାନ୍ତି ୧୯୬୨ ମସିହାରେ ଅଧ୍ୟାପକ ଭାବେ ଯୋଗ ଦିଅନ୍ତି ଓଡ଼ିଶାର ବିଦ୍ୟାକେନ୍ଦ୍ର ରେଭେନ୍ସା କଲେଜରେ। ଶିକ୍ଷା, ସାହିତ୍ୟ, ସଂଗୀତ ଓ ନାଟ୍ୟାଭିନୟ ଆଦି ବିଭିନ୍ନ କ୍ଷେତ୍ରରେ ନିଜର ଅସାଧାରଣ ଉତ୍ସାହ ପ୍ରକାଶ ପାଏ। ପ୍ରଥମରୁ କବିତା ରଚନାରେ ମନୋନିବେଶ କରିଥିବା ଏଇ ତରୁଣ ଅଧ୍ୟାପକଙ୍କ ଅନ୍ତରରେ ନାଟକ ପ୍ରତି ଥିବା ଅବାରିତ ଆକର୍ଷଣ ବନ୍ଧନହୀନ ଭାବେ ପ୍ରକାଶ ପାଇଛି ନାଟକରଚନା, ନାଟ୍ୟ ନିର୍ଦ୍ଦେଶନା ଓ ଅଭିନୟ ମାଧ୍ୟମରେ। ରେଭେନ୍‌ସା ଓ ଖଲିକୋଟ କଲେଜରେ ଅଧ୍ୟାପନା କାଳରେ ସେକ୍‌ସପିଅରଙ୍କ 'ଅଥେଲୋ', 'ହାମଲେଟ', 'ମର୍ଚେଣ୍ଟ ଅଫ୍‌ଭେନିସ୍' ଠାରୁ ଆରମ୍ଭ କରି 'ଅଲ୍ ମାଇ ସନ୍‌ସ', ରବୀନ୍ଦ୍ର ନାଥଙ୍କ 'ଚଣ୍ଡାଳିକା', ମନୋରଂଜନଙ୍କ 'ବକ୍ସି ଜଗବନ୍ଧୁ', ବିଜୟ ମିଶ୍ରଙ୍କ 'ଶବ ବାହକମାନେ' ଏପରିକି ଇଲିଅଟ୍‌ଙ୍କ 'ୱେଷ୍ଟ ଲ୍ୟାଣ୍ଡ'ର ନାଟ୍ୟରୂପକୁ ନିର୍ଦ୍ଦେଶନା ଦେଇ ଦର୍ଶକମଣ୍ଡଳିକୁ ଆଲୋଡିତ କରିଥିଲେ।

ଗବେଷଣା କ୍ଷେତ୍ରରେ ପ୍ରଫେସର ମହାନ୍ତିଙ୍କର ଅବଦାନ ଉଲ୍ଲେଖ ଯୋଗ୍ୟ। ଆମେରିକାନ ସାହିତ୍ୟ ଥିଲା ତାଙ୍କର ବିଶେଷ ଅଧ୍ୟୟନ କ୍ଷେତ୍ର। ପରବର୍ତ୍ତୀ ସମୟରେ ନିଜର ଗବେଷଣା ଛାତ୍ରମାନଙ୍କୁ ମଧ୍ୟ ସେ ଅନାଲୋଚିତ ଅଭିନବ ବିଷୟରେ ଗବେଷଣା ପାଇଁ ଦିଗ୍‌ଦର୍ଶନ ଦେଇ ଓଡ଼ିଶାର ଶିକ୍ଷା ଜଗତରେ ଇଂରାଜୀ ବିଭାଗରେ ନୂତନ ଦିଗର ଉନ୍ମୋଚନ କରିଥିଲେ। ଏ ଦିଗରେ ବନ୍ଧୁ ଓ ଗୁରୁ ପ୍ରଫେସର୍ ବିୟତ୍‌କେଶ ତ୍ରିପାଠୀ ଥିଲେ ତାଙ୍କର ଉପଦେଷ୍ଟା ଓ ଉତ୍ସାହଦାତା।

ଶିକ୍ଷା-ପ୍ରଶାସନିକ କ୍ଷେତ୍ରରେ ପ୍ରଫେସର୍ ମହାନ୍ତି ଯେତେବେଳେ ଯେଉଁ ଦାୟିତ୍ୱ ନେଇଛନ୍ତି ସର୍ବତ୍ର ନିଜର ସ୍ୱକୀୟତା ପ୍ରଦର୍ଶନ କରିଛନ୍ତି। ଉଚ୍ଚଶିକ୍ଷା ନିର୍ଦ୍ଦେଶାଳୟରେ ଡେପୁଟି ଡାଇରେକ୍‌ଟର (ଜେନେରାଲ) ଭାବରେ, ଉଚ୍ଚମାଧ୍ୟମିକ ଶିକ୍ଷା ପରିଷଦର ସଂପାଦକ ଭାବରେ ଓ ପରିଶେଷରେ ରେଭେନ୍‌ସା କଲେଜର କୃତବିଦ୍ୟ ଅଧ୍ୟକ୍ଷ ଭାବରେ ସେ ନିଜର କର୍ମଦକ୍ଷତା ଓ ଦୂରଦୃଷ୍ଟି ସଂପନ୍ନ ପ୍ରଶାସକର ପରିଚୟ ଦେଇଛନ୍ତି। କିନ୍ତୁ କେବେ ବି କାହାରି ସ୍ତାବକ ବା ଅବିଚାରର ଆଜ୍ଞାଧୀନ ହୋଇ ନାହାନ୍ତି। ନିଜର ସ୍ୱାଭିମାନର ପରିଚୟ ଦେଇ ପ୍ରତିଷ୍ଠିତ ସରକାରୀ ଚାକିରୀରୁ ପଦତ୍ୟାଗ କରି ଏକ ଉଦାହରଣ ସୃଷ୍ଟି କରିଛନ୍ତି। ଏଭଳି ଦୃଢ଼, ଅନମନୀୟ ବ୍ୟକ୍ତିତ୍ୱ ଓ ଅଭାବନୀୟ ନିଷ୍ପତ୍ତି ପ୍ରକୃତରେ ଏକ ବିରଳ ଦୃଷ୍ଟାନ୍ତ।

ଅନେକ ଦିନରୁ ଓଡ଼ିଆ ଓ ଇଂରାଜୀ ଉଭୟ ଭାଷାରେ ବିଭିନ୍ନ ଖବରକାଗଜ ସହିତ ପ୍ରଫେସର୍ ମହାନ୍ତିଙ୍କର ସଂପର୍କ ରହିଆସିଛି। କାରଣ ସେ ସଂସାରର ସକଳ ବିଷୟରେ ଲେଖିପାରନ୍ତି ଓ କହିପାରନ୍ତି। ଏପରି ବହୁବିଦ୍ୟାବିତ୍ ଭର୍ସାଟାଇଲ ସ୍କଲର ପ୍ରକୃତରେ ଦୁର୍ଲ୍ଲଭ। ଅବସର ନେବାପରେ 'ସମ୍ବାଦ' ଓ 'ସନ୍ ଟାଇମ୍ସ' ରେ ଦୀର୍ଘକାଳ ସେ ସ୍ତମ୍ଭ ରଚନା କରୁଥିଲେ। 'ସମୟ'ର ଅନୁରୋଧ ରକ୍ଷାକରି ସେ 'ସାପ୍ତାହିକ ସମୟ'ର ସଂପାଦନା କରିଥିଲେ। ଦୈନିକ ସମୟର ସହ ସଂପାଦକ ଭାବରେ ସଂପାଦକ ଶ୍ରୀ ସାତକଡ଼ି ହୋତାଙ୍କ ସହିତ ଦୀର୍ଘଦିନ କାର୍ଯ୍ୟ କରିଥିଲେ। ପ୍ରଫେସର୍ ମହାନ୍ତିଙ୍କ ସ୍ତମ୍ଭରଚନାରେ ନୂତନ ଦୃଷ୍ଟିକୋଣ, ଜ୍ଞାନ ବିଜ୍ଞାନର ଅଫୁରନ୍ତ ଉପାଦାନ ଓ ଶ୍ଳେଷ ପାଠକଙ୍କୁ ମୁଗ୍ଧ କରିଥାଏ।

ସାହିତ୍ୟ ରଚନାରେ ପ୍ରଫୁଲ୍ଲ ସାର ସବ୍ୟସାଚୀ। ମୌଳିକ ରଚନା ଓ ଅନୁବାଦ ଦୁଇ କ୍ଷେତ୍ରରେ ଓଡ଼ିଆ ଓ ଇଂରାଜୀ ଦୁଇ ଭାଷାରେ ଅଜସ୍ରସ୍ରାବୀ ଲେଖନୀ ତାଙ୍କର ଯେଉଁ

ବିପୁଳ ଓ ବିଚିତ୍ର ସୃଷ୍ଟିର ଜଗତ ନିର୍ମାଣ କରିଛି ସେ ସବୁର ଏକତ୍ର ମୂଲ୍ୟାୟନ କରିବାତ ଦୂରର କଥା ପରିଚୟ ଦେବା ମଧ୍ୟ ସହଜ ସାଧ୍ୟ ନୁହେଁ। ପରିମାଣ ଓ ଗୁଣ ଉଭୟ ଦିଗରୁ ତାହା ଚମକପ୍ରଦ। ଚାରୋଟି ନାଟକ (କଳାଜହ୍ନ, ମଳା ଆକାଶ, ସରାଗ ସନ୍ନ୍ୟାସୀ, ଝରା କୁହେଳୀ) ଗୋଟିଏ ଗଳ୍ପ (ଶେଷ ଅପେକ୍ଷା), ଅନେକ ପ୍ରବନ୍ଧ ଗ୍ରନ୍ଥ (ବିରହ ଓ ଅନ୍ୟ ବିଭବମାନେ, କିଛି ମାଟି କିଛି ଆକାଶ, ଭାରତୀୟ ସଂସ୍କୃତି ଓ ଭଗବଦ୍ ଗୀତା, ନିଦାଘରେ କବି, ସାହିତ୍ୟରେ ଜୀବନରାଗ) ପ୍ରଭୃତି ସହିତ ଇଂରାଜୀରେ ସାତଟି ପ୍ରବନ୍ଧ ଗ୍ରନ୍ଥ ରହିଛି। ଓଡ଼ିଆରୁ ଇଂରାଜୀକୁ ଅନୁବାଦରେ ସାରଳା ମହାଭାରତର ଚିରାୟତ କଥନିକାକୁ ନେଇ Tales from Sarala Mahabharata ଗଙ୍ଗାଧର ମେହେରଙ୍କ କୀଚକ ବଧର ଅନୁବାଦ Kichaka's End, ମନୋରଂଜନ ଦାସଙ୍କ କାଠ ଘୋଡ଼ାର ଅନୁବାଦ The Wooden Horse ଓ ପ୍ରତିଭାରାୟଙ୍କ ମଗ୍ନମାଟିର ଇଂରାଜୀ ଅନୁବାଦ କରିଛନ୍ତି। History of Kannada Literatureର ଓଡ଼ିଆ ଅନୁବାଦ କରିଛନ୍ତି। ଏସବୁ କେବଳ ଅଳ୍ପ କେତୋଟି ଉଲ୍ଲେଖନୀୟ ରଚନା। ଏଥିସହିତ ଆହୁରି ଅନେକ ଗ୍ରନ୍ଥ ପ୍ରଫେସର୍ ମହାନ୍ତିଙ୍କର ସୃଷ୍ଟି ପ୍ରତିଭା ପରିଚୟ ଘେନି ପ୍ରକାଶିତ।

ସାହିତ୍ୟର ବିଭିନ୍ନ ବିଭାଗରେ ନିଜର ସୃଷ୍ଟିଶୀଳତାର ପରିଚୟ ଦେଇଥିଲେ ମଧ୍ୟ ପ୍ରଫୁଲ୍ଲ ମହାନ୍ତିଙ୍କର ପ୍ରଧାନ ପରିଚୟ ପ୍ରାବନ୍ଧିକ ଭାବରେ। ଓଡ଼ିଆ ଓ ଇଂରାଜୀରେ ଲିଖିତ ତାଙ୍କର ପ୍ରବନ୍ଧ ଗ୍ରନ୍ଥଗୁଡ଼ିକରେ ଯେଉଁ ପ୍ରଜ୍ଞାଦୀପ୍ତ ପାଣ୍ଡିତ୍ୟ ଓ ବିଶ୍ୱଦୃଷ୍ଟି ପ୍ରକାଶିତ, ତାହା ହିଁ ତାଙ୍କ ସାହିତ୍ୟ ପ୍ରତିଭାର ଶ୍ରେଷ୍ଠ ନିଦର୍ଶନ। କେବଳ ସାହିତ୍ୟ ଏକାଡେମୀ ପୁରସ୍କୃତ 'ଭାରତୀୟ ସଂସ୍କୃତି ଓ ଭଗବଦ୍ ଗୀତା' ଗ୍ରନ୍ଥଟିରେ ନୁହେଁ ଅନ୍ୟାନ୍ୟ ଗ୍ରନ୍ଥରେ ତାଙ୍କର ମୌଳିକ ଦୃଷ୍ଟିକୋଣ, ଅନୁଶୀଳନର ନୂତନତା, ଭାଷା ଓ ଶୈଳୀରେ ଭବ୍ୟ ଆଭିଜାତ୍ୟ ସମୃଦ୍ଧି ରଚନା ଗୁଡ଼ିକର ବୌଦ୍ଧିକ ମୂଲ୍ୟ ବହୁଗୁଣିତ କରିଥାଏ। ଏପରି କ୍ଷୁଦ୍ର ଆଲେଖ୍ୟଟିରେ ଉଦାହରଣ ଦେବାପାଇଁ ଯଥେଷ୍ଟ ଅବକାଶ ନାହିଁ। ତଥାପି ଗୋଟିଏ ଦୁଇଟି ଲେଖାରୁ ଶବ୍ଦ ସ୍ପର୍ଶ ଦେଇ ମୋ ଉକ୍ତି ଓ ଯୁକ୍ତିକୁ ବଳିଷ୍ଠ କରିବା ଉଚିତ ହେବ। ସାହିତ୍ୟରେ ଜୀବନରାଗ ସଂକଳନର 'କ'ଣ ଲେଖିବି' ରଚନାଟିରେ ଯେଉଁ ମୌଳିକ ପ୍ରଶ୍ନର ଅବତାରଣା ତାହା ଲକ୍ଷ୍ୟଣୀୟ, "ତେବେ କ'ଣ ଲେଖିବି ? ଲେଖିବା ପାଇଁ ଜୀବନ ବିଶ୍ୱର ଯେଉଁ ବିଶ୍ୱାସ ମଣିଷର ପରିଚୟକୁ ସାମାନ୍ୟ ଦୀପ୍ତି ଦେଇପାରେ, ସେ ବିଶ୍ୱାସ ମୁଁ ପୋଷଣ କରିପାରୁ ନାହିଁ। ଆଜି ସାହିତ୍ୟ ନାମରେ ଯାହା ସବୁ ଲେଖା ଯାଉଛି ତାହା ଲେଖକର ଭାଷାଜ୍ଞାନର ସୀମା ମଧ୍ୟରେ କେତୋଟି ଉଦ୍ଭଟ ଚିତ୍ରକଳ୍ପ। ମଣିଷ ଜାତି

ସେଠି ନାହିଁ, ଅଛି କେବଳ ଗୋଟିଏ 'କ'ଣ ଲେଖିବି' ଦ୍ୱିଧାଗ୍ରସ୍ତ ବ୍ୟକ୍ତିର ଶବ୍ଦ ଗଠନ। ତଥାପି ଲେଖା ଚାଲିଛି ଏବଂ ଚାଲିବ ମଧ୍ୟ।" ଅନ୍ୟ ଗୋଟିଏ ରଚନା 'ଆଜିର ସାହିତ୍ୟିକର ବାସ୍ତବ'ରେ ଆଉ ଏକ ସାହିତ୍ୟିକ ସଂକଟର ସୂଚନା, "ଆଜି ସାହିତ୍ୟିକ ନିଜର ପରିଚୟ ଖୋଜେ। ମୁଁ ର ଆବିଷ୍କାର କରେ। ପ୍ରେମ ବିଫଳତାର କଥା କହେ। ସଂପର୍କର ସେତୁ ଗଢ଼ିବାପାଇଁ ଚେଷ୍ଟା କରେ। ବେଳେ ବେଳେ ଚରିତ୍ରମାନଙ୍କୁ ଅବାସ୍ତବ ଭଗବାନର ଉଚ୍ଚତା ଦିଏ। ମଣିଷ ଜାତିର ଇତିହାସରେ ନିଜର ଆସ୍ଥାନ ଖୋଜେ। ମଣିଷର ବଡ଼ପଣ ପ୍ରତିଷ୍ଠିତ କରେ। ସାଂପ୍ରତିକ ବିଶ୍ୱରେ ସାହିତ୍ୟିକ ଏହାଠାରୁ କ'ଣ ବା ଅଧିକା ପରିପାରିବ ? ଲୋକଙ୍କୁ ଆନନ୍ଦ ଓ ମନୋରଂଜନର ଦୃଶ୍ୟ ଯୋଗାଇବା ପାଇଁ ସହିତ୍ୟିକ ତାର ଭାଷା ଓ ଶବ୍ଦମାନଙ୍କୁ ସଜାଏ। ସେଥିରେ ହିଁ ସେ ସାର୍ଥକତା ପାଏ।" ଏହିପରି ଚିତ୍ତକୁ ଆଲୋଡ଼ିତ କଲାପରି କଥା ଭିତରେ କେତେକ ମୌଳିକ ପ୍ରଶ୍ନ ଉତ୍‌ଥାପନ କରି ନିଜର ବିଚାର ବିମର୍ଶକୁ ପ୍ରଭାବଶାଳୀ ଢ଼ଙ୍ଗରେ ଉପସ୍ଥାପନ କରନ୍ତି ପ୍ରଫେସର୍ ମହାନ୍ତି। ଅନେକ ସ୍ଥାନରେ ବିଷୟ ବହିର୍ଭୂତ ପ୍ରସଙ୍ଗ ଓ ଅସଂଲଗ୍ନତା ପାଠକକୁ କ୍ଷଣକ ପାଇଁ ବିଭ୍ରାନ୍ତ କରୁଥିଲେ ମଧ୍ୟ ତାହା ମହାଭାରତୀୟ ବର୍ତ୍ତୁଳାକାର ରଚନା ନୈପୁଣ୍ୟର ପାରଦର୍ଶିତାରେ ବୈଶିଷ୍ଟ୍ୟ ମଣ୍ଡିତ।

ପ୍ରଫେସର ମହାନ୍ତିଙ୍କର ଲେଖକୀୟ ଶୈଳୀ ସଂପର୍କରେ କହିବାକୁ ଗଲାବେଳେ ମନେପଡ଼େ ତାଙ୍କର ଇଂରାଜୀ 'Reality Revisited'ର ରଚନାଟିର ପ୍ରଥମରୁ Style ର ପ୍ରାଞ୍ଜଳ ପରିଭାଷା, "Style is a manner of saying things in literature. It is a stance, an attitude, an individualistic aesthetic code and mode. But beyond literature and arts, style is a statement mostly non-verbal." ଆଉ ଗୋଟିଏ ରଚନା  ରେ କି ମାର୍ମିକ ତର୍ଜମା ଜୀବନର ପରମ ଇନ୍ଧନ ଆଶାର, Hope keeps your nerves egile, makes your body and mind ambulatory. Hope is future, the unseen, the unknown possibility to put life our track. ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ଶବ୍ଦ ବିନ୍ୟାସର ଅସାମାନ୍ୟ ଶିଳ୍ପୀ ପ୍ରଫୁଲ୍ଲ ସାର୍।

ପ୍ରଫେସର୍ ମହାନ୍ତିଙ୍କର ଜୀବନୀ, କୃତି, ବ୍ୟକ୍ତିତ୍ୱ, ବନ୍ଧୁତ୍ୱ, ସୃଜନ ଜିଜ୍ଞାସା ଓ ସାହିତ୍ୟର ବିଭିନ୍ନ ବିଭାଗରେ ତାଙ୍କର ସ୍ମରଣୀୟ ସୃଷ୍ଟି ବିଷୟରେ ତାଙ୍କ ବ୍ୟକ୍ତିତ୍ୱ ଓ ସାହିତ୍ୟର ଅନୁରାଗୀ ବନ୍ଧୁ, ପରିଜନ, ସାଥୀ, ଛାତ୍ର, ଗବେଷକ ଓ ଶୁଭେଚ୍ଛୁମାନଙ୍କର କେତୋଟି ସଂଗ୍ରହଣୀୟ ଆଲେଖ୍ୟର ଏକ ଅନୌପଚାରିକ ଭବ୍ୟ ସଂକଳନ ଏଇ ଗ୍ରଂଥଟି। ଏଥିରେ

ବରେଣ୍ୟ ସାହିତ୍ୟିକ ଶ୍ରୀ ସାତକଡ଼ି ହେତା, ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ, ପଦ୍ମଶ୍ରୀ ପ୍ରତିଭାରାୟ, ଶ୍ରୀ ହରପ୍ରସାଦ ଦାସ, ପ୍ରଫେସର ନିତ୍ୟାନନ୍ଦ ଶତପଥୀ, ଡଃ ଫନୀ ମହାନ୍ତି, ପ୍ରଫେସର୍ ବାଉରୀବନ୍ଧୁ କର ପ୍ରଫେସର୍ ସଂଘମିତ୍ରା ମିଶ୍ର, ପ୍ରଫେସର୍ ବାଉରୀ ବନ୍ଧୁ ସାହୁ, ପ୍ରଫେସର୍ ନାରାୟଣ ସାହୁ, ଶ୍ରୀ ପ୍ରଭାକର ସ୍ୱାଇଁ, ପ୍ରଫେସର୍ ଶରତ ଚନ୍ଦ୍ର ଶତପଥୀ ପ୍ରଭୃତି ଓଡ଼ିଆରେ ଏବଂ ପ୍ରଫେସର୍ ସୁମନ ମହାପାତ୍ର, ଡଃ କମଳା ପ୍ରସାଦ ମହାପାତ୍ର, ଡଃ ରାଜା ରାଓ ପ୍ରଭୃତି ଇଂରାଜୀରେ ନିଜ ନିଜର ଆଲେଖ୍ୟ ରଚନା କରିଛନ୍ତି। ପ୍ରତ୍ୟେକ ନିଜ ନିଜର ପ୍ରାତିସ୍ୱିକ ଦୃଷ୍ଟି ଓ ଅନୁଭବ ଘେନି ପ୍ରଫୁଲ୍ଲ ମହାନ୍ତିଙ୍କ ଜୀବନଦର୍ଶନ ଓ ସାହିତ୍ୟ ସନ୍ଦର୍ଶନକୁ ଆକଳନ କରିଛନ୍ତି। ସେଥିରୁ ପ୍ରଫୁଲ୍ଲ ସାର୍‌ଙ୍କୁ ଅଭିନବ ଓ ଅଧିକ ନିବିଡ଼ ଓ ମାର୍ମିକ ଭାବେ ଆବିଷ୍କାର କରିବାର ସୁଯୋଗ ମିଳିବ। କେତୋଟି ଉଲ୍ଲେଖ ଯୋଗ୍ୟ ଅଂଶ ଉଦ୍ଧାର କରି ମୁଁ ପାଠକମାନଙ୍କୁ ସଂପୂର୍ଣ୍ଣ ଆଲେଖ୍ୟ ପଢ଼ିବା ପାଇଁ ପ୍ରଲୋଭିତ କରୁଛି।

ପ୍ରଫେସର ଶରତ ଚନ୍ଦ୍ର ଶତପଥୀ ଇଂରାଜୀ ସାହିତ୍ୟର ପ୍ରତିଷ୍ଠିତ ବିଦ୍ୱାନ। କିନ୍ତୁ ଓଡ଼ିଆ ଭାଷାରେ ତାଙ୍କର ଅସାମାନ୍ୟ ପ୍ରକାଶ ଦକ୍ଷତା ଦେଖନ୍ତୁ – ସେ ପ୍ରଫୁଲ୍ଲ ସାରଙ୍କ ବିଷୟରେ କହନ୍ତି : "ହାତରେ କେବେ ଘଡ଼ିଟିଏ ବାନ୍ଧନ୍ତି ନାହିଁ। କହନ୍ତି ମୁଁ କାହିଁକି ସମୟର କ୍ରୀଡ଼ନକ ପାଲଟି ଯିବି ?" ସେ ସଂପୂର୍ଣ୍ଣ ଭାବରେ ଏକ ସମୟୋତ୍ତର ଦୁନିଆର ସ୍ୱାଧୀନ ଅଧିବାସୀ। ସେ ଅତ୍ୟନ୍ତ ପ୍ରଗଲ୍‌ଭ ଓ ପ୍ରାଂଜଳ, ତରୁଣ ସୁଲଭ ଉଦଗ୍ର ଅନୁସନ୍ଧାନରେ ଆତୁର ନୂଆ କଥା ଜାଣିବାକୁ, ନୂଆ ବହି ପଢ଼ିବାକୁ, ମଣିଷକୁ ଚିହ୍ନିବାକୁ ପ୍ରବଳ ଆଗ୍ରହ ଓ ସେଥିଲାଗି ଅଦମ୍ୟ ପ୍ରଚେଷ୍ଟା।"

ଔପନ୍ୟାସିକ ପ୍ରତିଭା ରାୟଙ୍କ ଦୃଷ୍ଟିରେ ସେ 'ସୁନ୍ଦର ମିଛର ବିଭୋର କବି'। ତାଙ୍କ ବର୍ଣ୍ଣନାରେ, "କବିଙ୍କ ଅନୁଭବୀ ମନ ଜାଣେ ଜୀବନ ଗଣିତ ନୁହେଁ, ସାହିତ୍ୟ। ତେଣୁ ଜୀବିକା ତାଙ୍କ ବଂଚିବାର ପ୍ରେରଣା ନୁହେଁ, ସାହିତ୍ୟ ତାଙ୍କର ଜୀଇଁବାର ପ୍ରେରଣା। ସେ ପ୍ରଶ୍ୱାସରେ ସାହିତ୍ୟ ଗ୍ରହଣ କରନ୍ତି, ନିଃଶ୍ୱାସରେ ସାହିତ୍ୟ ବିତରଣ କରନ୍ତି।"

ଏହିପରି ବହୁ ଆଲେଖ୍ୟରେ ପାଠକକୁ ମିଳିବ ସୁନ୍ଦର ଆକର୍ଷଣୀୟ ଉପାଦାନ। ପ୍ରଫୁଲ୍ଲ ସାରଙ୍କୁ ଦେଖିଲେ, ତାଙ୍କ ବହୁଶାସ୍ତ୍ର ଦର୍ଶିତା, ଓଡ଼ିଆ ଇଂରାଜୀ ଉଭୟ ଭାଷାରେ ଅପୂର୍ବ ପ୍ରକାଶଦକ୍ଷତା କଥା ଭାବିଲେ ମୋର ସବୁବେଳେ ମନେପଡ଼ିଯାଆନ୍ତି ନୀରଦ ଚନ୍ଦ୍ର ଚୌଧୁରୀ। ଖର୍ବକାୟ ଦୀପ୍ତିମାନ ଚେହେରା, ସର୍ବଦା ସୁଟ୍ ପରିହିତ ସାହେବୀ ଠାଣି।

ଅଜସ୍ରସ୍ରାବୀ ଲେଖନୀ ତାଙ୍କର ବଂଗଳା ଓ ଇଂରେଜୀରେ ପ୍ରସିଦ୍ଧ ଗ୍ରନ୍ଥ ସବୁ ରଚନା କରିଛି। ପ୍ରଜ୍ଞାଦୀପ୍ତ ପାଣ୍ଡିତ୍ୟ ସହିତ ବହୁ ଶାସ୍ତ୍ର ଦର୍ଶିତା ଓ ରଜୁ ଗଦ୍ୟରେ କଟାକ୍ଷ ଓ ଶ୍ଳେଷ ପାଠକକୁ ପ୍ରଲୁବ୍ଧ କରେ। ଜୀବନର ଶତବର୍ଷ ସଂପୂର୍ଣ୍ଣ କଲାବେଳେ ପ୍ରକାଶ ପାଇଲା 'Three Horsemen of the New Apocalypse' ଗ୍ରନ୍ଥ। ଠିକ୍ ସେଇପରି ଚେହେରା ରୁଚି, ବହୁପାଠିତା, ଓଡ଼ିଆ ଓ ଇଂରାଜୀ - ଦୁଇ ଭାଷାରେ ଅସାଧାରଣ ନୈପୁଣ୍ୟ ପ୍ରଫୁଲ୍ଲମହାନ୍ତି ସାର୍‌ଙ୍କୁ ଅନନ୍ୟ କରିଛି। ଆଜି ଏଇ ସଂକଳନଟିର ପ୍ରକାଶନର ଶୁଭ ଅବସରରେ ପ୍ରଫୁଲ୍ଲ ମହାନ୍ତି ସାର୍‌ଙ୍କର ଅଶୀତମ ଜନ୍ମଦିନ ପାଳନର ମହାର୍ଘ ମୁହୂର୍ତ୍ତରେ ତାଙ୍କର ଦୀର୍ଘ ନିରାମୟ ସୃଷ୍ଟିଶୀଳ ଶତାୟୁର ଜୀବନ କାମନା କରିବା। ସୁସ୍ଥ ଶରୀର, ମନ, ବୁଦ୍ଧିମତ୍ତା, ପ୍ରଜ୍ଞା ଓ ପାଣ୍ଡିତ୍ୟ ଘେନି ସେ ତରୁଣୋପମ ହୋଇ ରହିଥାନ୍ତୁ। ଆମ ଭାଷା ଓ ସାହିତ୍ୟକୁ ଚିର ସମୃଦ୍ଧ କରୁଥାନ୍ତୁ। ଆରମ୍ଭରୁ ସେକ୍ସପିଅରଙ୍କ ଉକ୍ତିର ଯଥାର୍ଥତା ତାଙ୍କ ଜୀବନାଦର୍ଶ ହୋଇ ତାଙ୍କୁ ଯଶୋଦେହରେ ଅମର କରୁ। ମୂଲ୍ୟବାନ୍ ଉପହାର ସଂଗ୍ରହ କରିବାରେ ଜୀବନର ଅର୍ଥକୁ ବହୁଗୁଣିତ କରି ଜଗତକୁ ବୌଦ୍ଧିକ ସୃଷ୍ଟି ପ୍ରତିଦାନ ଦେବାରେ ପରାର୍ଥବାଦିତାକୁ ଜୀବନର ଶ୍ରେୟ ପ୍ରମାଣିତ କରି ପ୍ରଫୁଲ୍ଲ ସାର୍ ସାରସ୍ୱତ ଇତିହାସରେ କୀର୍ତ୍ତିମାନ ହୋଇ ରହନ୍ତୁ।

**ବସନ୍ତ କୁମାର ପଣ୍ଡା**

**ସମ୍ପାଦକ**

୨୧, ଜୁଲାଇ ୨୦୧୯

ଲେଖକୀୟ ଅଭିବ୍ୟକ୍ତି

# ମୁଁ ଗଢ଼ିଛି ମୋର ଇଚ୍ଛାର ପୃଥିବୀ

ଜୀବନଟାଏ ବଞ୍ଚିବାକୁ ହୁଏ କାରଣ ଜନ୍ମ-ମୃତ୍ୟୁର ନିଶ୍ଚିତ ପରିଧି ମଧ୍ୟରେ କେମିତି ବଞ୍ଚିବି ତା'ପାଇଁ ମୁଁ ହିଁ ଦାୟୀ । ଏହି ମୁଁ ଏକ ସାମୂହିକ ମୁଁ ନୁହେଁ । ଏହା ଏକ ବ୍ୟକ୍ତିଗତ ମୁଁ । ଏହି ମୁଁ ଗଢ଼ାହୁଏ ସମାଜ, ଇତିହାସର ଅନୁଭବ ସହିତ ଅଧ୍ୟୟନ ଓ ଅନ୍ୟ ଲୋକଙ୍କର ବଂଚିବାର ଶୈଳୀ ପ୍ରଭାବରେ । ମୁଁ ଜନ୍ମ ହୋଇଛି ମଧ୍ୟବିତ୍ତ ପରିବାରରେ । ପ୍ରାଚୁର୍ଯ୍ୟ କ'ଣ ବୁଝିଛି କିନ୍ତୁ ଓଡ଼ିଶାରେ ଦେଖିନାହିଁ । ଦାରିଦ୍ର୍ୟ କ'ଣ ବୁଝିଛି କିନ୍ତୁ ଅଙ୍ଗେ ନିଭେଇ ନାହିଁ । ପିଲାଦିନେ ଗୀତ ଗାଇଛି । ନଦୀବନ୍ଧରେ ଦଉଡ଼ିଛି । ଶ୍ରେଣୀକକ୍ଷରେ ବାଧ୍ୟଶିଶୁ ଭାବେ ବସିଛି । ମୋ ଭାଗ୍ୟକୁ, ମୋର ପ୍ରାଥମିକ ଶିକ୍ଷାର ଦାୟିତ୍ୱ ଯେଉଁମାନେ ନେଇଥିଲେ ସେମାନେ ସମସ୍ତେ ଥିଲେ ନିଷ୍ଠାବାନ, କର୍ତ୍ତବ୍ୟପରାୟଣ, ସ୍ନେହଶୀଳ ଓ ନୈତିକତା ତଥା ଈଶ୍ୱରଙ୍କୁ ବିଶ୍ୱାସ କରୁଥିବା ବ୍ୟକ୍ତିମାନେ । ସେମାନଙ୍କ ଚେହେରାରେ ମୁଁ ଔଜ୍ଜ୍ୱଲ୍ୟ ଦେଖିଛି । ସେମାନଙ୍କଠାରୁ ପାଇଛି ଆକାଶ ମୁଠେଇବାର ପ୍ରେରଣା । ସମୁଦ୍ର ଡେଇଁବାର ସାହସ । ମୁଣ୍ଡ ନନୁଆଁଇ ବଞ୍ଚିବାର ଆଶୀର୍ବାଦ । ପିଲାବେଳୁ ଘରେ ଶୁଣିଛି ମା'ର ଭାଗବତ ପଢ଼ା । ସେଇଥିପାଇଁ ମୁଁ ସକାଳୁ ଉଠେ - ରେଡିଓ ସିଲୋନ୍ ଶୁଣି ନୁହେଁ । ଘରେ ଥିଲା ଭାଗବତ, ଅଷ୍ଟାଦଶ ପୁରାଣ, ଜୈମିନି ମହାଭାରତ, ରାମାୟଣ ଓ କିଛି କବିତା ଗ୍ରନ୍ଥ । ବାପା ବେଳେବେଳେ ହାରମୋନିୟମ୍ ବଜାଇ ଗୀତ ବୋଲନ୍ତି - ବିଶେଷଭାବେ ଉପେନ୍ଦ୍ରଭଂଜ ଓ ଗୋପଳକୃଷ୍ଣ ପଟ୍ଟନାୟକଙ୍କ ଗୀତ । ମୁଁ ଶୁଣେ । ଅଷ୍ଟମ ଶ୍ରେଣୀକୁ ଗଲାବେଳକୁ ପଢ଼ିସାରିଥାଏ ଘରର ସବୁ ବହି - ବୁଝେ କି ନବୁଝେ । ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ଘରେ ବିଦ୍ୟୁତ ସଂଯୋଗ ହୋଇନଥାଏ । ମୁଁ ଲଣ୍ଠନରେ ପଢ଼େ । ସ୍କୁଲରୁ ଫେରି କିଛି ଖାଇ ଚାଲିଯାଏ ବ୍ରହ୍ମପୁରରେ ହିଲପାଟଣା ପାର୍କରେ ଥିବା ସାଧନା ପାଠାଗାରକୁ । ସେଠି ଗୋଟିଏ ଝୁଲୁଥିବା ୪୦ ୱାଟ୍‌ର ବଲ୍‌ବ ଆଲୁଅରେ ସନ୍ଧ୍ୟା ପାଞ୍ଚରୁ ସାତଟା-ଆଠଟା ପର୍ଯ୍ୟନ୍ତ ବସେ । ଓଡ଼ିଆ ଭାଷାର ପ୍ରାୟ ସବୁ ଉପନ୍ୟାସ, ଗଳ୍ପ, କବିତା ଓ କିଛି ପ୍ରବନ୍ଧ ମୁଁ ପଢ଼ିସାରିଥାଏ ଦଶମକୁ ଗଲାବେଳକୁ । ଘରର କୌଣସି କାମ ମତେ କେବେ କରିବାକୁ ପଡ଼ିନାହିଁ । ନିତି

ଦି'ଓଳି ମାଛ ମିଳେ ଖାଇବା ପାଇଁ । ପିନ୍ଧିବାର ସଉକ ମଧ୍ୟ ଥାଏ ଏବଂ ମୁଁ ପିନ୍ଧେ ମଧ୍ୟ । କିନ୍ତୁ ପରୀକ୍ଷା ଟାଇମ୍‌ଟେବୁଲ ବାହାରିବା ପର୍ଯ୍ୟନ୍ତ ମୁଁ କ୍ଲାସ୍ ବହି ଛୁଏଁ ନାହିଁ । ସବୁ ତର୍କ ପ୍ରତିଯୋଗିତାରେ ଭାଗ ନିଏ । କୌଣସି କ୍ଲାସ୍‌ରେ ମୁଁ କେବେ ଅନୁପସ୍ଥିତ ରହେ ନାହିଁ । ରାତିରେ ଖାଇସାରି ୯ଟାରୁ ୧୨ଟା ଗୋଟାଏ ପର୍ଯ୍ୟନ୍ତ ମୁଁ ଅନ୍ୟ ବହିସବୁ ପଢ଼େ ।

ଖଲ୍ଲିକୋଟ କଲିଜିଏଟ୍ ହାଇସ୍କୁଲର ଅଧକ୍ଷ ଥାଆନ୍ତି ଶ୍ରୀ ରାମଚନ୍ଦ୍ର ପଟ୍ଟନାୟକ । ମୁଁ ଯେହେତୁ ଅଷ୍ଟମ ଶ୍ରେଣୀରୁ ଇଂରାଜୀରେ କଥା କହିବାର ଅଭ୍ୟାସ କରିଥାଏ ଏବଂ ତର୍କ ପ୍ରତିଯୋଗିତାରେ, କବିତା ରଚନା, ଗୀତ ରଚନା ଓ ସ୍ୱର ସଂଯୋଜନା ପ୍ରଭୃତିରେ ପୁରସ୍କାର ପାଏ, ଅଧକ୍ଷ ରାମଚନ୍ଦ୍ର ପଟ୍ଟନାୟକଙ୍କ ଦୃଷ୍ଟି ଆକର୍ଷଣ କରେ । ସେ ଥିଲେ ଜଣେ ମହାନ୍ ଆତ୍ମା । ନାଟ୍ୟ ରସିକ ଏବଂ ଦକ୍ଷ ହେଡ୍‌ମାଷ୍ଟର । ସେ ମତେ ନେଇ ଗୋଟିଏ ଇଂରାଜୀ ଏକାଙ୍କୀ ନାଟକ କରିଥିଲେ 'Uncle Podger Hangs a Picture', ଯେଉଁଥିରେ ମୁଁ ଅଭିନୟ କରିଥିଲି । ତାହା ଥିଲା ପ୍ରଥମ ଇଂରାଜୀ ନାଟକ ବୋଧହୁଏ ବ୍ରହ୍ମପୁର ସହରରେ । ମୋର ପିଲାଦିନ ଏପରି କଟିଛି, ଯେଉଁଠି ମୁଁ ବାଧାବନ୍ଧନ କ'ଣ ଜାଣି ନାହିଁ । ସବୁ ଭଲ କଥା ଓ କାମ କରିବାରେ, ଭଲ ଖାଦ୍ୟ-ପୋଷାକ, ଭଲ କଥାବାର୍ତ୍ତା, ସାହିତ୍ୟ ଚର୍ଚ୍ଚା କରିବାରେ ମୋର ସମୟ କଟିଛି । ଦ୍ରବ୍ୟ ଅଭାବ ମୋତେ କେବେ ବ୍ୟସ୍ତ କରିନାହିଁ । ମନରେ ଲୋଭ ସୃଷ୍ଟି କରିନାହିଁ । କାହାପ୍ରତି ଖରାପ ଶବ୍ଦ କହିବାପାଇଁ ମୁଁ କେବେ ଦୁର୍ଯୋଗ ପାଇନାହିଁ । କେବଳ ଗୀତ ଗାଇଛି ଉଠିବା, ବସିବା, ଗାଧୋଇବାବେଳେ, ପାଠ ପଢ଼ିଛି ଏବଂ ଘଣ୍ଟା ଘଣ୍ଟା ଧରି ପଢ଼ିଛି । ଅନ୍ୟମାନଙ୍କୁ ପାଠ ବୁଝେଇଛି । ଚର୍ଚ୍ଚା କରିଛି ସତେ ଯେମିତି ମୁଁ ଗୋଟାଏ ପଣ୍ଡିତ ବା ଶିକ୍ଷକ । ଯୁକ୍ତି କରିବା ମୋର ଗୋଟିଏ ବଦଭ୍ୟାସ । ବଡ଼ମଣିଷଙ୍କ ସହିତ ମଧ୍ୟ ମୁଁ ଯୁକ୍ତି କରେ । ପଞ୍ଚମ ଶ୍ରେଣୀରୁ ମୋର ଗୁରୁମାନଙ୍କୁ ପ୍ରଶ୍ନ ପଚାରେ । ମୁଁ ବଞ୍ଚେ ଆକାଶର ବାଜପକ୍ଷୀ ପରି । ତାହା ଗୋଟେଇବାରେ ମନ, ପ୍ରଜାପତି ପରି ଉଡ଼ିଯିବା ପାଇଁ ମଧ୍ୟ ମନ । ଫୁଲ ଖୋଜିବାରେ ମନ, ସୁଗନ୍ଧରେ ଆମୋଦିତ ହେବାର ମଧ୍ୟ ମନ । ଜାଣେନା ଏମିତି କେମିତି ହେଲା କିନ୍ତୁ, ମୁଁ ମୁଁ ହେଇ ବଂଚିଲି । ପିଲାଦିନ, ଆଦ୍ୟଯୌବନ କାଟିଦେଲି ଛବିରେ, ମହକରେ, ସୌନ୍ଦର୍ଯ୍ୟରେ, ଜ୍ଞାନ ଗଭୀରତାରେ ପଶିବାରେ, ଚର୍ଚ୍ଚାରେ, ତର୍କରେ । ପରୀକ୍ଷା ଆସିଲେ ବହିପଢ଼ି ବସିଯାଏ । ମନରେ ଡର ଭୟ କିଛି ନଥାଏ । ମତେ ଲାଗେ ପରୀକ୍ଷା ଶୀଘ୍ର ସରିଲେ ଆଉ ଗୋଟିଏ ପାହାଚ ଚଢ଼ିବି । ତେଣୁ ଡର କ'ଣ ? କେତେ ମାର୍କ ମିଳେ ମୁଁ ଦେଖେ ନାହିଁ, କାରଣ ମୋ ସମୟରେ ମୁଁ

ନିଶ୍ଚୟ ଭଲ ମାର୍କ ପାଏ, କେବଳ ଅଙ୍କକୁ ଛାଡ଼ି । କଲେଜରେ ମଧ୍ୟ ଇଂରାଜୀ ସାହିତ୍ୟ ପଢ଼ିବାରେ ମନଦେଇ ନାଟକ କରି, ଗୀତ ଲେଖି ଓ ଗାଇ ମୁଁ ସମୟ କାଟିଦେଇଛି । ଆଲାହାବାଦ ବିଶ୍ୱବିଦ୍ୟାଳୟରେ ଏମ.ଏ. ପଢ଼ିବାକୁ ଯାଏ । ଗଙ୍ଗା-ଯମୁନା ଆକର୍ଷଣରେ ମୁଁ ସବୁ ଭୁଲିଯାଏ । ରାତି ଆଠଟା ପର୍ଯ୍ୟନ୍ତ ପାଠ ପଢ଼ି ହଷ୍ଟେଲ ବା ହୋଟେଲରେ ଖାଏ । ତା'ପରେ ଚାଲିଯାଏ, ପୂରା ରାତି ପାଇଁ ଚାରଣା ପଇସା ଭଡ଼ାବାଲା ସାଇକେଲ ଧରି ତ୍ରିବେଣୀକୁ । ପହଁରା ନଜାଣି ମୁଁ ନୌକା ଚଳାଏ ରାତି ୩ଟା ପର୍ଯ୍ୟନ୍ତ ଗଙ୍ଗା-ଯମୁନାରେ । ପାହାନ୍ତିଆରେ ହଷ୍ଟେଲରେ ପହଞ୍ଚି ଦରଓ୍ୱାନକୁ ହାତଯୋଡ଼ି ଧରି ପଶେ । ଶୋଇଯାଏ ଦିନ ଆଠଟା ପର୍ଯ୍ୟନ୍ତ । ମୋ ରୁମ୍ ଝାଡୁ ହୋଇପାରେ ନାହିଁ, ଯେହେତୁ ହଷ୍ଟେଲ ଝାଡୁବାଲା ଛଅରୁ ୭ ମଧ୍ୟରେ ଆସି ମତେ ଉଠେଇନପାରି ଫେରିଯାଏ ।

ଜୀବନର ଚାକିରି ରୋଜଗାର ପର୍ବ ଆରମ୍ଭ ବେଳକୁ ବୟସ ୨୩ । ମୁହଁରେ ହସ, ଓଠରେ ଗୀତ, ତୁଣ୍ଡକଣ୍ଠରେ ଯୁକ୍ତିଭରା କଥା । ନାଟକ କରେ । ସେଇମିତି ଶେଷ ମଧ୍ୟ ହେଇଗଲା ଚାକିରି । କାହାପାଖେ ମୁଣ୍ଡ ନୁଆଁଇନାହିଁ । ଖୋସାମତ କରିନାହିଁ । କିଛି ମାଗିନାହିଁ । ଯାହା ମିଳିଛି ଗ୍ରହଣ କରିଛି । କିନ୍ତୁ ପାଠ ପଢ଼ିଛି, ପଢ଼େଇଛି, ନାଟକ କରିଛି, ଇଂରାଜୀ ଓ ଓଡ଼ିଆରେ କଲେଜ ଓ କଲେଜ ବାହାରେ । ସବୁବେଳେ ସତେଜ ରହିଛି । କର୍ମଭୂମିକୁ ସ୍ୱର୍ଗଭୂମି କରିନାହିଁ । ପିଲାଙ୍କର ଆଦର, ସମ୍ମାନ, ବଡ଼ ବଡ଼ ପଣ୍ଡିତଙ୍କର ଶ୍ରଦ୍ଧା ପାଇଛି । କିଛି କିଛି ଈର୍ଷାର ଶିକାର ହୋଇଛି । ମୋର କିଛି କ୍ଷତି ମଧ୍ୟ ହୋଇଛି, କିନ୍ତୁ କ୍ଷତି ପାଇଁ ଦୁଃଖ କରିନାହିଁ । ମୋର ଇଚ୍ଛାର ପୃଥିବୀ ମୁଁ ଗଢ଼ିଛି ଶ୍ରଦ୍ଧା ଓ ଆନନ୍ଦର ନିଷ୍ଠାରେ । ଓଡ଼ିଶାର ରେଭେନ୍‌ସା ଓ ଖଲ୍ଲିକୋଟ କଲେଜର ଅଧ୍ୟକ୍ଷ ହୋଇଛି । ଶେଷରେ ଚାକିରିରୁ ସ୍ୱେଚ୍ଛାରେ ଅବ୍ୟାହତି ନେଇଛି କାହା ପାଖେ ବିନା ଭୁଲ୍‌ରେ ମୁଣ୍ଡ ନୁଆଁଇ ନାହିଁ । ଗବେଷଣା କରିଛି, ପ୍ରବନ୍ଧ, ଗଳ୍ପ, କବିତା ଇଂରାଜୀ ଓ ଓଡ଼ିଆରେ ଲେଖିଛି । ବିଦେଶ ଯାଇଛି । ବିଦେଶ ମାଟିରେ ଦେଶର ଗର୍ବର ଭାଷା କହିଛି । କାହାକୁ ଚାକିରି ମାଗିନାହିଁ ବରଂ ଯାଚି ହୋଇଥିବା ଚାକିରି ଗ୍ରହଣ କରିନାହିଁ ମୋ ଦେଶର ସେବା କରିବା ପାଇଁ । ଭାରତର ପ୍ରାୟ ସବୁ ବଡ଼ ବଡ଼ ଅନୁଷ୍ଠାନ ଓ ବିଶ୍ୱବିଦ୍ୟାଳୟରେ ଭାଷଣ ଦେଇଛି । ତାଳି ଓ ଫୁଲମାଳ ପାଇଛି । କିଛି ସମ୍ମାନ ପୁରସ୍କାର ପାଇଛି । କିନ୍ତୁ କେଉଁଥିରେ ଅଟକି ନାହିଁ । ନିଜ ଇଚ୍ଛାରେ ଚାକିରି ଛାଡ଼ି ମୁଁ କାହା ବିରୋଧରେ ଅଭିଯୋଗ କରିନାହିଁ । ଏବେ ମଧ୍ୟ କାହାପ୍ରତି ଆଶଙ୍କା

ନାହିଁ । ଜୀବନଟା ଭଲପାଇବାରେ କଟିଛି । ପ୍ରଚୁର ପ୍ରେମ, ଜିଦ୍ ଓ ନିଜ କଳ୍ପନାର ଇଚ୍ଛା ବିଳାସରେ କାଟିଦେଇଛି ଜୀବନ । ପିଲାମାନେ ସମସ୍ତେ ଅତି ଭଲରେ ମଧ୍ୟ ଅଛନ୍ତି । କିନ୍ତୁ ମୁଁ ଅଛି ମୋର ସ୍ୱତନ୍ତ୍ର ପୃଥିବୀରେ । ମୋର ଇଚ୍ଛାରେ ଜହ୍ନ ଉଠାଇଛି ଅମାବାସ୍ୟାରେ, ଫୁଲ ଫୁଟାଇଛି ଧଳା କାଗଜରେ । ମୁଁ ବଂଚିଛି ମୋର ସ୍ୱାକ୍ଷର ରଖି ଜୀବନର ସବୁ ଇଲାକାରେ । କିଏ ମନେରଖି ପଢୁ ନପଢୁ, ମୁଁ ମୋ ଇଚ୍ଛାରେ ଗଢ଼ିଛି ମୋର ପୃଥିବୀ । କାଲି ଯଦି ମରିଯାଏ, ତେବେ ମଧ୍ୟ ମୋର ଇଚ୍ଛାରେ ପୂର୍ଣ୍ଣଛେଦ ପଡ଼ିବ ନାହିଁ । ମୋର ପ୍ରେମାନୁରାଗ ଲମ୍ବିଯିବ ସମୟର ଶେଷ ବିନ୍ଦୁକୁ ।

ପ୍ରସ୍ତୁତି : **ସୁଭାଷ ଶତପଥୀ**

# ଆହ୍ୱାନ ଓ ସତର୍କତାର ସମନ୍ୱୟ ଲେଖକକୁ ମାର୍ଜିତ କରେ

## ସମ୍ବାଦରେ ପ୍ରକାଶିତ ବିଶିଷ୍ଟ ଲେଖକ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ଏକ ସାକ୍ଷାତ୍‌କାର

- ଆପଣଙ୍କ ସାହିତ୍ୟ ଜୀବନ କେବେ ଓ କେମିତି ଆରମ୍ଭ ହୋଇଥିଲା ? ପ୍ରବନ୍ଧ ପ୍ରତି ଆପଣଙ୍କ ଅନୁରକ୍ତିର କାରଣ କ'ଣ ?

ନିରଞ୍ଜନ ସାହୁ

କେ-୭-୬୪୧, ଘାଟିକିଆ, ଭୁବନେଶ୍ୱର

ପିଲାଦିନୁ ମୁଁ ସାହିତ୍ୟ, ସଂଗୀତ, ନାଟକ, ଯାତ୍ରା ପ୍ରଭୃତିରେ ଆଗ୍ରହୀ ଥିଲି । ଘରେ ଥିଲା ଅଷ୍ଟାଦଶ ପୁରାଣ, ଭାଗବତ ଏବଂ ମହାକାବ୍ୟ । ସେ ସବୁ ପଢ଼ି ଶୁଣି ମୋର ଜୀବନ ୭/୮ ବର୍ଷ ବୟସରୁ ଛନ୍ଦମୟ ହୋଇଥିଲା । ମୋର ମନେଅଛି ଷଷ୍ଠଶ୍ରେଣୀରେ ପଢ଼ିଲାବେଳେ ମୁଁ ଲେଖିଥିଲି ମୋର ପ୍ରଥମ କବିତା । କିନ୍ତୁ ମୋର ବେଶି ଆଗ୍ରହ ଥିଲା ନାଟକ ପ୍ରତି । ସପ୍ତମ ଶ୍ରେଣୀରେ ପଢ଼ିଲାବେଳେ ମୁଁ ଆମ ସ୍କୁଲ - ଗଭର୍ଣ୍ଣମେଣ୍ଟ ସେକେଣ୍ଡାରି ଟ୍ରେନିଂ ସ୍କୁଲରେ 'ରଘୁ ଅରକ୍ଷିତ' ନାଟକରେ ଅଭିନୟ କରିଥିଲି । ଦଶମ ଶ୍ରେଣୀର ମୁଁ ଇଂରାଜୀ ନାଟକ 'Uncle Podger Hangs a Picture' ରେ ଅଭିନୟ କରିଥିଲି । ଚିଲିକା ଉପରେ ଲେଖିଥିଲି ଦୀର୍ଘ କବିତା ! ନିଜେ ଗୀତ ରଚନା ଓ ସ୍ୱର ସଂଯୋଜନା କରି ମଞ୍ଚ ଉପରେ ଗାଉଥିଲି । କଲେଜ ପଢ଼ାବେଳେ ସେକ୍ସପିୟରଙ୍କ ହାମ୍‌ଲେଟ୍ ଓ ସାଇଲକ୍ ଭୂମିକାରେ ଅଭିନୟ କରିଥିଲି । ନିଜେ ଦୁଇଟି ଏକାଙ୍କିକା ଲେଖି କଲେଜରେ ପ୍ରଥମ ପୁରସ୍କାର ପାଇଥିଲି । କବିତା, ପ୍ରବନ୍ଧ ଓ ବକ୍ତୃତା ପ୍ରତିଯୋଗିତାରେ ପ୍ରଥମ ହୋଇଥିଲି । ପରେ ଚାକିରି ଆରମ୍ଭ ବେଳେ ରେଭେନ୍‌ସା କଲେଜରେ ଅନେକ ଓଡ଼ିଆ ନାଟକ - 'ନିଶିଥ ସୂର୍ଯ୍ୟ' (ରମେଶ ପାଣିଗ୍ରାହୀ), 'ଶବବାହକମାନେ' (ବିଜୟ ମିଶ୍ର) ପ୍ରଭୃତି

ନାଟକରେ ନିର୍ଦ୍ଦେଶନା ଦେଇଥିଲି । ମୋର ଏକାଙ୍କିକା 'ଉତ୍ତର ପୁରୁଷ', 'ପକ୍ଷୀ' ଓ 'ବେଲୁନ୍' ପ୍ରଭୃତି ମଧ୍ୟ ମଞ୍ଚସ୍ଥ ହୋଇଥିଲା ମୋ ନିର୍ଦ୍ଦେଶନାରେ । ମୁଁ ପ୍ରଥମ କରି ଉଦ୍ଭଟ ନାଟକ ମଞ୍ଚସ୍ଥ କରିଥିଲି,ଏଡ୍‌ୱାର୍ଡ୍ ଆଲ୍‌ବିଙ୍କ 'The Zoo Story'ରେ ମୁଖ୍ୟ ଭୂମିକାରେ ଅଭିନୟ କରିଥିଲି । ସାମୁଏଲ୍ ବେକେଟ୍‌ଙ୍କ 'End Game'ରେ ମୁଖ୍ୟ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲି । ପରେ ମୋର 'ମଲା ଆକାଶ' ଓ 'ସରାଗ ସନ୍ନ୍ୟାସୀ' ତତ୍କାଳୀନ ଅବିଭକ୍ତ ସାହିତ୍ୟ ଏକାଡେମିରେ ଶ୍ରେଷ୍ଠ ନାଟକ ହୋଇଥିଲା ୧୯୭୬ ଓ ୧୯୭୭ରେ । 'କଳାଜହ୍ନ' ଓ 'ଝରାକୁହେଳୀ' ମଧ୍ୟ ରଚନା କରି ନିର୍ଦ୍ଦେଶନା ଦେଇ ମଞ୍ଚସ୍ଥ କରିଥିଲି । କିନ୍ତୁ ଯେହେତୁ ଜ୍ଞାନପିପାସା ଅଧିକ ଥିଲା ମୋର ନାଟକଗୁଡ଼ିକ କାବ୍ୟିକ ଓ ବୌଦ୍ଧିକ ଥିବା ଯୋଗୁଁ ଅଭିନେତା ମିଳିବା କଷ୍ଟ ହେଉଥିଲା । ଟି.ଏସ୍.ଏଲିୟଟ୍‌ଙ୍କ 'The Waste Land' କବିତାକୁ ନାଟ୍ୟରୂପ ଦେଇ ମଞ୍ଚସ୍ଥ କରିଥିଲି । କିନ୍ତୁ ଲକ୍ଷ୍ୟ କଲି ଯେ ନାଟକ ପାଇଁ ମୋର ବହୁତ ସମୟ ନଷ୍ଟ ହେଉଥିଲା ଏବଂ ମୁଁ ଆତ୍ମସନ୍ତୋଷ ପାଉ ନଥିଲି, ଯେହେତୁ ମନଲାଖି କଳାକାରଙ୍କ ଅଭାବ ଥିଲା, ତେଣୁ ମୁଁ ଗବେଷଣା ଓ ଅଧ୍ୟୟନ ଉପରେ ସମୟ ଦେଲି । ଓଡ଼ିଆ ଭାଷାରେ ଯେ ବୌଦ୍ଧିକ ଆଲୋଚନା ଲେଖା ଯାଇପାରେ ତାହା ପ୍ରମାଣ କରିବା ମୋର ଉଦ୍ଦେଶ୍ୟ ଥିଲା । ତେଣୁ ପ୍ରବନ୍ଧ ଓ ସମାଲୋଚନାରେ ମନ ବଳାଇଲି । ନାଟକ ଲେଖା ବନ୍ଦ କରି ପ୍ରବନ୍ଧ ଓ କବିତା ଉଭୟ ଇଂରାଜୀ ଓ ଓଡ଼ିଆରେ ଲେଖିଲି । ପ୍ରବନ୍ଧରେ ସଂସ୍କୃତି, ଦର୍ଶନ, ସାମାଜିକ ମଣିଷର ନିଗୂଢ଼ ମନର କଥା କିପରି ପ୍ରକାଶ ପାଏ ତା'ର ଅନୁଶୀଳନ ମତେ ଆନନ୍ଦ ଦେଲା । ତେଣୁ ପ୍ରବନ୍ଧ ଲେଖିଲି । ଓଡ଼ିଆ ଭାଷାର କାବ୍ୟିକତାକୁ ସମ୍ମାନ କରି ମୁଁ ଗଦ୍ୟକୁ ଛନ୍ଦମୟ କରିବା ପାଇଁ ଚେଷ୍ଟା କଲି ।

- **ଆପଣଙ୍କ ପ୍ରଥମ ପ୍ରକାଶନର ଅନୁଭୂତି କେମିତି ଥିଲା ? ଆପଣ କାହାକୁ ପ୍ରାଧାନ୍ୟ ଦିଅନ୍ତି, ପୁରସ୍କାରକୁ ନା ପାଠକଙ୍କ ଉଚ୍ଛ୍ୱାସକୁ । କେଉଁଟି ଆପଣଙ୍କ ପାଇଁ ବେଶୀ ମୂଲ୍ୟବାନ ?**

**ପୁଷ୍ପାଞ୍ଜଳି ପଣ୍ଡା**

ଟେଲିଫୋନ ଭବନ, ବରଗଡ଼

ମୋର ପ୍ରଥମ ସମାଲୋଚନା ପ୍ରବନ୍ଧ ଓ ଗ୍ରନ୍ଥ ସମୀକ୍ଷା ବୋଧହୁଏ 'ଆସନ୍ତାକାଲି' ଓ 'ନବରବି'ରେ ପ୍ରକାଶ ପାଇଥିଲା । ତା' ପୂର୍ବରୁ ବ୍ରହ୍ମପୁରରୁ ପ୍ରକାଶିତ କେତେକ ପତ୍ରିକାରେ ମୋର କବିତା ପ୍ରକାଶ ପାଇଥିଲା । ଏକିରି ଆରମ୍ଭରେ ବୋଧହୁଏ ୧୯୬୪-୬୫ ବେଳେ 'ଝଙ୍କାର'ରେ କବିତା ସ୍ଥାନିତ ହୋଇଥିଲା । ମୁଁ ପ୍ରକାଶନକୁ ଗୁରୁତ୍ୱ ଦେଇନାହିଁ । ମତେ କିଏ ଲେଖା ମାଗିଲେ ଦେଇଦିଏ କିନ୍ତୁ ହୁଏତ ଆଳସ୍ୟ ଯୋଗୁ ମୁଁ ପତ୍ରିକା ସାଇତି ରଖି

ବହି ଆକାରରେ ଛାପିବା ପାଇଁ ଚେଷ୍ଟା କରିନଥିଲି । ତଥାପି ଦାସ ବ୍ରଦର୍ସ ମୋର ନାଟକ 'ମଲା ଆକାଶ' ପୁସ୍ତକ ଭାବେ ପ୍ରଥମେ ପ୍ରକାଶ କରିଥିଲେ । ମୋର କୌଣସି ଶିହରଣ କେବେ ଆସିନାହିଁ । ପ୍ରଥମ ବହି ଅବଶ୍ୟ ମତେ ଖୁସି ଦେଇଛି । ମୋର 'କଳାଜହ୍ନ' ନାଟକ କଟକରେ ପ୍ରକାଶ ପାଇବା ପରେ ଏବଂ ଭୁବନେଶ୍ୱର ଓ ବ୍ରହ୍ମପୁରରେ ଅଭିନୀତ ହେବା ପରେ ମତେ ନିଷ୍ପତ୍ତି ନେବାକୁ ହେଲା ମୁଁ ନାଟକକୁ ପେସା କରିବା ନା ଏପରି ଇଚ୍ଛାର ପ୍ରବାହରେ ଲେଖିବି । 'ସରାଗ ସନ୍ନ୍ୟାସୀ' କଟକରେ ଛପାହେବା ପରେ ଅନେକ ପାଠକୀୟ ଶ୍ରଦ୍ଧା ପାଇଛି । ବିଶେଷ ଆନନ୍ଦିତ ହୋଇଛି ଯେତେବେଳେ'ମଲା ଆକାଶ' ଓ 'ସରାଗ ସନ୍ନ୍ୟାସୀ' ଉଭୟ ଓଡ଼ିଶା ସାହିତ୍ୟ ଏକାଡେମିର ଶ୍ରେଷ୍ଠ ନାଟକ ବିବେଚିତ ହେଲା । କିନ୍ତୁ କେତେକ କାରଣରୁ ମୁଁ ନାଟକ ଲେଖା ବନ୍ଦ କରି ଗବେଷଣା ଉପରେ ଧ୍ୟାନ ଦେଲି । ମୁଁ ଲେଖେ ଯେତେବେଳେ ମୋର କିଛି କହିବାର ଥାଏ । ଲେଖି ସାରିବା ପରେ ଛପା ହୋଇଗଲେ ମୁଁ ଅନ୍ୟ କ'ଣ ଲେଖିବି ଚିନ୍ତା କରେ । ପୁରସ୍କାର ପ୍ରତି ମୋର ଲୋଭ ନାହିଁ । ଅବଶ୍ୟ ପୁରସ୍କାର ଗୋଟିଏ ସାମୟିକ ପ୍ରେରଣା ଦିଏ । କିନ୍ତୁ ଆନୁଷ୍ଠାନିକ ମାନ୍ୟତା ଅପେକ୍ଷା ଯେତେବେଳେ ମୁଁ ପାଠକଠାରୁ ଖଣ୍ଡେ ଚିଠି ପାଏ କିମ୍ବା ଶ୍ରଦ୍ଧାର ଫୋନ୍ ପାଏ ମୋ ମନରେ ସନ୍ତୋଷ ଆସେ । ଲେଖକର ଅଭିବ୍ୟକ୍ତି ଯଦି ପାଠକର ଶ୍ରଦ୍ଧା ପାଏ ମୋ ମତରେ ତା'ଠାରୁ ବଡ଼ ପୁରସ୍କାର ଆଉ କିଛି ନାହିଁ । 'ସମାଜ' ପୃଷ୍ଠାରେ ମୋର 'ବିରହ' ପ୍ରବନ୍ଧ ଧାରାବାହିକ ଭାବେ ପ୍ରକାଶ ପାଇବା ବେଳେ ମୁଁ ପ୍ରତିଦିନ ପ୍ରାୟ ଦୁଇମାସ ଧରି ହାରାହାରି ୧୦ଟି ପୋଷ୍ଟକାର୍ଡ଼ ପାଉଥିଲି । ସେହି ଚିଠି ମୋର ଅତ୍ୟନ୍ତ ପ୍ରିୟ ପୁରସ୍କାର ଥିଲା । 'ସମ୍ବାଦ'ରେ ମୋର ପୁସ୍ତକ 'ଭାରତୀୟ ସଂସ୍କୃତି ଓ ଭଗବଦ୍‌ଗୀତା' ପ୍ରାୟ ବର୍ଷେକାଳ ପ୍ରତି ଗୁରୁବାର ଦିନ ପ୍ରକାଶ ପାଉଥିଲା ବେଳେ ମୁଁ ପାଠକମାନଙ୍କର ପ୍ରଶଂସାପତ୍ର ପାଏ । ଅନେକ ପ୍ରଶ୍ନ ମଧ୍ୟ କରନ୍ତି । ସେଇ ସମୟ ମୋ ପାଇଁ ଏକ ଆନନ୍ଦର ଋତୁ ଥିଲା । କିନ୍ତୁ ସେଇ ପୁସ୍ତକ ପ୍ରକାଶ ପାଇଁ ମୁଁ କାହିଁକି କେଜାଣି ଇଚ୍ଛା ପ୍ରକାଶ କରିନଥିଲି ଯେହେତୁ ମୋ ପାଖରେ ମାନୁସ୍କ୍ରିପ୍ଟ ପୂରା ମୁଁ ରଖିପାରି ନଥିଲି ମୋର ନିଜ ଅଯୋଗ୍ୟତାରୁ । ମୋର ଲେଖା ପାଠକକୁ ଚିନ୍ତାମଗ୍ନ କରେ, ଚିନ୍ତା କରିବାକୁ ପ୍ରେରଣା ଦିଏ । ଏଇ ଅନୁଭବ ମୁଁ ପାଇଛି । ପାଠକ ଯଦି ମୋର ଚେତନାସ୍ରୋତ ସହିତ ନିଜକୁ ସାମିଲ କରି ବିଭିନ୍ନ ପୁସ୍ତକ ପଢ଼ିବା ପାଇଁ ଇଚ୍ଛା କରେ ଏବଂ ଅନୁଶୀଳନ ଶୈଳୀର ତର୍ଜମା କରେ ତାହା ହିଁ ମୋର ସାର୍ଥକତା ।

- **କୁହାଯାଏ ଯେ ପ୍ରତିଭାବାନ ବ୍ୟକ୍ତି ପଛରେ ଭଗବାନଙ୍କ ଆଶୀର୍ବାଦ ଥାଏ ଓ ସେମାନଙ୍କ ଜନ୍ମ ଏକ ବିରଳ ମୁହୂର୍ତ୍ତରେ ହୋଇଥାଏ – ଏହା ସତ କି ? ଆପଣଙ୍କ ପ୍ରେରଣାର ଉତ୍ସ କିଏ ?**

**ସୌରଭ କେଶରୀ ଦାସ**

ଧଳସାହି, ଚରମ୍ପା, ଭଦ୍ରକ – ୭୫୬୧୦୧

ଆପଣଙ୍କ ପ୍ରଶ୍ନ ଏକ ସାଧାରଣ ସତ୍ୟ । ଲୋକେ ଭାବନ୍ତି ଯେ ଈଶ୍ୱରଙ୍କ ଆଶୀର୍ବାଦ ନଥିଲେ ଜଣେ କିଛି କରିପାରେ ନାହିଁ । ସେ କବି, ଦାର୍ଶନିକ, ବିଜ୍ଞାନୀ କିମ୍ବା ସ୍ଥପତି ହେଉ ଗୋଟିଏ ପ୍ରେରଣାକୁ ନେଇ ଲେଖେ ଓ ପରିଶ୍ରମ କରେ । କଳାକାର ଓ ଗବେଷକ ତଥା ରାଷ୍ଟ୍ରନିତୀଜ୍ଞ ସମସ୍ତେ ସେହି ନୈସର୍ଗିକ ପ୍ରେରଣା ଯୋଗୁଁ ହିଁ ଦିନରାତି ପରିଶ୍ରମ କରନ୍ତି ନିଜ ନିଜ କ୍ଷେତ୍ରରେ । ମୁଁ ଏକ ସନ୍ଦିଗ୍ଧ ଈଶ୍ୱରବିଶ୍ୱାସୀ । ମୁଁ ହିନ୍ଦୁ ଭାବେ ମନ୍ଦିର ଯାଏ, ପୂଜା ପ୍ରାର୍ଥନା କରେ; କିନ୍ତୁ ପରିଶ୍ରମ ଓ ସାଧନାରେ ବିଶ୍ୱାସ କରେ । ମୁଁ ବିଶ୍ୱାସ କରେ ନାହିଁ ଯେ ଛଦ୍ମବେଶୀ ଈଶ୍ୱର ଆସି 'ଦେହି ପଦ ପଲ୍ଲବମୁଦାରଂ' ପରି କିଛି ଲେଖିଦେବେ ମୋର ପୃଷ୍ଠାରେ । ମୋର ବିଶ୍ୱାସ ଯେ ପ୍ରତ୍ୟେକ ବ୍ୟକ୍ତି ତା'ର ପଞ୍ଚେନ୍ଦ୍ରିୟ ବହିର୍ଭୂତ ବ୍ୟାପ୍ତିର ସନ୍ଧାନ କରେ ନିଜ ମାର୍ଗରେ । ମୁଁ ବାରମ୍ବାର କହେ ଯେ ଇନ୍ଦ୍ରିୟାନୁଭୂତ ବିଶ୍ୱ ବାହାରେ ମଧ ଆହୁରି ଅନେକ କିଛି ରହିଛି ଯାହା ଆଖି କାନ ନାକ ବାହାରେ ଅଦୃଶ୍ୟ ଭାବେ ରହିଛି । ତାକୁ ପାଇବାକୁ ହେଲେ ଇନ୍ଦ୍ରିୟମାନଙ୍କ ଉପରକୁ ଉଠାଇବାକୁ ହେବ । ତେଣୁ ମୁଁ ବାସ୍ତବରେ ଲୀନ ନହୋଇ ବାସ୍ତବକୁ ପ୍ରଶ୍ନ କରେ । ସୌନ୍ଦର୍ଯ୍ୟ ଆଖି ପାଇଁ ନା ଆତ୍ମା ପାଇଁ? ଆତ୍ମା ମାନେ କ'ଣ ? ଆତ୍ମା ଶରୀରର ଅଙ୍ଗବିଶେଷ ନୁହେଁ । ଆତ୍ମା କେତୋଟି ମୂଲ୍ୟବୋଧକୁ ନେଇ ସୃଷ୍ଟି ହୁଏ । ପଞ୍ଚେନ୍ଦ୍ରିୟ ବାହାରେ ଯାହା ଅଛି ତାକୁ ପାଇବାକୁ ହେଲେ ୬୪ ପାଖୁଡ଼ାର ପଦ୍ମ ଆଖି ବାହାରେ ଲକ୍ଷେ ପାଖୁଡ଼ାର ମହକ ସନ୍ଧାନ କରିବାକୁ ହୁଏ । ଏବଂ ଏହି ସନ୍ଧାନ ଏକ ଆତ୍ମିକ ଗୁଣ । ଏହି ଗୁଣ ଗୋଟିଏ ବିଶ୍ୱାସରୁ ଆସେ । ତାହା ଈଶ୍ୱର ବିଶ୍ୱାସ, ମଣିଷରେ ବିଶ୍ୱାସ, ପ୍ରକୃତିରେ ବିଶ୍ୱାସ କିମ୍ବା ଅଚଳ ଶୂନ୍ୟତାରେ ବିଶ୍ୱାସ ହୋଇପାରେ । ସତ୍ୟ ପ୍ରତ୍ୟେକ ମଣିଷ ପାଇଁ ଅଲଗା । ଯେଉଁ ବ୍ୟକ୍ତି ତା'ର ନିଜର ସତ୍ୟ ଆବିଷ୍କାର କରେ ସେ ହିଁ ଲେଖକ, ଗବେଷକ, ଗାୟକ, ସ୍ଥପତି ହୋଇପାରେ । ତେଣୁ ମୋର ସାହିତ୍ୟ ସାଧନା ମଧ୍ୟ ମଣିଷର ବଡ଼ପଣର ସୀମା ସନ୍ଧାନ ପାଇଁ ମଣିଷ ଭିତରର ଈଶ୍ୱରକୁ ବିଶ୍ୱାସ କରେ । ଈଶ୍ୱର କୌଣସି ମନ୍ଦିରରେ ନାହାନ୍ତି । ପ୍ରତ୍ୟେକ ବ୍ୟକ୍ତିର ଅନ୍ତଃସ୍ୱର, ଜୀବନୀଶକ୍ତି ଓ ଚେତନାର ବ୍ୟାପ୍ତି ଯେଉଁ ବିଶ୍ୱାସ ସୃଷ୍ଟି କରେ ତାହା ହିଁ ତା' ପାଇଁ ଈଶ୍ୱର । ମୁଁ ସେହି ଆଶୀର୍ବାଦ ପାଇଁ ସାଧନା କରେ । ପ୍ରତ୍ୟେକ ମଣିଷର ଜନ୍ମ ଏକ ବିରଳ ମୁହୂର୍ତ୍ତ, କାରଣ ସମୟର ପ୍ରବାହରେ ପ୍ରତ୍ୟେକ ମୁହୂର୍ତ୍ତ ସ୍ୱତନ୍ତ୍ର । ପୂର୍ଣ୍ଣମୀରେ ଜନ୍ମ ହେଲେ ଜଣେ ବଡ଼ ଲେଖକ ହୁଏ ନାହିଁ । ଲେଖକର ସାଧନା ଓ ସନ୍ଧାନର ସାର୍ଥକତା ହିଁ ତା'ର ଜନ୍ମକୁ ବିରଳ କରେ । ସୌଷ୍ଠବର ଶାଳୀନତା ଓ ସୌନ୍ଦର୍ଯ୍ୟର ଚିରନ୍ତନତା, ପରିବର୍ତ୍ତନ ମଧ୍ୟରେ ପୂର୍ଣ୍ଣତାରେ ମୁଁ ବିଶ୍ୱାସ କରେ । ଏହି ବିଶ୍ୱାସ ମୋର ଆତ୍ମବିଶ୍ୱାସର ପ୍ରକ୍ଷେପଣ । ମୁଁ ଗଢ଼େ ମୋର ଇଚ୍ଛାର ପୃଥିବୀ । କିନ୍ତୁ, ପରିବାର, ସମାଜ ସହିତ ଏକାତ୍ମ ନହୋଇ ମୁଁ ଖୋଜେ ଏକ ନିରୋଳା ଆତ୍ମପ୍ରବାହର ସାର୍ଥକତା ।

- **ଗଳ୍ପ, ପ୍ରବନ୍ଧ ଓ ନିବନ୍ଧ ମଧ୍ୟରେ ପାର୍ଥକ୍ୟ କ'ଣ? ଯୁବପିଢ଼ି ଏ ସବୁ ରଚନା ବେଳେ କେଉଁ ଦିଗକୁ ଦୃଷ୍ଟି ଦେବା ଉଚିତ?**

**ଅମୂଲ୍ୟ ବେହେରା**
ଡୁଙ୍ଗୁରିପାଲି, ସୋନପୁର୍

ମଣିଷ ଗଳ୍ପ ଶୁଣିବାକୁ ଆଗ୍ରହ ପ୍ରକାଶ କରେ, କାରଣ ଘଟଣାପ୍ରବାହ, ଚରିତ୍ରମାନଙ୍କର ପ୍ରତିକ୍ରିୟା ଓ ଶେଷବିନ୍ଦୁରେ ସାମାଜିକ ପଣିଣତି ଶ୍ରୋତାକୁ ତା'ର ନିଜ ଜୀବନ ସଜାଡ଼ିବା ପାଇଁ ଏକ ମାର୍ଗ ଇଙ୍ଗିତ କରିଥାଏ । ପ୍ରଥମ ପର୍ଯ୍ୟାୟରେ ଆମେ ଦେବଦେବୀ କଳ୍ପନା କରି ସେମାନଙ୍କ କାହାଣୀ ଲେଖିଲୁ, କାରଣ ଆମର ସାଧାରଣ ବଞ୍ଚିବା ମଧ୍ୟ କଷ୍ଟକର ଥିଲା । ଦୀର୍ଘ ଶତାବ୍ଦୀ ପରେ ଯେତେବେଳେ ମଧ୍ୟମ ଶ୍ରେଣୀ ସୃଷ୍ଟି ହେଲା, ମଣିଷ ନିଜର ଚିନ୍ତା ଓ ପରିଶ୍ରମ ଦ୍ୱାରା ବଞ୍ଚିପାରିଲା, ସେ ନିଜର କାହାଣୀ କହିବା ଆରମ୍ଭ କଲା । ଅଷ୍ଟାଦଶ ଶତାବ୍ଦୀ ପରଠାରୁ କାହାଣୀ ଲେଖା ଚାଲିଛି ମଣିଷର ସାମାଜିକ ଜୀବନର । ପ୍ରତ୍ୟେକ ବ୍ୟକ୍ତି ତା'ର ଅନୁଭବ ନେଇ ଅନ୍ତତଃ ଗୋଟିଏ ଗଳ୍ପ ଲେଖିପାରେ ବା କହିପାରେ । ପ୍ରବନ୍ଧ ଓ ନିବନ୍ଧ ମଣିଷର ଗବେଷଣାତ୍ମକ ଜ୍ଞାନର ଭାଷାନ୍ତର । ଦାର୍ଶନିକମାନେ ଯାହା ଲେଖିଲେ ତାହା ମଧ୍ୟ ପ୍ରବନ୍ଧ । ପ୍ରବନ୍ଧ ପଦ୍ୟଶୈଳୀରେ ମଧ୍ୟ ଲେଖାଯାଉଛି । ପ୍ରବନ୍ଧ ଏକ ଉଦ୍ୟମ, ଚେଷ୍ଟା । କୌଣସି ବିଷୟ ଉପରେ ଏକ ଅନୁସନ୍ଧାନ । ନିବନ୍ଧ ବା ସନ୍ଦର୍ଭ ଏକ ପ୍ରାମାଣିକ ସିଦ୍ଧାନ୍ତ, ଯାହା ଗବେଷଣା ଉପରେ ଆଧାରିତ । କିନ୍ତୁ ମୂଳକଥା ହେଲା ଗଳ୍ପ ଏକ କଥନଶୈଳୀ ଯାହା କାବ୍ୟିକ ହୋଇପାରେ, ସାଙ୍କେତିକ ହୋଇପାରେ କିମ୍ବା ଘଟଣା-ଚରିତ୍ର-ସମୟ ଏକାଠି କରି ଏକ ଜୀବନ ଚିତ୍ର ହୋଇପାରେ । କିନ୍ତୁ ମୁଖ୍ୟତଃ ଏହା କଥକ ଛନ୍ଦ ଉପରେ ଆଧାରିତ । ପ୍ରବନ୍ଧ ଲେଖିବା ପାଇଁ ବିଶ୍ୱ, ମଣିଷ, ଇତିହାସରେ ବିବର୍ତ୍ତିତ ମୂଲ୍ୟବୋଧ ଏବଂ ସଂସ୍କୃତି, ସଭ୍ୟତାର ଗତିଛନ୍ଦ ଉପରେ ସମ୍ୟକ୍ ଧାରଣା ଆବଶ୍ୟକ । ବିଶ୍ୱର ସବୁ ସାହିତ୍ୟରେ ପ୍ରଥମେ ପଦ୍ୟ ଆସିଛି ଏବଂ ତା'ପରେ ଆସିଛି ଗଦ୍ୟ । ଓଡ଼ିଆ ସାହିତ୍ୟରେ ମୌଳିକ ଦର୍ଶନର ପରମ୍ପରା ନାହିଁ । ଯେଉଁ ଦର୍ଶନ ଆସିଛି, ଯେମିତି ପଞ୍ଚସଖା ଯୁଗରେ, ତାହା ଅନେକାଂଶରେ ବୈଦିକ ସଭ୍ୟତା, ଦର୍ଶନ, ଉପନିଷଦ୍ ପ୍ରଭୃତିର ସାମାନ୍ୟ ବିଭ୍ରଷ୍ଟ ଆଲୋଚନା । ଶୂନ୍ୟବାଦର ସ୍ଥିତିବାଦୀ ଦର୍ଶନ ସମ୍ପୂର୍ଣ୍ଣ ସରଳ ବୋଧଗମ୍ୟ ଭାବେ ମଧ୍ୟ ପ୍ରକାଶ ପାଇନାହିଁ । ତେଣୁ ଗଦ୍ୟର ମୌଳିକ ପରମ୍ପରା ଓଡ଼ିଆ ଭାଷାରେ ସ୍ଥାପିତ ହୋଇନାହିଁ କି ଦର୍ଶନର ମୌଳିକ ଗବେଷଣା ହୋଇନାହିଁ । ଜଣେ ପ୍ରାବନ୍ଧିକର ବିଶ୍ୱଧାରଣା, ଭାଷାନ୍ତର, ସାମାଜିକ ଅବବୋଧ ଓ ସଭ୍ୟତାର ପ୍ରବାହରେ ବ୍ୟକ୍ତିର ଭୂମିକା ପରିବର୍ତ୍ତନର ଜ୍ଞାନ ରହିବା ଆବଶ୍ୟକ । ଦର୍ଶନ, ତତ୍ତ୍ୱ ଅନୁଶୀଳନ ମାର୍ଗ, ସତ୍ୟାନୁସନ୍ଧାନ ସହିତ ଶୈଳୀର ସୃଜନଶୀଳତା ନ ରହିଲେ ପ୍ରବନ୍ଧ ଲେଖିବା କଷ୍ଟକର ।

ଯୁବପିଢ଼ି ଲାଗି ସାହିତ୍ୟର ପାରମ୍ପରିକ ସୀମା ଦିନକୁ ଦିନ ସଂକୀର୍ଣ୍ଣ ହୋଇ ଆସୁଛି । କବିତାର ଆଦର କମିଯାଉଛି, କାରଣ କବିତା ବ୍ୟକ୍ତିବିଶ୍ୱର ପରିସୀମା ଡେଇଁ ସାମାଜିକ ଜୀବନ ପାଇଁ କୌଣସି ଆଦର୍ଶ କିମ୍ବା ବିଶ୍ୱାସର ପରିଭାଷା ସୃଷ୍ଟି କରୁନାହିଁ । ଆତ୍ମକୈନ୍ଦ୍ରିକ ଚିତ୍ରକଳ୍ପ ଏବଂ ବିଫଳତାର ଗଦ୍ୟଛନ୍ଦ, ଶିହରଣ ଅବଶ୍ୟ ପାଠକ ତନ୍ତ୍ରୀରେ ସୃଷ୍ଟି କରୁଛି, କିନ୍ତୁ କୌଣସି ବ୍ୟବହାରିକ ଜୀବନଛନ୍ଦ ଫୁଟୁନାହିଁ । ଏହା ଯେ କେବଳ ଓଡ଼ିଆ କବିତାରେ ଘଟୁଛି ତାହା ନୁହେଁ, ସାରା ବିଶ୍ୱରେ ବ୍ୟକ୍ତିଚେତନାର ସ୍ତର ବଢ଼ିଥିବା ହେତୁ ଉଚ୍ଛ୍ୱାସ ଅପେକ୍ଷା ମହତ୍ତ୍ୱାକାଂକ୍ଷାର ଆରୋହଣ ବିଶ୍ୱାସ, କବିତା ଦେଇପାରୁ ନାହିଁ । ତେଣୁ ଯୁବପିଢ଼ି ଯଦି କବିତା ଲେଖେ ଭାଷା, ଛନ୍ଦ ଓ ଚିତ୍ରକାଳ୍ପିକ ସଂଗଠନରେ ଏକ ପରିବର୍ତ୍ତନ ଆଣି ମଣିଷକୁ ବଡ଼ପଣ ଦେଖାଇବାକୁ ପଡ଼ିବ । ଗଳ୍ପଗୁଡ଼ିକ ମଧ୍ୟ ସାଧାରଣ ଜୀବନର ଅନୁଭୂତିକୁ ନେଇ ପ୍ରତ୍ୟାଶିତ । ଚରିତ୍ର କଳ୍ପନାରେ ଭାବ ଓ ସାଧାରଣତ୍ୱ ବେଶି । ଏପରି କୌଣସି ଚରିତ୍ର ନାହିଁ ଯାହା ଜୀବନର ଏକ ମହାବିଶ୍ୱ ଗଢ଼ିପାରେ । ନୈତିକତା ଅପେକ୍ଷା ମଧ୍ୟମ ଶ୍ରେଣୀ ମୂଲ୍ୟବୋଧ ବେଶି ପରିମାଣରେ ଦେଖାଯାଉଛି । ସଂଗଠନ ମଧ୍ୟ ଦୁର୍ବଳ । କେବଳ ଉଦ୍ଭଟତା କିମ୍ବା ଭଷୋର ଖେଳୁଆଡ଼ ପ୍ରୟୋଗ ପାଠକକୁ ଆକୃଷ୍ଟ କରିପାରିବ ନାହିଁ । ତେଣୁ ଯୁବପିଢ଼ି ବର୍ତ୍ତମାନ ବିନା ଦ୍ୱିଧାରେ ଅନ୍ତରୀକ୍ଷଛୁଆଁ କଳ୍ପନା ଓଡ଼ିଆ ଗଳ୍ପରେ ଆଣିବାଲାଗି ଚେଷ୍ଟାକରିବା ଉଚିତ ହେବ । ମଣିଷର ମାନସରାଜ୍ୟର ନିଗୂଢ଼ ଦ୍ୱନ୍ଦ୍ୱ ଓ ସାର୍ଥକତା, ସଫଳତା ପାଇଁ ଆବଶ୍ୟକୀୟ ଚିତ୍ରକଳ୍ପ ବାଢ଼ିବାକୁ ହେବ । ଆଜିର ଯୁଗରେ ପାଠକ ଯୁକ୍ତିର ସଂଗଠନ ଚାହେଁ, କାରଣ ଜୀବନବାସ୍ତବ କେବଳ ଯୁକ୍ତି ଓ ସାମ୍ବିଧାନିକ ମାନସିକତା ଉପରେ ପ୍ରତିଫଳିତ ଆକାଂକ୍ଷାର ସମାହାର । ଯଦି ପ୍ରବନ୍ଧ ଦିଗରେ ଯୁବପିଢ଼ି ଆଗ୍ରହୀ ହେବ ତେବେ କଠିନ ପରିଶ୍ରମ କରିବାକୁ ପଡ଼ିବ । ବିଶ୍ୱର ବିଭିନ୍ନ ବିଭାବ ସହ ପରିଚୟ ସହିତ ଭାରତୀୟ ଅସ୍ମିତାର ପରିଚୟ ମିଶାଇ ଆଗାମୀ ଜୀବନ – ସାମୁହିକ ଜୀବନ କିମ୍ବା ବ୍ୟକ୍ତି ଉତ୍କର୍ଷରଜୀବନ – ପ୍ରତି ଧ୍ୟାନ ଦେଇ ସୃଷ୍ଟି କରିବାକୁ ହେବ । ସାହିତ୍ୟ କେବଳ କଳ୍ପନାବିଳାସ ନୁହେଁ, କଳ୍ପନା ମଧ୍ୟ ବାସ୍ତବ ଜୀବନ ସହିତ ସମ୍ପର୍କିତ ହେବାକୁ ପଡ଼ିବ । ଆମେ ଲକ୍ଷ୍ୟ କରୁଛେ ଯେ ଆଜି ପର୍ଯ୍ୟନ୍ତ ସାହିତ୍ୟିକମାନେ ରାମାୟଣ, ମହାଭାରତର ଚରିତ୍ରକୁ ନେଇ ଗଳ୍ପ-ଉପନ୍ୟାସ-କବିତା ଲେଖି ଚାଲିଛନ୍ତି । ସେହି ସାହିତ୍ୟ ହିଁ ଲୋକପ୍ରିୟ ହେଉଛି । ଏହାର କାରଣ କ'ଣ ? ଏହାର କାରଣ ହେଲା ଆମେ କେବଳ ଏକ ଅପହଞ୍ଚ ଇଲାକାର ଜ୍ୟୋତି ଓ ଅପାର୍ଥିବ ବିଳାସରେ ମନୋରଞ୍ଜନ ଚାହୁଁ । ରାମ ଓ କୃଷ୍ଣଙ୍କର ବିଭିନ୍ନ କଳ୍ପନା ଏକ ନିର୍ଲିପ୍ତ ଆନନ୍ଦ ଦିଏ ବୋଲି ଆମେ ସେହି ସାହିତ୍ୟକୁ ବାରମ୍ବାର ପଢୁଛୁ । ଟେଲି ସିରିଏଲଗୁଡ଼ିକ ମଧ୍ୟ ସେହି ସବୁ ଉପରେ ଅବାସ୍ତବ ମନୋରଞ୍ଜନ ଦେଉଛନ୍ତି । ଆମେ ଏ ପର୍ଯ୍ୟନ୍ତ ସାଧାରଣ ମଣିଷର ବଡ଼ପଣର ଆଭାସ ଆମ ସାହିତ୍ୟରେ ସୃଷ୍ଟି କରିପାରିନାହୁଁ ।

୪୮୧ କିଲୋମିଟର ସାଗରବେଳା ଆମକୁ ଘେରି ରହିଛି । କିନ୍ତୁ ଆମ ସାଗର ଅନୁଭୂତି ନିହାତି କମ୍ କିମ୍ବା ନାହିଁ କହିଲେ ଚଳେ । ମଣିଷକୁ ମାଟି-ସିମେଣ୍ଟ କୋଠାର ପରିବେଶ ବାହାରକୁ ନେଇ ଅଜଣାର ସନ୍ଧାନ କରିବା ମାନସିକତା କବିତା ସୃଷ୍ଟି କରିପାରିନାହିଁ । ଅତୀତକୁ ଆଦର କରିବା ଅର୍ଥ ଆମର ଭବିଷ୍ୟତ କିମ୍ବା ବର୍ତ୍ତମାନର ଉନ୍ମାଦନା ନାହିଁ । ଜୀବନ ବର୍ତ୍ତମାନର ଏକ ବିଳାସ ଯାହା ଭବିଷ୍ୟତକୁ ମଧ୍ୟ ବର୍ତ୍ତମାନରେ ପରିଣତ କରିପାରେ । ସେପରି କୌଣସି ଚେଷ୍ଟା ଆମ ସାହିତ୍ୟରେ ନାହିଁ ।

- **ଆପଣ ଇଂରାଜୀ ପ୍ରଫେସର ଥିଲେ । ଉଭୟ ଇଂରାଜୀ ଏବଂ ଓଡ଼ିଆରେ କବିତା ଲେଖିବା ସହିତ ପ୍ରବନ୍ଧ, ଗଳ୍ପ ଏବଂ ନାଟକ ମଧ୍ୟ ଲେଖିଛନ୍ତି । ସାହିତ୍ୟର ବିଭିନ୍ନ ବିଭାଗ ମଧ୍ୟରେ କେମିତି ସମନ୍ୱୟ ରଖିଥାନ୍ତି ?**

ପ୍ରଜ୍ଞାଶ୍ରୀ ମିଶ୍ର
ଜଗତସିଂହପୁର୍

ହଁ, ମୁଁ ଇଂରାଜୀ ପ୍ରଫେସର କିନ୍ତୁ ମୋର ଆତ୍ମା ଏକ ମାନବୀୟ ଆତ୍ମା ଯାହା ମୋର ମାତୃଭାଷା, ଭାରତ ତଥା ବିଶ୍ୱର ମଣିଷଗଢ଼ା ଇତିହାସ ଓ ଭାବଚିନ୍ତନରେ ଗଢ଼ା । ମୁଁ ମୋର ଭାଷାକୁ ଭଲପାଏ । ତେଣୁ ଯେଉଁ ଭାଷା ହେଲେ ମଧ୍ୟ ମୁଁ ସେଥିରେ ମଣିଷର ହୃତ୍‌କମ୍ପନ ହିଁ ଶୁଣେ । ଇଂରାଜୀ ଓ ଓଡ଼ିଆରେ ମୋର ସୀମିତ ଯୋଗ୍ୟତା ଭିତରେ ମୁଁ ଲେଖେ ଯାହା ମୋତେ ଭଲ ଲାଗେ ଅର୍ଥାତ୍ ଯାହା ମୋର ମୁହୂର୍ତ୍ତମାନଙ୍କୁ ଜୀବନର ଉନ୍ମାଦନା ଦିଏ । ଏହି ଉନ୍ମାଦନା ହିଁ ଜୀବନ, କାରଣ ଅଳ୍ପଦିନର ବଞ୍ଚିବା ଭିତରେ ଯଦି ମୁଁ ଶତବିଶ୍ୱର ଅନୁଭବ ପାଏ ତାହା ହିଁ ମୋର ସାର୍ଥକତା । ସାହିତ୍ୟର ବିଭାଗୀକରଣ ବୋଲି କିଛି ନାହିଁ । କବିତା ଲେଖିଲାବେଳେ ମୁଁ ଯେତିକି ଆହ୍ଲାଦିତ, ଗଳ୍ପ ଲେଖିଲାବେଳେ ମଧ୍ୟ ସେତିକି ଉନ୍ମାଦିତ । ଯେଉଁ ଶବ୍ଦମାନେ, ଚରିତ୍ର ଓ ଘଟଣାମାନେ ମତେ ବଞ୍ଚିବାର ଆନନ୍ଦ ଦେଇ ଇଚ୍ଛାର ପୃଥିବୀକୁ ପୂର୍ଣ୍ଣତା ଦିଅନ୍ତି ମୁଁ ସେମାନଙ୍କୁ ଭଲ ପାଏ । ସେଥିପାଇଁ ମୋର ଅଜସ୍ର ପ୍ରେମିକା । ପ୍ରତ୍ୟେକ ଶବ୍ଦ ମୋର ପ୍ରିୟା । ପ୍ରତ୍ୟେକ ଜୀବନ ବିବୃତି ମୋର ଅନୁରାଗର ଅନୁଭବ । ତେଣୁ ଯେଉଁ ବିଭାଗ ମତେ ଯେଉଁ ସମୟରେ ମୋର ଇଚ୍ଛାକୁ ମହକାଏ ମୁଁ ସେଇ ବିଭାଗରେ କିଛି ସୃଷ୍ଟି କରିବା ପାଇଁ କଲମ ଧରେ । ସାହିତ୍ୟର ବିଭିନ୍ନ ବିଭାଗ ମଧ୍ୟରେ ସମନ୍ୱୟ କହିଲେ ମୁଁ କିଛି ବୁଝେନାହିଁ । ପ୍ରତ୍ୟେକ ବିଭାଗ ଏକ ମହାସମନ୍ୱୟ ଯାହା ଫୁଲକଣ୍ଟା, ହର୍ଷବିଷାଦ, ହସକାନ୍ଦର ସମନ୍ୱୟ କରେ ଏକ ନିର୍ଦ୍ଦିଷ୍ଟ ଛନ୍ଦରେ । ସମନ୍ୱୟ ଥାଏ ଭା, ଆବେଗ, ଚିନ୍ତା, କଳ୍ପନା ଓ ଔଚିତ୍ୟର ରଙ୍ଗ, ଧ୍ୱନି ଏବଂ ପୁଲକ ଛୁଆଁର ଶତଦଳ ଗଢ଼ିବାରେ । ମୋର କୌଣସି ଦମ୍ଭୋକ୍ତି ନାହିଁ, କାରଣ ମୁଁ ସମ୍ପୂର୍ଣ୍ଣ ସମର୍ପଣ ଭାବ

ନେଇ ଶବ୍ଦକୁ ଶବ୍ଦ ସହିତ ଯୋଡ଼ି କେତେବେଳେ ଗଦ୍ୟଗାମ୍ଭୀର୍ଯ୍ୟ ଗଢ଼େ, କେତେବେଳେ ସଂଳାପ ଗଢ଼େ ବା ଛନ୍ଦ ଗଢ଼େ ଜୀବନର ବ୍ୟାପ୍ତି ଓ ଦୀପ୍ତିର । ମୁଁ ବିଶ୍ୱାସ କରେ ହସ ଓ କାନ୍ଦ ମୁହଁର ଦୁଇଟି ବିକୃତି କେବଳ । ସେଇ ବିକୃତିମାନଙ୍କର ସମନ୍ୱୟ ସବୁଠାରୁ ଆହ୍ୱାନକାରୀ । ଏହି ଆହ୍ୱାନର ପ୍ରତ୍ୟୁତ୍ତର ଲେଖକର ସାମର୍ଥ୍ୟ ଉପରେ ନିର୍ଭର କରେ । କିନ୍ତୁ ଏହି ଆହ୍ୱାନ ହିଁ ଲେଖକକୁ ସବୁବେଳେ ସତର୍କ ରଖେ । ଆହ୍ୱାନ ଓ ସତର୍କତାର ସମନ୍ୱୟ ଲେଖାକୁ ମାର୍ଜିତ କରେ ।

- **କେନ୍ଦ୍ର ସାହିତ୍ୟ ଏକାଡେମି ପୁରସ୍କାର ପାଇଥିବା ଆପଣଙ୍କ ପୁସ୍ତକ 'ଭାରତୀୟ ସଂସ୍କୃତି ଓ ଭଗବଦ୍‌ଗୀତା' ସମ୍ପର୍କରେ କିଛି କହିବେ କି ?**

**ଦେବେନ୍ଦ୍ର କୁମାର ସାହୁ**
ବଳରାମଗଡ଼ି, ବାଲେଶ୍ୱର୍

'ଭାରତୀୟ ସଂସ୍କୃତି ଓ ଭଗବଦ୍‌ଗୀତା' ପୁସ୍ତକ ଭାବେ ପ୍ରକାଶ ପାଇବା ପୂର୍ବରୁ 'ସମ୍ବାଦ' ଖବରକାଗଜ ପୃଷ୍ଠାରେ ପ୍ରାୟ ବର୍ଷେକାଳ ଧରି ପ୍ରକାଶ ପାଇଥିଲା । ଏ ଧାରାବାହିକ ବେଳେ ଅନେକ ପ୍ରଶ୍ନ ଉତ୍‌ଥାପିତ ହୋଇଥିଲା, କାରଣ ଯେ କୌଣସି ବୌଦ୍ଧିକ ଆଲୋଚନା ଯଦି ପାରମ୍ପରିକ ସତ୍ୟଗ୍ରହଣରୁ ଅଲଗା ହୁଏ ଲୋକେ ପ୍ରଶ୍ନ କରନ୍ତି, ଯେମିତି ଆକାଶ କ'ଣ ସଙ୍କେତ କରେ ଯୁକ୍ତି ହେଲାବେଳେ କେତେଜଣ ଆକାଶର ଓଜନ କେତେ ବୋଲି ପ୍ରଶ୍ନ କରନ୍ତି । ଏହି ପୁସ୍ତକ ସାହିତ୍ୟ ଏକାଡେମି ପୁରସ୍କାର ପାଇବାବେଳେ ମଧ୍ୟ ପ୍ରଶ୍ନ ଉଠିଥିଲା ଭଗବଦ୍‌ଗୀତା ବୁଝିବା ପାଇଁ ଆମେ ସେକ୍‌ସପିୟରଙ୍କ ହାମ୍‌ଲେଟ୍ ଆଲୋଚନା ଭିତରେ କାହିଁକି ପଶିବୁ ? ହାମ୍‌ଲେଟ୍ ବିଶ୍ୱସାହିତ୍ୟରେ ଏକ ପ୍ରସିଦ୍ଧ ସୃଷ୍ଟି । ଗୀତାକୁ ମାନ୍ୟତା ମିଳିଥିଲେ ମଧ୍ୟ ଗୀତା, ହାମ୍‌ଲେଟ୍ ପରି ବୌଦ୍ଧିକ ଚର୍ଚ୍ଚାକୁ ଆସିନାହିଁ । ଧର୍ମ ସାହିତ୍ୟ ନାମରେ ଗୀତାକୁ ବିଶ୍ୱବିଦ୍ୟାଳୟ ଚର୍ଚ୍ଚାରୁ ଅଲଗା ରଖାଯାଇଛି । ଯଦି କେନ୍ଦ୍ର ସରକାର ଗୀତାକୁ ଏମ୍.ଏ. କୋର୍ସରେ ରଖିବେ ତେବେ ମୁସଲମାନମାନେ ଓ ଅନ୍ୟମାନେ ପାଟି କରିବେ । କିନ୍ତୁ ବାଇବେଲ୍ ଆମର ଏମ୍.ଏ. ଇଂରାଜୀ କୋର୍ସରେ ଥିଲା । ଗୀତା ରହିବା ଉଚିତ । ଏହାର ପ୍ରତିବନ୍ଧକ କେବଳ ଧର୍ମଜ୍ଞ, ଶାସ୍ତ୍ରଜ୍ଞମାନେ ଯେଉଁମାନେ କୃଷ୍ଣଙ୍କୁ ଭଗବାନ କହନ୍ତି । ମୋର ଯୁକ୍ତି ହେଲା, ଯଦି କୃଷ୍ଣ ଭଗବାନ ଓ ମଣିଷକୁ ସୃଷ୍ଟି କରିଛନ୍ତି, ତେବେ ୧୮ ଦିନର କୁରୁକ୍ଷେତ୍ର ଯୁଦ୍ଧରେ କାହିଁକି ତତ୍କାଳୀନ ଆର୍ଯ୍ୟାବର୍ତ୍ତର ବୀର ପୁରୁଷ, ସ୍ୱାସ୍ଥ୍ୟବାନ୍, ବିଦ୍ୟାବାନ୍ ଯୋଗ୍ୟ ପୁରୁଷମାନଙ୍କୁ ଏକାଠି ମାରିଦେଲେ ? ସୃଷ୍ଟିନାଶ ଈଶ୍ୱରଙ୍କ ଧର୍ମ ନୁହେଁ । କୃଷ୍ଣ ଜଣେ ବିଚକ୍ଷଣ ପୁରୁଷ । ସେ ଏକାଧାରରେ ଧନୁର୍ଦ୍ଧାରୀ (ସନ୍ଦୀପନିଙ୍କ ଶ୍ରେଷ୍ଠ ଶିଷ୍ୟ),

ଦାର୍ଶନିକ, ରାଜନୀତିଜ୍ଞ ଏବଂ ପ୍ରେମିକ ପୁଂଗବ । ଏକ ବିକଳ୍ପ ରାଜନୀତି ପାଇଁ ସେ ସବୁ ରଣନୀତି ପ୍ରସ୍ତୁତ କରି ମଧ୍ୟ ବିଫଳ । ପାପ ବିନାଶନ ନକରି ସେ ପାପୀ ଓ ପୁଣ୍ୟବାନ୍ ସମସ୍ତଙ୍କୁ ଧ୍ୱଂସ କରାଇଛନ୍ତି ରଣଭୂମିରେ । ଏହି ମତ ନିଶ୍ଚୟ ଓଡ଼ିଆ କିମ୍ବା ଭାରତୀୟମାନେ ଗ୍ରହଣ କରିବେ ନାହିଁ । ଯେଉଁମାନେ ଗୀତାକୁ ବେଦ କହନ୍ତି ଏବଂ କୃଷ୍ଣଙ୍କୁ ଧର୍ମ ଓ ଭଗବାନଙ୍କ ସହିତ ଯୋଡ଼ନ୍ତି ସେମାନେ ଗୀତାର କାବ୍ୟିକତା ଓ ସର୍ବକାଳୀନ ଚିନ୍ତାଧାରାକୁ ଅବମାନନା କରନ୍ତି । ଗୀତାରେ କୃଷ୍ଣ, ଅର୍ଜୁନକୁ ବୁଝାଇଛନ୍ତି ବିଭିନ୍ନ ମାର୍ଗ, ସାର୍ଥକ ଜୀବନ ବଞ୍ଚିବା ପାଇଁ; କିନ୍ତୁ ଅର୍ଜୁନର ପ୍ରଶ୍ନର ଉତ୍ତର ସେଠି ନାହିଁ । ଏହିପରି ସ୍ଥିତିବାଦୀ ଦର୍ଶନର ପ୍ରଶ୍ନ କରିଥିଲା ହାମ୍‌ଲେଟ୍ - 'To be or not to be...' । ଏ ପ୍ରଶ୍ନଠାରୁ ଅର୍ଜୁନର ପ୍ରଶ୍ନ ଆହୁରି ଜଟିଳ । ଜ୍ଞାନ, କର୍ମ, ଭକ୍ତି (ପ୍ରେମ)ର ଆଲୋଚନା ପରେ ଅର୍ଜୁନ ବିଶ୍ୱରୂପ ଦେଖିଛି । ବିଶ୍ୱରୂପ ଅର୍ଥାତ୍ ସମଗ୍ର ବିଶ୍ୱର ଚିତ୍ର - ପଶୁପକ୍ଷୀ, ଗ୍ରହତାରା, ଆକାଶ, ପର୍ବତ ସମେତ ପ୍ରକୃତି ଓ ତା'ର ନିୟତ ବଦଳୁଥିବା ରୂପ । ଜୀବନ ମଣିଷ ଓ ବିଶ୍ୱ ମଧ୍ୟରେ ଏକ କର୍ମ-ଜ୍ଞାନ-ପ୍ରେମ ସଂପାତ । କିଏ କିପରି ବଞ୍ଚିବ ନିଜେ ବାଛିନେବାକୁ ହେବ । ସବୁକଥା କହିସାରିବା ପରେ କୃଷ୍ଣ କହିଛନ୍ତି ଯଥେଚ୍ଛସି ତତ୍ କୁରୁ - ତୁମର ଯେପରି ଇଚ୍ଛା ହୁଏ କର । ଏହା ହିଁ ଚରମ ସତ୍ୟ ।

- **ଆଜିକାଲି ଓଡ଼ିଆରେ ମନନଶୀଳ ପ୍ରବନ୍ଧ ତଥା ସାହିତ୍ୟ ସମାଲୋଚନାର ପରିମାଣ କମିଯାଉଥିବାର ଆଲୋଚନା ହେଉଛି । ଏହାର କାରଣ କ'ଣ ?**

**ସଞ୍ଜିତ ମିଶ୍ର**

ରୁଗୁଡ଼ିପଡ଼ା, ବଲାଙ୍ଗୀର୍

ପ୍ରବନ୍ଧ ଲେଖିବା ପାଇଁ ତତ୍ତ୍ୱ ଜ୍ଞାନ ଓ ଲୀଳା ଜ୍ଞାନ ଆବଶ୍ୟକ । ତତ୍ତ୍ୱଜ୍ଞାନ ପାଇଁ ଓଡ଼ିଆ ଭାଷାରେ ଆଲୋଚକଙ୍କ ମୌଳିକତା ନାହିଁ । ଲୀଳା ପୁରୁଷ ବା ବ୍ୟକ୍ତି ହାତଗଣନ୍ତା ମଣିଷ ମଧ୍ୟ ଏ ମାଟିରେ ନାହାନ୍ତି । ପ୍ରାବନ୍ଧିକ ଏକ ଚିନ୍ତାଶୀଳ ଦାର୍ଶନିକ ହେବା ଦରକାର । ବିଶ୍ୱର ସଂଗଠନ, ପ୍ରକୃତିର ଭୌଗୋଳିକ ଓ ଆଧ୍ୟାତ୍ମିକ ପରିସୀମା, ପଣ୍ଡିତମାନଙ୍କର ସାଧନାର ନିଷ୍କର୍ଷ ସହିତ ଇତିହାସର ବିବର୍ତ୍ତନରେ ଚିନ୍ତା ଓ ଧାରଣାର ପରିବର୍ତ୍ତନ ନ ଜାଣିଲେ କୌଣସି ପ୍ରାବନ୍ଧିକ ଉଚ୍ଚକୋଟୀର ପ୍ରବନ୍ଧ ଲେଖିପାରିବ ନାହିଁ । କୁହାଯାଇଛି ସତ୍ୟ ଏକ, ପଣ୍ଡିମାନେ ବିବିଧ ଭାବେ ତା'ର ତର୍ଜମା କରନ୍ତି - ସେହି ସତ୍ୟର ଚଳନ୍ତିକାର ଚର୍ଯ୍ୟା କରିବାକୁ ହେବ । ସେଥିପାଇଁ ପ୍ରାବନ୍ଧିକ ହେଉ କିମ୍ବା କବି ହେଉ ଏକ ସନ୍ଧାନୀ ଆତ୍ମା ହେବାକୁ ପଡ଼ିବ । ବିଗତ କାଲିର 'ସତ୍ୟ' ଓ ଆଗାମୀ କାଲିର 'ସତ୍ୟ' ମଧ୍ୟରେ ଉପସ୍ଥିତ

ବର୍ତ୍ତମାନର ସେତୁ ବାନ୍ଧିବାକୁ ହେବ । ଉଭୟ କାଲି, ଗତ ଓ ଅନାଗତ କେବଳ ଆଜିରେ ହିଁ ଉପଲବ୍ଧ । ଏହି ଉପଲବ୍ଧିର କୌଣସି ନିର୍ଦ୍ଦିଷ୍ଟ ଆକାର, ରଙ୍ଗ କିମ୍ବା ଗନ୍ଧ, ସ୍ପର୍ଶ ନାହିଁ । ଯାହା ଅଛି ତାକୁ ଆବିଷ୍କାର କରିବାକୁ ହେବ । ସ୍ମୃତିକୁ ନେଇ ସ୍ୱପ୍ନ ଗଢ଼ିବାକୁ ହେବ । ଏହା ସମ୍ଭବ ଯଦି ସ୍ମୃତିର ଧାରଣା ସ୍ପଷ୍ଟ ଏବଂ ସ୍ୱପ୍ନର ସ୍ୱରୂପ ଇନ୍ଦ୍ରିୟଗ୍ରହୀ – ମନ ଇନ୍ଦ୍ରିୟର ଉପଲବ୍ଧିକୁ ଯଦି ଆତ୍ମାର ଉପଲବ୍ଧି କରାଯାଇପାରେ ପ୍ରବନ୍ଧ ସୃଷ୍ଟି ହୋଇପାରିବ । ଦୃଷ୍ଟି ଯଦି ପ୍ରଖର ଦର୍ଶନ ତୀକ୍ଷ୍ଣ । ତେଣୁ ମନ, ବିବେକ ଓ ଚେତନାକୁ ନେଇ ଅନୁଭୂତି (ବ୍ୟକ୍ତିର ଓ ବିଶ୍ୱର) ପରୀକ୍ଷା କରି ଭାଷାରେ ତାକୁ ଔଚିତ୍ୟର ରୂପ ଦେବାକୁ ହେବ । ଓଡ଼ିଆ ଭାଷା ଏ ପର୍ଯ୍ୟନ୍ତ ସେହି ତୀକ୍ଷ୍ଣ, ସ୍ପଷ୍ଟ, ପରୀକ୍ଷିତ ଦର୍ଶନ ପ୍ରବନ୍ଧ ସାହିତ୍ୟରେ ପାଇଛି ବୋଲି ମନେହୁଏ ନାହିଁ ।

ଆଉ ସମାଲୋଚନା ପାଇଁ ମୌଳିକ କୃତିର ବହୁଳତା ଆବଶ୍ୟକ । ଏରିଷ୍ଟୋଟଲ୍ ଯଦି ପୋଏଟିକ୍ସ ଲେଖିଲେ ତାଙ୍କ ପାଇଁ ସମସାମୟିକ ସାହିତ୍ୟ ଓ ଦର୍ଶନ ସେହି ତୁଙ୍ଗିମାର ସମ୍ଭାର ବାଢ଼ିଥିଲା । ଗୋଟିଏ ପରେ ସକ୍ରେଟିସ୍, ପ୍ଲେଟୋ ଓ ଅନ୍ୟ ଦିଗରେ ଥିଲେ ଇସ୍କିଲସ୍, ସଫୋକ୍ଲିସ୍, ଇଉରିପିଡ଼ିସ୍ ଓ ତାଙ୍କ ପୂର୍ବରୁ ହୋମର୍ । ଆମର ସାହିତ୍ୟର ଉପଲବ୍ଧି ଓ ଦର୍ଶନର ମୌଳିକତାକୁ ନେଇ ସମାଲୋଚନା ସାହିତ୍ୟ ଲେଖାଯାଉଛି । ଯଦି ମୌଳିକ ସାହିତ୍ୟ ବ୍ୟାପକ ପରିପକ୍ୱତାରେ ସମୃଦ୍ଧ ତେବେ ସମାଲୋଚନା ମଧ୍ୟ ସମପରିମାଣରେ ସାହିତ୍ୟରେ ମଣିଷର ବଡ଼ପଣ ମାପି ପାରିବ । ସମାଲୋଚନା କବିର ଦୃଷ୍ଟି, ଦର୍ଶନ, ଛନ୍ଦବୋଧ ଓ ଚିତ୍ରକଳ୍ପକୁ ନେଇ ପରୀକ୍ଷା କରି ମଣିଷ କେଉଁ ନକ୍ଷତ୍ର ପାଖରେ ପହଞ୍ଚିଛି ଦେଖାଏ । ମୋର 'ନିଦାଘରେ କବି' ପୁସ୍ତକରେ ମୁଁ କେତେକ ମୌଳିକ ସ୍ରଷ୍ଟାଙ୍କ ପରୀକ୍ଷା କରିଛି । କିନ୍ତୁ ଆମେ ସେଇ ସାରଳା ଦାସ, ଜଗନ୍ନାଥ ଦାସଙ୍କୁ ହିଁ ବାରମ୍ବାର ଦେଖୁ ଯେହେତୁ ସେଇଠି ତୁଙ୍ଗିମାର ବିଭିନ୍ନ ଶିଖର ରହିଛି । ସେହିପରି ତୁଙ୍ଗ ଶିଖର ଉପଲବ୍ଧ ହେଲେ ତୋରଣମାନଙ୍କୁ ଅତିକ୍ରମ କରି ସେହି ଶିଖରର ଉଚ୍ଚତା, ଜ୍ୟୋତି, ଗଠନ ଶୈଳୀ ପରଖିବା ପାଇଁ ଯୁବ ଲେଖକାନେ ନିଶ୍ଚୟ ଆଗେଇ ଆସିବେ ।



# ସୂଚୀ


| କ୍ର.ନ. | ବିଷୟ | ଲେଖକ | ପୃଷ୍ଠା |
|---|---|---|---|
| ୧. | ସୁନ୍ଦର ମିଛର ବିଭୋର କବି | ପ୍ରତିଭା ରାୟ | ୩୧ |
| ୨. | ବ୍ଲୁ ହରିକେନ୍ | ହର ପ୍ରସାଦ ଦାସ | ୩୯ |
| ୩. | ଜୀବେତ୍ ଶରଦଃ ଶତମ୍ | ଫନୀ ମହାଂତି | ୪୬ |
| ୪. | ଡଃ ପ୍ରଫୁଲ୍ଲ କୁମାର ମହାନ୍ତିଙ୍କୁ ଅଶୀ ଛୁଇଁଲା | ଶାନ୍ତନୁ କୁମାର ଆଚାର୍ଯ୍ୟ | ୪୮ |
| ୫. | ଅଶୀବର୍ଷକୁ ଅସ୍ୱୀକାର | ଶରତ ଚନ୍ଦ୍ର ଶତପଥୀ | ୫୩ |
| ୬. | ସୃଜନକଳାର ଅନନ୍ୟ ଜୀବନଶିଳ୍ପୀ | ଅର୍ଚ୍ଚନା ନାୟକ | ୫୯ |
| ୭. | ମଝି ଆକାଶର ପକ୍ଷୀ | ହରପ୍ରସାଦ ପରିଚ୍ଛା ପଟନାୟକ | ୭୧ |
| ୮. | ଭାରତୀୟ ସଂସ୍କୃତି ଓ ଭଗବତ୍‌ଗୀତା ଏକ ସମାଲୋଚନାତ୍ମକ ବିଚାର | ନିତ୍ୟାନନ୍ଦ ଶତପଥୀ | ୭୬ |
| ୯. | ପ୍ରତିକୂଳ ପରିସ୍ଥିତିର ଅନୁକୂଳ-ନାୟକ : କବି ପ୍ରଫେସର ମହାନ୍ତି | ବାଉରିବନ୍ଧୁ ସାହୁ | ୮୬ |
| ୧୦. | 'ନିଦାଘରେ କବି' ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି | ସଂଘମିତ୍ରା ମିଶ୍ର | ୮୯ |
| ୧୧. | ଯଶସ୍ୱୀ ଲେଖକ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି | ବାଉରୀବନ୍ଧୁ କର | ୯୭ |
| ୧୨. | ପ୍ରଣମ୍ୟ ପ୍ରଜ୍ଞାପୁରୁଷ:ପ୍ରଫୁଲ୍ଲ କୁମାର | ଇଂ ପ୍ରଭାକର ସ୍ୱାଇଁ | ୧୦୧ |
| ୧୩. | ଓଡ଼ିଆ ସାହିତ୍ୟଜଗତର ଅନନ୍ୟପ୍ରତିଭା ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି | ପ୍ରଦୀପ କୁମାର ଚୌଧୁରୀ | ୧୦୬ |
| ୧୪. | ପ୍ରଫୁଲ୍ଲ ମହାନ୍ତିଙ୍କ ନାଟ୍ୟସ୍ୱର | ପ୍ରଫେସର ନାରାୟଣ ସାହୁ | ୧୦୯ |
| ୧୫. | ବହୁମୁଖୀ ପ୍ରତିଭାର ଅନନ୍ୟ ବ୍ୟକ୍ତିତ୍ୱ | ହରିଶ୍ଚନ୍ଦ୍ର ବେହେରା | ୧୧୬ |
| ୧୬. | ଅଧ୍ୟାପନା ଓ ସୃଜନର ପ୍ରଶସ୍ତ ପ୍ରକାଶ | ମୃତ୍ୟୁଞ୍ଜୟ ରଥ | ୧୨୧ |
| ୧୭. | ଗୋପବନ୍ଧୁଙ୍କ ସତ୍ୟବାଦୀରେ ପ୍ରଫେସର ମହାନ୍ତିଙ୍କ ସ୍ୱର୍ଣ୍ଣ ତ୍ରିଭୁଜ | ପ୍ରଶାନ୍ତ ମହାନ୍ତି | ୧୨୫ |
| ୧୮. | ପ୍ରଫୁଲ୍ଲ ସୃଷ୍ଟି ମାଳିକା | ତରୁଣକାନ୍ତି ମହାନ୍ତି | ୧୩୯ |

| କ୍ର.ନ. | ବିଷୟ | ଲେଖକ | ପୃଷ୍ଠା |
|---|---|---|---|
| ୧୯. | ମୁଁ ତାଙ୍କୁ ଯେପରି ଜାଣେ | ହୃଷୀକେଶ ମଲ୍ଲିକ | ୧୪୧ |
| ୨୦. | ମାନବପ୍ରେମୀ ସାରସ୍ୱତ ସାଧକ | ଉପେନ୍ଦ୍ର ପ୍ରସାଦ ନାୟକ | ୧୪୫ |
| ୨୧. | ସାମ୍ବାଦିକ ଡକ୍ଟର ପ୍ରଫୁଲ୍ଲ ମହାନ୍ତି | ସୁଭାଷ ଶତପଥୀ | ୧୫୧ |
| ୨୨. | Prafulla Sir: The Living Legend | Suman Mahapatra | ୧୫୭ |
| ୨୩. | A Guardian Angel | Ram Narayan Panda | ୧୬୫ |
| ୨୪. | Reverence to My Teacher | E. Raja Rao | ୧୬୮ |
| ୨୫. | Dr. P. K. Mohanty | K. Jagannadha Rao | ୧୯୧ |
| ୨୬. | My Professor - PKM | Sabita Sahu | ୧୯୩ |
| ୨୭. | Many Selves: Professor Prafulla Kumar Mohanty | Amulya Ki. Purohit | ୧୯୮ |
| ୨୮. | Prof. Prafulla Kumar Mohanty : The Journey of a Legend | Kamala Pr. Mahapatra | ୨୦୦ |
| ୨୯. | As I Know Prof. Prafulla Kumar Mohanty | G. K. Das | ୨୦୭ |
| ୩୦. | My Impressions on Prof. P. K. Mohanty | Suben Chatterjee | ୨୧୦ |
| ୩୧. | A Tribute | Satakadi Hota | ୨୧୨ |
| ୩୨. | Aja's 80th Birthday | Luci & Abhishek | ୨୧୪ |
| ୩୩. | My Aja | Asmita | ୨୧୬ |
| ୩୪. | My Dear Aja | Sritam Mohanty | ୨୧୮ |
| ୩୫. | My Jeje | Shakha | ୨୨୦ |
| ୩୬. | My Father | Pradyumna (Munna) | ୨୨୩ |








ପ୍ରଫୁଲ୍ଲ ମହାନ୍ତି ପତ୍ନୀ ପ୍ରମୋଦିନୀଙ୍କ ସହିତ





କେନ୍ଦ୍ର ଏକାଦେମୀ ପୁରସ୍କାର
ଗ୍ରହଣ ଉତ୍ସବରେ



ପ୍ରଫୁଲ୍ଲ ମହାନ୍ତିଙ୍କ ପୁତ୍ର ଓ ପୁତ୍ରବଧୂ



ସଂପୂର୍ଣ୍ଣ ପରିବାର



ନାତୁଣୀ ଶାଖା ସହ ପୁତ୍ର ଓ ପୁତ୍ରବଧୂ



ନାତି, ନାତୁଣୀ ଅନ୍ୟମାନେ



ବଡ଼ ଝିଅ ଶ୍ୟାମଳୀ (ଛନ୍ଦା) ଜ୍ୱାଇଁ ସତୀନାଥ, ଲୁସି, ଲିଟୁ ଓ ଅଭିଷେକ୍



ସାନ ଝିଅ ସର୍ମିଳୀ ଓ ଜ୍ୱାଇଁ ତରୁଣ ମହାନ୍ତି

# ସୁନ୍ଦର ମିଛର ବିଭୋର କବି

ପ୍ରତିଭା ରାୟ

"ଗାଇବି ନିରୋଳ ଛନ୍ଦେ ଅକପଟ ନିର୍ମଳ ଭାଷାରେ
କିଏ ବୁଝୁ ନ ବୁଝୁ ଶୁଣୁ ନ ଶୁଣୁ ଅମାନିଆ ପକ୍ଷୀ ପରି
ବନ ପ୍ରାନ୍ତର, ମନ୍ଦିର ଚୂଡ଼ା ଆକାଶର ନୀଳିମାରେ
ଛାଡ଼ିଯିବି ପବନରେ ଶବ୍ଦର ଅନୁରାଗ

ମିଳେଇଯିବା ଯାକେ ଶେଷ ନିଃଶ୍ୱାସରେ" (ଶୂନ୍ୟର ବ୍ୟାସ, ପୃ-୨୨, କବି ପ୍ରଫୁଲ୍ଲ କୁମାର ମହାନ୍ତି)

ସେ ଶବ୍ଦରେ ଗଢ଼ନ୍ତି ସାହିତ୍ୟ, ଶବ୍ଦରେ ଦେଖନ୍ତି ସ୍ୱପ୍ନ, ଅମାନିଆ ପକ୍ଷୀ ପରି ଶବ୍ଦରେ ରଚନ୍ତି, ଗାଆନ୍ତି, ଶୁଣନ୍ତି ସଂଗୀତ, ଶବ୍ଦରେ ସୃଷ୍ଟି କରନ୍ତି ଚିତ୍ରକଳା, ଦର୍ଶନ, ମନସ୍ତତ୍ତ୍ୱ । ଶବ୍ଦରେ ଲିପିବଦ୍ଧ କରନ୍ତି ଇତିହାସ, ପରମ୍ପରା, ଧର୍ମଧାରଣା । ଶବ୍ଦର ବେଦିରେ ପ୍ରତିଷ୍ଠା କରନ୍ତି ମାନବସଭ୍ୟତାର ମହିମା । ଶବ୍ଦର ଓଁକାର ଧ୍ୱନିରେ ଝଙ୍କୃତ କରନ୍ତି ବିଶ୍ୱସଂସ୍କୃତି । ଶବ୍ଦରେ ଜନ୍ମ ଦିଅନ୍ତି ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ ନକ୍ଷତ୍ର, ଦେବଦେବୀ ଏବଂ ଅବଶେଷରେ ଈଶ୍ୱରଙ୍କୁ । ଘୋଷଣା କରନ୍ତି ଶବ୍ଦର ଅନୁରାଗକୁ ଛାଡ଼ିଯିବା ପାଇଁ ଶେଷ ନିଃଶ୍ୱାସରେ ।

ଆମ ସମୟର ଶବ୍ଦାନୁରାଗୀ, ବିବିଧ ପ୍ରତିଭାର ଅଧିକାରୀ ବିରଳ ସାହିତ୍ୟକାର, ବରେଣ୍ୟ ପ୍ରଫୁଲ୍ଲ କୁମାର ମହାନ୍ତି ଶବ୍ଦ ବିନା କ'ଣ କରିଥାନ୍ତେ ? ତାଙ୍କୁ ଆମେ ସାହିତ୍ୟର କେଉଁ ବିଭାବର ଶବ୍ଦବିନ୍ଧାଣୀ ବୋଲି କହିବା ? କାରଣ ସେ ଏକାଧାରରେ ନାଟ୍ୟକାର, କବି, ଗୀତିକାର, ଗଳ୍ପକାର, ଔପନ୍ୟାସିକ, ସଂଗୀତଶିଳ୍ପୀ, ଅଭିନେତା, ଅନନ୍ୟ ପ୍ରାବନ୍ଧିକ ଓ ସୁସମାଲୋଚକ ତଥା ବାଗ୍ମୀ, ବିଦଗ୍ଧପାଠକ ଓ ଓଡ଼ିଆ ଭାଷାରୁ ଇଂରାଜୀ ଭାଷାକୁ ରୂପାନ୍ତର କରୁଥିବା ଶକ୍ତିଶାଳୀ ଅନୁବାଦକ ।

ଏହି ଯୋଗଜନ୍ମା ଲେଖକଙ୍କର ବ୍ୟାପକ ଅନୁଭବ, ଗଭୀର ଚେତନାବୋଧ, ବୌଦ୍ଧିକ କବିସତ୍ତା, ତୀକ୍ଷ୍ଣ ଅନ୍ତର୍ଦୃଷ୍ଟି ଏବଂ ଦୀର୍ଘ ଜୀବନର ବିଶାଳ ପରିସର ଭାରତୀୟ ସାହିତ୍ୟରେ ଓଡ଼ିଆ ସାହିତ୍ୟ ପରମ୍ପରାକୁ ଯେଉଁ ସ୍ୱତନ୍ତ୍ର ମର୍ଯ୍ୟାଦା ଦେଇପାରିଛି ତାହା ନିଃସନ୍ଦେହରେ ପ୍ରଶଂସନୀୟ । ବିବିଧ ପ୍ରତିଭାର ଅଧିକାରୀ ଏହି ବାଗ୍ମୀ କବି ମଣିଷଟି ଏକ୍‌ବାରେ ନିଆରା ସ୍ରଷ୍ଟା ରୂପେ ସର୍ବଜନସ୍ୱୀକୃତ ହେବାର ଆଉ ଏକ କାରଣ ଅଛି । ଚେତନା ସ୍ତରରେ ସେ ଏକାଧାରରେ ସହାନୁଭୂତିଶୀଳ ଏବଂ ନିର୍ଭୀକ। ତାଙ୍କର ସୃଷ୍ଟିସମ୍ଭାରରେ କ୍ରାନ୍ତିକାରୀ ଶିଳ୍ପକଳା ଓ ବୈପ୍ଳବିକ ଚିନ୍ତାଧାରାର ପ୍ରତୀକାତ୍ମକ ରୂପାୟନ ତାଙ୍କୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରେ ।

କବିଙ୍କ ଅନୁଭବୀ ମନ ଜାଣେ ଜୀବନ ଗଣିତ ନୁହେଁ - ସାହିତ୍ୟ। ତେଣୁ ଜୀବିକା ତାଙ୍କ ବଞ୍ଚିବାର ପ୍ରେରଣା ନୁହେଁ ସାହିତ୍ୟ ହେଉଛି ତାଙ୍କର ଜୀଇଁବାର ପ୍ରେରଣା। ସେ ପ୍ରଶ୍ୱାସରେ ସାହିତ୍ୟ ଗ୍ରହଣ କରନ୍ତି ଓ ନିଃଶ୍ୱାସରେ ସାହିତ୍ୟ ବିତରଣ କରନ୍ତି । ଜୀବନ ଓ ସାହିତ୍ୟ ଦୁଇଟିଯାକ ତାଙ୍କ ପାଇଁ ପରସ୍ପରର ପରିପୂରକ ଓ ଏକାର୍ଥବୋଧକ ଶବ୍ଦ।

ମାଟିରେ ପାଦ ଥାପି ଧୂଳି ଧୂସରିତ ପାଦରେ ଅମଡ଼ା ମାଡ଼ି ଆକାଶରୁ ସ୍ୱପ୍ନ ତୋଳୁଥିବା ଏହି ଲେଖକଙ୍କର ଚେତନାରୁ ସାହିତ୍ୟର ଜନ୍ମ, ପୁଣି ସାହିତ୍ୟ ହିଁ ତାଙ୍କ ଚେତନାର ଋବିକାଠି । ତାଙ୍କ ପାଇଁ ସାହିତ୍ୟ ଯାବତ୍ ବନ୍ଧନ ଓ ପ୍ରାଚୀରକୁ ଭାଙ୍ଗିଦିଏ, ନିର୍ମାଣ କରେ ଅଭଙ୍ଗ ସେତୁ । ଦିଗଭ୍ରଷ୍ଟ ପଥିକର ଦିଗ ନିର୍ଣ୍ଣାୟକ ହୋଇ ଋଲିଥାଏ ତାଙ୍କ ସହ ସାହିତ୍ୟ । ତାଙ୍କ ପଥଭ୍ରାନ୍ତ ଭାବୁକତାର ପଥପ୍ରଦର୍ଶକ ହୁଏ ସାହିତ୍ୟ । ସାହିତ୍ୟ ତାଙ୍କ ପାଇଁ ମରୁଭୂମିର ମରୁଦ୍ୟାନ ଓ ନିରାଶାରେ ଆଶାର ଆଲୋକବର୍ତ୍ତିକା । ସାହିତ୍ୟର ପ୍ରତ୍ୟେକ ବିଭାବରେ ଗୋଟି ଗୋଟି ଶବ୍ଦ ଖଞ୍ଜୁଥିବାବେଳେ ବିଚ୍ଛୁରିତ ହୁଏ ମାନବିକତାର ଉତ୍ତୁଙ୍ଗ ଉଚ୍ଚାରଣ । ସାହିତ୍ୟ ହେଉଛି ତାଙ୍କ ପାଇଁ ପ୍ରେମ ଓ ମୈତ୍ରୀର ଓଁକାର ଧ୍ୱନି । ସାହିତ୍ୟ ବିଷାଦ ମେରୁର ରହସ୍ୟମୟ ମେରୁଜ୍ୟୋତି । ସାହିତ୍ୟ କେତେବେଳେ ସ୍ନିଗ୍ଧ ମଧୁର ବଂଶୀସ୍ୱନ ତ କେତେବେଳେ ରଣହୁଙ୍କାର । ସାହିତ୍ୟ, ଇତିହାସ, ଭୂଗୋଳ, ବିଜ୍ଞାନ, ଦର୍ଶନ ଆଉ ଆଧ୍ୟାତ୍ମିକତାର ପବିତ୍ର ପ୍ରସାଦ ହେଉଛି ତାଙ୍କ ସୃଷ୍ଟିସମ୍ଭାରର ନିର୍ଯ୍ୟାସ । ତେଣୁ ତାଙ୍କ ରଚନାରେ ସାହିତ୍ୟ କାଳ ଓ କାଳାତୀତର ଯୁଗଳବନ୍ଦୀ ।

ଏତେ ସବୁ ବିଭାବ ଭିତରେ କେତେବେଳେ କବି ମଣିଷଟି ନିଃସଙ୍ଗ ତ କେତେବେଳେ ମଣିଷ କବିଟି ନିଃସଙ୍ଗ। ରଚନାଧର୍ମିତାର ସମଗ୍ରତା ଭିତରେ ବ୍ୟକ୍ତି ଜୀବନର ବିଫଳତା, ନିଃସଙ୍ଗତା, କବି ମଣିଷ ଓ ମଣିଷ କବିକୁ ଏକ କରିଦିଏ। ତେଣୁ ସେ କବିତାରୁ ବି ଖୋଜନ୍ତି ଶୂନ୍ୟର ବ୍ୟାସ ଓ ପରିଧି ଭିତରେ ଖୋଜନ୍ତି ଶୂନ୍ୟତାର ପୂର୍ଣ୍ଣତାକୁ। ଶୂନ୍ୟର ବ୍ୟାସ ଖୋଜିବାବେଳେ ସେ ବ୍ୟାସ ଭିତରେ ଆବିଷ୍କାର କରନ୍ତି ଅଜସ୍ର ଶୂନ୍ୟକୁ ।

ଆମ ସାହିତ୍ୟରେ ସବୁ ବିଭାଗରେ ପ୍ରତିଭାବାନ୍ କବି, ଲେଖକଙ୍କର ଅଜସ୍ର ସୃଷ୍ଟି ଅଛି । କିନ୍ତୁ ଏକଥା ସମସ୍ତେ ସ୍ୱୀକାର କରିବେ ଯେ, ଓଡ଼ିଆ ସାହିତ୍ୟରେ ଉଚ୍ଚାଙ୍ଗ ସମାଲୋଚନା ଓ ମୌଳିକ ପ୍ରବନ୍ଧର ଘୋର ଅଭାବ ରହିଛି । ସେହି ଦୃଷ୍ଟିରୁ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି ଓଡ଼ିଆ ସାହିତ୍ୟର ଇତିହାସରେ ଏକ ସ୍ୱତନ୍ତ୍ର ସ୍ଥାନରେ ଅମ୍ଳାନ ସ୍ୱାକ୍ଷର ହୋଇ ରହିବେ । ତାଙ୍କର ମୌଳିକ ପ୍ରବନ୍ଧ "ଭାରତୀୟ ସଂସ୍କୃତି ଓ ଭଗବଦ୍ ଗୀତା" ହେଉଛି ଏକ ଅନନ୍ୟ କୃତି । ସେ ଏହି ପୁସ୍ତକ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ହୋଇଛନ୍ତି । ପ୍ରବନ୍ଧ ପୁସ୍ତକ କ୍ୱଚିତ୍ ସାହିତ୍ୟ ପୁରସ୍କାର ପାଇଥାଏ । ସେହି ଦୃଷ୍ଟିରୁ ପ୍ରଫୁଲ୍ଲ କୁମାର ମହାନ୍ତି ଭାରତୀୟ ସାହିତ୍ୟରେ ଓଡ଼ିଆ ସାହିତ୍ୟର ମର୍ଯ୍ୟାଦା ବୃଦ୍ଧି କରିଛନ୍ତି । କେବଳ ସାହିତ୍ୟର ପରିଧି ଭିତରେ ତାଙ୍କ ପ୍ରତିଭାର ଆକଳନ କରାଗଲେ ତାହା ତାଙ୍କ ବ୍ୟକ୍ତିତ୍ୱର ସମ୍ପୂର୍ଣ୍ଣ ଚିତ୍ର ପ୍ରଦାନ କରିବ ନାହିଁ ।

ପ୍ରଫେସର ମହାନ୍ତି ଇଂରାଜୀ ବିଭାଗର ଜଣେ ଛାତ୍ରପ୍ରିୟ ଓ ବିଚକ୍ଷଣ ଶିକ୍ଷକ । ସେତିକି ମଧ ତାଙ୍କର ସମଗ୍ର ପରିଚୟ ନୁହେଁ । ସେ ଜଣେ ଦକ୍ଷ ଶିକ୍ଷାବିତ୍, ପ୍ରଶାସକ । ସେ ରେଭେନ୍ସା କଲେଜର ଅଧ୍ୟକ୍ଷ ଭାବରେ ନିଜର ଉଜ୍ଜ୍ୱଳ ସ୍ୱାକ୍ଷର ରଖିଛନ୍ତି । ବ୍ରହ୍ମପୁର ୟୁନିଭରସିଟି, ଖଲ୍ଲିକୋଟ କଲେଜରେ ମଧ ସେ ଅଧ୍ୟାପକ ଓ ଅଧ୍ୟକ୍ଷ ରହିଛନ୍ତି । ଆମେରିକାନ୍ ସାହିତ୍ୟ ଉପରେ ଗବେଷଣା କରି ସେ ଡକ୍ଟରେଟ୍ ଲାଭ କରିଥିଲେ ମଧ୍ୟ ଭାରତୀୟ ଦର୍ଶନ ଉପରେ ତାଙ୍କର ଗଭୀର ଅଧ୍ୟୟନ ରହିଛି । ଅନେକ ତାଙ୍କୁ ପାଶ୍ଚାତ୍ୟବାଦୀ ଚିନ୍ତାଧାରାର ଲେଖକ ବୋଲି କହିଲେ ମଧ୍ୟ ପ୍ରାଚ୍ୟ ସାହିତ୍ୟକୁ ସେ ଯେଭଳି ଭାବରେ ମହିମାମଣ୍ଡିତ କରିଛନ୍ତି, ତାହା କ୍ୱଚିତ୍ ସାହିତ୍ୟିକ କରିଛନ୍ତି । ସାରଳା ମହାଭାରତର ଇଂରାଜୀ ଅନୁବାଦ କରିବା ଏତେ ସହଜସାଧ ବ୍ୟାପାର ନୁହେଁ । କିନ୍ତୁ ପ୍ରଫେସର ମହାନ୍ତିଙ୍କର ଚମତ୍କାର ଇଂରାଜୀ ଅନୁବାଦ ଦ୍ୱାରା ଆଜି ସାରଳା

ସାହିତ୍ୟ ବିଶ୍ୱଦରବାରରେ ଗୃହୀତ ଓ ଆଦୃତ । ସେ ସମ୍ବାଦପତ୍ରରେ ଜଣେ ସ୍ତମ୍ଭକାର ଓ ସାପ୍ତାହିକ ଦୈନିକ 'ସମୟ'ର ମଧ୍ୟ ସହସଂପାଦକ ଥିଲେ । ପ୍ରେସ୍ କାଉନସିଲ୍ ଅଫ୍ ଇଣ୍ଡିଆର ସଦସ୍ୟ ପଦ ମଣ୍ଡନ କରିଥିବା ସହ ସେ ଅନେକ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନର ସଭ୍ୟପଦ ମଣ୍ଡନ କରି ନିଜର ଦକ୍ଷତା ପ୍ରମାଣ କରିଛନ୍ତି । ତାଙ୍କ ଦିଗ୍‌ଦର୍ଶନରେ ଅନେକ ଛାତ୍ର ଗବେଷଣା କରି ଡକ୍ଟରେଟ୍ ଉପାଧି ଲାଭ କରିଛନ୍ତି । କେବଳ ଓଡ଼ିଶା ଭିତରେ ନୁହେଁ ଓଡ଼ିଶା ବାହାରେ ମଧ୍ୟ ଶିକ୍ଷାବିତ୍ ଭାବରେ ସେ ଉଜ୍ଜ୍ୱଳ ସ୍ୱାକ୍ଷର ରଖିଛନ୍ତି । ଗୌହାଟି ୟୁନିଭରସିଟି, ଯାଦବପୁର ୟୁନିଭରସିଟି, ମଦୁରାଇ ୟୁନିଭରସିଟି, ବିଶ୍ୱଭାରତୀ ଶାନ୍ତିନିକେତନ ଏବଂ ଅନେକ ସାଂସ୍କୃତିକ ଅନୁଷ୍ଠାନରେ ସେ ତିନିଶହରୁ ଊର୍ଦ୍ଧ୍ୱ ବକ୍ତବ୍ୟ ପ୍ରଦାନ କରି ବିଦଗ୍ଧ ଶ୍ରୋତାମାନଙ୍କୁ ଚମତ୍କୃତ କରିଛନ୍ତି ।

ଶିକ୍ଷା କ୍ଷେତ୍ରରେ ତାଙ୍କ ପ୍ରଶାସନିକ ଦକ୍ଷତା ଓ ଦିଗ୍‌ଦର୍ଶନର ପ୍ରତ୍ୟକ୍ଷ ଅନୁଭୂତି ଏହି ଲେଖିକାର ଅଛି । ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟକ୍ଷ ପଦରେ ଥିବାବେଳେ ଏହି ଲେଖିକା ପ୍ରାଧ୍ୟାପିକା ଥିଲା । ଯଦିଓ ସତୀର୍ଥ ଭାବରେ ସେ ଏହି ଲେଖିକାର ବିଦଗ୍ଧ ପାଠକ ଓ ସମାଲୋଚକ ଥିଲେ ସେଥିପାଇଁ ଅଧ୍ୟକ୍ଷ ଭାବରେ କୌଣସି କୋହଳ ନୀତି ଅବଲମ୍ବନ କରୁନଥିଲେ । ଛାତ୍ରମାନଙ୍କୁ ଶୃଙ୍ଖଳିତ କରିବା ପାଇଁ ଏବଂ କଲେଜ୍‌ର ନାନାବିଧ ଉନ୍ନତିକର କାର୍ଯ୍ୟ ପାଇଁ ଯେଉଁ କମିଟି ସବୁ ଗଠନ କରିଥିଲେ, ସେଥିରେ ଏହି ଲେଖିକା ଭଳି କେତେଜଣଙ୍କୁ ପ୍ରାୟ ସବୁ କମିଟିରେ ରଖିଥିଲେ, ଯାହାଫଳରେ ସେ ନିଜେ ତ କଲେଜରେ ସବୁ ସମୟ ଦେଉଥିଲେ ଏବଂ ଅନ୍ୟମାନଙ୍କୁ ମଧ୍ୟ କାର୍ଯ୍ୟ ଉପରେ ରଖୁଥିଲେ । ଅଧ୍ୟକ୍ଷ ଭାବରେ ସହକର୍ମୀମାନଙ୍କ ସହ ବନ୍ଧୁତାପୂର୍ଣ୍ଣ ବ୍ୟବହାର ସତ୍ତ୍ୱେ ସମୟାନୁବର୍ତ୍ତିତା ଏବଂ ଶିକ୍ଷାଦାନର ଗୁଣାତ୍ମକ ମାନ ରକ୍ଷା ଦିଗରେ ସାମାନ୍ୟ ବ୍ୟତିକ୍ରମ ଦେଖିଲେ ସେ କଠୋର କାର୍ଯ୍ୟାନୁଷ୍ଠାନ ମଧ୍ୟ ଗ୍ରହଣ କରୁଥିଲେ । ରେଭେନ୍ସା କଲେଜ ପରିସରକୁ ସ୍ୱଚ୍ଛ, ସୁନ୍ଦର ଏବଂ ସବୁଜ କରିବା ପାଇଁ ସେ ଯେଉଁ ପଦକ୍ଷେପ ନେଇଥିଲେ, ତାହା ଅତ୍ୟନ୍ତ ପ୍ରଶଂସନୀୟ ଥିଲା । ରେଭେନ୍ସା ପରିସର ଭିତରେ ଅଣଛାତ୍ରଙ୍କର ଦୌରାତ୍ମ୍ୟକୁ ରୋକିବା ପାଇଁ ସେ ଯେଉଁ ପଦକ୍ଷେପ ନେଇଥିଲେ ସେଥିପାଇଁ ତାଙ୍କୁ ପୁରସ୍କାର ମିଳିବା ପରିବର୍ତ୍ତେ ସରକାରଙ୍କଠାରୁ ତିରସ୍କାର ମିଳିଥିଲା । ତାଙ୍କୁ ବଦଳି କରାଯାଇଥିଲା ଖଲ୍ଲିକୋଟ କଲେଜର ଅଧ୍ୟକ୍ଷ ଭାବରେ । ପ୍ରତିଶ୍ରୁତି ଦିଆଯାଇଥିଲା ଯେ, ଦୁଇମାସ ଭିତରେ ତାଙ୍କୁ ପୁନର୍ବାର ରେଭେନ୍ସାରେ ଅବସ୍ଥାପିତ କରାଯିବ ।

ସରକାରୀ ଆଦେଶ ଅମାନ୍ୟ କରିବାଭଳି ବିଶୃଙ୍ଖଳତା ସେ ଦେଖାଇନଥିଲେ । ନୂତନ ପଦରେ ଯୋଗଦେଇ ଦୁଇ ମାସ କାର୍ଯ୍ୟ କରିବା ପରେ ପୁନର୍ବାର ରେଭେନ୍ସାକୁ ବଦଳି ନ ହେବାରୁ ସେ ଋକିରି କିଛି ବର୍ଷ ଥାଇ ମଧ୍ୟ ନିଜ ପଦରୁ ଇସ୍ତଫା ଦେଇଥିଲେ । କିନ୍ତୁ ସରକାରଙ୍କ ବିରୁଦ୍ଧରେ କେଉଁଠାରେ ପଦିଏ କଥା କହିବାର କେହି ଶୁଣିନାହିଁ । ସେତେବେଳେ ତାଙ୍କର ନିଜ ଘର ନଥିଲା । ଭଡ଼ା ଘରେ ରହିବା ସତ୍ତ୍ୱେ ସେ ପେନ୍‌ସନ୍ ପାଇଁ ମଧ୍ୟ ନିଜ ତରଫରୁ ପଦକ୍ଷେପ ନେଇନଥିଲେ । ତାଙ୍କ ମତରେ ସେ ସରକାରୀ କାର୍ଯ୍ୟ କରିଛନ୍ତି ଏବଂ ପେନ୍‌ସନ୍ ତାଙ୍କର ପ୍ରାପ୍ୟ । ତେଣୁ ସରକାରଙ୍କ ପାଖରେ ଭିକ୍ଷା କରିବେ ନାହିଁ । ଅବସରପ୍ରାପ୍ତିର ଅନେକ ବର୍ଷ ପର୍ଯ୍ୟନ୍ତ ସେ ପେନ୍‌ସନ୍ ପାଇନଥିଲେ । ଅବଶ୍ୟ ତାଙ୍କ ସାଧୁତା ଓ ବିଶ୍ୱସ୍ତ କର୍ମର ଫଳସ୍ୱରୂପ ତାଙ୍କର ସବୁ ପିଲା ଯୋଗ୍ୟ ହୋଇଥିଲେ ଏବଂ ପରେ ସେ ନିଜ ଘର 'ଚିତ୍ରକାବ୍ୟ' ତିଆରି କରି ସମ୍ମାନର ସହ ନିରଳସ ସାହିତ୍ୟ ସାଧନା କରିଋଲିଛନ୍ତି । ଏଭଳି ସ୍ୱାଭିମାନ ଏକ ସତ୍‌ସାହିତ୍ୟିକଠାରେ ହିଁ ଦେଖିବାକୁ ମିଳେ ।

ତାଙ୍କର ସମାଲୋଚନା ପୁସ୍ତକଗୁଡ଼ିକର ନାମରୁ ତାଙ୍କର ଅନନ୍ୟତା ପ୍ରକାଶ ପାଏ । ସେଗୁଡ଼ିକ ହେଲା : ବିରହ ଓ ଅନ୍ୟ ବିଭାବମାନେ, ଭାରତୀୟ ସଂସ୍କୃତି ଓ ଭଗବଦ୍ ଗୀତା, ନିଦାଘରେ କବି, ଇଚ୍ଛାର ପୃଥିବୀ, ସାହିତ୍ୟରେ ଜୀବନରାଗ ଇତ୍ୟାଦି । କେବଳ ସେତିକି ନୁହେଁ ସେ ଶିଶୁ ସାହିତ୍ୟ ରଚନାକୁ ମଧ୍ୟ ଅବହେଳା କରିନାହାନ୍ତି । ନିଜର ମାତୃଭାଷା ଓଡ଼ିଆରେ ଲେଖିବା ସହ ସେ ଇଂରାଜୀରେ ମଧ୍ୟ ଅନେକ ଅନନ୍ୟ ପୁସ୍ତକ ରଚନା କରିଛନ୍ତି । ଓଡ଼ିଶାରେ ମାତୃଭାଷା ଓ ଇଂରାଜୀ ଉଭୟରେ ଉଚ୍ଚମାନର ସାହିତ୍ୟ ସୃଷ୍ଟି କରିବା ଭଳି ଲେଖକ ବିରଳ । ମାତ୍ର ପ୍ରଫେସର ମହାନ୍ତି ସେହି ଅଭାବଟିକୁ ପୂରଣ କରିଛନ୍ତି ଏବଂ ପ୍ରାୟ ବାରଖଣ୍ଡ ପୁସ୍ତକ ଇଂରାଜୀରେ ରଚନା କରିଛନ୍ତି । ଓଡ଼ିଆରୁ ଇଂରାଜୀକୁ ଅନୁବାଦ କରିବା ସହ ଇଂରାଜୀରୁ ମଧ୍ୟ ଓଡ଼ିଆକୁ କନ୍ନଡ଼ ସାହିତ୍ୟର ଇତିହାସ ଅନୁବାଦ କରି ପ୍ରକାଶ କରିଛନ୍ତି । ଇଂରାଜୀରେ ତାଙ୍କର ବିଶେଷ କୃତି ହେଉଛି "ହିଷ୍ଟ୍ରି ଅଫ୍ ଟ୍ୱେଣ୍ଟିଏଥ୍ ସେଞ୍ଚୁରି ଓଡ଼ିଆ ଲିଟେରେଚର୍" । ଅନେକ ସମ୍ମାନର ଅଧିକାରୀ ଏହି କୃତି ଶବ୍ଦକାରଙ୍କର ସମସ୍ତ କୃତିର ଆକଳନ କରିବା ଏହି କ୍ଷୁଦ୍ର ଲେଖାରେ ସମ୍ଭବ ନୁହେଁ । ଏହା ମଧ୍ୟ ମୋର କ୍ଷୀଣ ବୁଦ୍ଧି ଓ ସୀମିତ ଶକ୍ତିର ବାହାରେ ।

ପ୍ରତ୍ୟେକ ସ୍ରଷ୍ଟା ସତ୍ୟାନୁସନ୍ଧାନୀ, ପ୍ରଫୁଲ୍ଲ କୁମାର ମହାନ୍ତି ମଧ୍ୟ । କିନ୍ତୁ ତାଙ୍କର ଅନୁସନ୍ଧାନ ଯେପରି ଭିନ୍ନ ସତ୍ୟର ପରିଭାଷା ମଧ୍ୟ ସେହିଭଳି ବିସ୍ମୟକର । ତେଣୁ ତାଙ୍କ ପାଇଁ ସାହିତ୍ୟିକ ସତ୍ୟର ପରିଭାଷା ହେଉଛି ଅଦ୍‌ଭୁତ କିନ୍ତୁ ଗ୍ରହଣଯୋଗ୍ୟ । ସେ କହନ୍ତି "ସାହିତ୍ୟିକ ସତ୍ୟ ହେଉଛି ଏକ ସୁନ୍ଦର ମିଛ, ଯାହା କିଛି ସମୟ ପାଇଁ ଆମୋଦ ଦିଏ, ଆଶା ଓ ବିଶ୍ୱାସ ଜାଗ୍ରତ କରେ ଯେ ଏପରି ସତ୍ୟବ୍ରତୀ ନିଷ୍ଠାବାନ ହେଲେ ଜୀବନ ସାର୍ଥକ ହେବ । କିନ୍ତୁ ଯେଉଁ ମୁହୂର୍ତ୍ତରେ ପାଠକ ନିବିଡ଼ ପ୍ରଶ୍ନ କରିବାକୁ ଆରମ୍ଭ କରେ, ସେତେବେଳେ କୌଣସି ସତ୍ୟ ସୁନ୍ଦର ବା ଶାଶ୍ୱତ ଲାଗେ ନାହିଁ ।" ଏହି ଉତ୍ତର ପାଠକକୁ ବିଭ୍ରାନ୍ତ କରେ ନା ସତ୍ୟାନୁସନ୍ଧାନ ପଥରେ ଦିଗଦର୍ଶକ ହୁଏ ସେକଥା ପାଠକ ହିଁ କହିବେ । ସେ କହନ୍ତି ଏହା ନିର୍ଭର କରେ ବିଶ୍ୱାସ ଉପରେ । ସ୍ରଷ୍ଟାଙ୍କ ଭାଷାରେ - "ପ୍ରତ୍ୟେକ ଯୁକ୍ତି ଏକ ବିଶ୍ୱାସରୁ ଆସେ । ଦୁର୍ଯ୍ୟୋଧନକୁ ରାଜା କରି ରାଜତନ୍ତ୍ର ପ୍ରତିଷ୍ଠା କରିବାରେ ଶକୁନିର ଯେଉଁ ବିଶ୍ୱାସ ଥିଲା ତାହା ତା' ପାଇଁ ଏକ ପରମସତ୍ୟ ଥିଲା । ସେହିପରି ରାଷ୍ଟ୍ରପତିୟ ଗଣତନ୍ତ୍ର ପ୍ରତିଷ୍ଠା କରିବାରେ କୃଷ୍ଣଙ୍କର ବିଶ୍ୱାସ ମଧ୍ୟ ଏକ ସତ୍ୟ । ଏ ଦୁଇଟି ସତ୍ୟର ସଂଳାପରେ ଯେଉଁ ପରିଣାମ ଘଟିଲା ତାହା ମଧ୍ୟ ଏକ ସତ୍ୟ ।" ସେ ପୁଣି କହନ୍ତି "ସତ୍ୟକୁ ଯଦି ଆପଣ ସାର୍ବଜନୀନ, ସର୍ବକାଳୀନ ଭାବେ ଗ୍ରହଣ କରନ୍ତି, ତେବେ ପୃଥିବୀରେ ସତ୍ୟ କେବଳ ଗୋଟିଏ- ମନୁଷ୍ୟ ଜନ୍ମ ହୁଏ , ସୁଖ-ଦୁଃଖରେ ଜୀବନ ବଞ୍ଚେ ଓ ମରେ । କୋଟି କୋଟି ବର୍ଷ ଧରି ଏହା ଘଟିଆସୁଛି ଏବଂ ଯେପର୍ଯ୍ୟନ୍ତ ସୃଷ୍ଟିର ଲୟ ବିଲୟ ତାଳରେ ଜୀବନସଂଗୀତ ପରିବେଷିତ ହେଉଥିବ, ସେ ପର୍ଯ୍ୟନ୍ତ ଏ ସତ୍ୟ ତିଷ୍ଠି ରହିବ ।"

ପ୍ରଫୁଲ୍ଲ ମହାନ୍ତିଙ୍କ ସତ୍ୟର ତର୍ଜମା ବାସ୍ତବରେ ଅନୁସନ୍ଧିତ୍ସାକୁ ପ୍ରେରିତ କରେ । ଭାବଦଗ୍ଧ ହେବା ପାଇଁ ପାଠକ ବାଧ୍ୟ । ପ୍ରଫୁଲ୍ଲ ମହାନ୍ତି ବିଶ୍ୱ ମଣିଷରେ ବିଶ୍ୱାସୀ । ତାଙ୍କ ଭାଷାରେ ଅବିଶ୍ୱାସରୁ ବିଶ୍ୱାସ ପର୍ଯ୍ୟନ୍ତ ଗତି କରିବା ଲାଗି ସାହିତ୍ୟ ସବୁବେଳେ ଚେଷ୍ଟିତ । କିନ୍ତୁ ସଭ୍ୟତା ଓ ବୈଷୟିକ କୌଶଳ ଦ୍ୱାରା ବିଶ୍ୱାସ ବା ସତ୍ୟର ଅନ୍ଧବିଶ୍ୱାସ ଓ ଉପଚାର - ପ୍ରାୟଶ୍ଚିତକୁ ପରୀକ୍ଷା କଲାବେଳେ ସତ୍ୟସନ୍ଧାନୀ ସାହିତ୍ୟିକ ସମସ୍ତ ସତ୍ୟକୁ ଅବିଶ୍ୱାସ କରେ ।"

ଏହି ସ୍ରଷ୍ଟା ରାଜନୀତି, ଅର୍ଥନୀତି, ଧର୍ମନୀତି, ନୈତିକତା, ମଣିଷର କାମନା ବାସନା ଓ ପୂର୍ଣ୍ଣତା ଅପୂର୍ଣ୍ଣତା, ଆତ୍ମା ଓ ବ୍ୟକ୍ତିତ୍ୱର ସୀମା ସରହଦ ଧାର୍ଯ୍ୟ କରନ୍ତି

ତାଙ୍କର ପ୍ରତିଟି ଲେଖାରେ । ତାଙ୍କ ଭାଷାରେ ପ୍ରତିଟି ରଚନା ଆଂଶିକ ସତ୍ୟ ଉପରେ ଆଧାରିତ । ଅର୍ଦ୍ଧସତ୍ୟର କୋଳାହଳ ଭିତରେ ଆଜିର ଲେଖକ କେତୋଟି ପଲକ ପାଇଁ ଏକ ସତ୍ୟ ସଂଳାପ ସୃଷ୍ଟି କରେ । ଏହି ଆଂଶିକ ସତ୍ୟ ହିଁ ଆଜିର ସାହିତ୍ୟିକ ସତ୍ୟ । ତେଣୁ ସାହିତ୍ୟିକ ସତ୍ୟ ଆଜି ପ୍ରତ୍ୟେକ ଲେଖକ ଓ ପାଠକ ପାଇଁ ଏକ ସୁନ୍ଦର ମିଛ ଓ ଏହି ମିଛ ହିଁ ଆନନ୍ଦ ଦିଏ । ଏଭଳି ପ୍ରତୀକାତ୍ମକ ବିଶ୍ଳେଷଣ କେବଳ କରିପାରନ୍ତି ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ଭଳି ଜଣେ ପ୍ରଚଣ୍ଡ ପ୍ରତିଭାଧାରୀ ପ୍ରାବନ୍ଧିକ ।

ପ୍ରଫୁଲ୍ଲ କୁମାର ମହାନ୍ତିଙ୍କର ସମଗ୍ର ରଚନା ନ ପଢ଼ି ଯେଉଁମାନେ ତାଙ୍କର ଦୃଷ୍ଟିଭଙ୍ଗୀକୁ ପାଶ୍ଚାତ୍ୟ ଚେତନାତ୍ମକ ବୋଲି କହନ୍ତି ତାହା ତାଙ୍କର ଜଣେ ବିଦଗ୍ଧ ପାଠକ ସ୍ୱୀକାର କରିବ କି ?

ସାହିତ୍ୟିକ ସତ୍ୟକୁ ଏକ ସୁନ୍ଦର ମିଛ କହୁଥିବା ସ୍ରଷ୍ଟାଙ୍କର ପ୍ରେମଯୋଗରୁ ପଦେ ଏଠାରେ ପ୍ରାସଙ୍ଗିକ ।

ମୁଁ ବି ତ ଯୋଗୀ, ଜୀବନର ସବୁ ସରାଗର ଫୁଲ କଣ୍ଟା
ଶୀତ କାକରର, ମୋ ପାଇଁ କାହିଁକି ମନା ସବୁ ଯୋଗାଙ୍ଗନ
ମୁଁ ତ ଯୋଡ଼ି ହୁଏ ମଣିଷର ହସ କାନ୍ଦ ହତାଶାର କରୁଣ ରସରେ
ଯେତେ ମନା କଲେ ଅଳିକରେ କେମିତି ଛାଡ଼ିବି ବାୟୁ ଭିନ୍ନ ମୁଦ୍ରାରେ
ସବୁଦିନ ମୋ ପାଇଁ ଯୋଗ ଦିବସର ଆବିଶ୍ୱ ଆଲୋକ
ସବୁ ପ୍ରାଣେ ମୋ ପାଇଁ ଜୀବନ ସାଧକ
ଆସ କୃଷ୍ଣ ପ୍ରେମିକ ପ୍ରବର ଶିଖାଇବି ପ୍ରେମଯୋଗ ଅନୁଲୋମ ବିଲୋମର
ମୋ ପ୍ରିୟାର ବିଶ୍ୱରୂପ, ବିଶ୍ୱ ପ୍ରାଣାୟାମ ଶୋଷିନେବ
ସବୁ ଦୁଃଖ, ତୁମ ରାଧା ପହଞ୍ଚିବ ବ୍ୟାସଙ୍କ ହାତ ଧରି
ସମସ୍ତେ ଅଭ୍ୟାସିବା ନୂଆ ଯୋଗ ମହାଭାରତର ।

ଉପରୋକ୍ତ ଭାବ, ଉପମା ରାଧା କୃଷ୍ଣ ଏବଂ ମହାଭାରତର ନୂଆ ଯୋଗ ଅଭ୍ୟାସିବା ପାଇଁ ଆହ୍ୱାନରୁ ଏହି କବିଙ୍କୁ ଆମେ ପ୍ରଣାମ ନ କରି ରହିପାରିବା କି ? କହିପାରିବା କି କବିର ଶ୍ରେଷ୍ଠ ଗୁଣ ପ୍ରେମ ଓ ନିର୍ଭୟତା ଏବଂ ମାଟି ମନସ୍କତାଠାରୁ ସେ ଦୂରରେ ? ସେ ପାଶ୍ଚାତ୍ୟବାଦୀ ନୁହନ୍ତି କିମ୍ବା ପ୍ରାଚ୍ୟବାଦୀ ନୁହନ୍ତି । ସେ ମହାଭାରତୀୟ ବିଶ୍ୱବାଦୀ ସ୍ରଷ୍ଟା ।

ଏହି ନିର୍ଭୟ ପ୍ରେମଯୋଗର ସ୍ରଷ୍ଟାଙ୍କୁ ସୁନ୍ଦର ମିଛ ନୁହେଁ ଶାଶ୍ୱତ ସତ୍ୟର କବି ଭାବରେ ତାଙ୍କର ଅଶୀତମ ସ୍ୱନକ୍ଷତ୍ର ଦିବସରେ ଆମେ ଅଜସ୍ର ଶ୍ରଦ୍ଧା, ଶୁଭକାମନା ଓ ବିନମ୍ର ପ୍ରଣାମ ବ୍ୟତୀତ ଆଉ କ'ଣ ବା ଦେଇପାରିବା ? ସୁନ୍ଦର ମିଛର କବିଙ୍କର କିଛି ପ୍ରତ୍ୟାଶା ଥାଏ କି ? ଆମର ପ୍ରାର୍ଥନା ସେ ନୀରୋଗ, ଦୀର୍ଘାୟୁ ଓ ସୃଷ୍ଟିଶୀଳ ହୋଇ ସୁନ୍ଦର ମିଛରେ ଆମକୁ ବିଭୋର କରୁଥାନ୍ତୁ ।

ସ୍ରଷ୍ଟା ପ୍ରଫୁଲ୍ଲ କୁମାର ମହାନ୍ତିଙ୍କୁ ମୁଁ ତାଙ୍କର ସମସ୍ତ ସୃଷ୍ଟିସମ୍ଭାର ଭିତରେ କବି ଭାବରେ ଦେଖୁଛି ଏବଂ ମହାଭାରତୀୟ ଦର୍ଶନ ବସୁଧୈବ କୁଟୁମ୍ବକମ୍‌ର ପ୍ରବକ୍ତା ଭାବରେ ଆବିଷ୍କାର କରିଛି । ଏହି ନିର୍ଭୟ ସ୍ପଷ୍ଟବାଦୀ କବିଙ୍କୁ ଶତ ପ୍ରଣାମ ।

ଆଖ୍ୟାୟିକା

୨୭, ଗଜପତି ନଗର

ଭୁବନେଶ୍ୱର-୭୫୧୦୦୫

# ବ୍ଲୁ ହରିକେନ୍ !

**ହର ପ୍ରସାଦ ଦାସ**

ଓଡ଼ିଆ ସାହିତ୍ୟର ଜଣେ ଅଗ୍ରଜ ଲେଖକ, ଦିଗ୍‌ଗଜ ଆଲୋଚକ, ସ୍ନିଗ୍ଧ ଭାବୁକ, ବହୁପାଠୀ ବାଗ୍ମୀ ତାରୁଣ୍ୟ-ଉଦ୍‌ବେଳିତ ଯୁଗମିତ୍ର ଓ ସଂଭ୍ରାନ୍ତ ବ୍ୟକ୍ତିତ୍ୱ ପ୍ରଫୁଲ୍ଲ କୁମାର ମହାନ୍ତି, ମୋର ଗୁରୁ। ରେଭେନ୍‌ସା କଲେଜରେ ମୋର ପ୍ରବେଶ ସହିତ ସେ ମୋର ଅଧ୍ୟାପକ ଭାବରେ ଯୋଗ ଦେଇଥିଲେ। ମୁଁ ଶ୍ରେଣୀଗୃହରେ ବସି ତାଙ୍କ ପାଠ ଶୁଣିଚି, ସେ ମୋର ପରୀକ୍ଷା ଖାତା ଦେଖି ମାର୍କ ଦେଇଚନ୍ତି ଓ ମୁଁ ଏଯାଏଁ ତାଙ୍କର ପାଦ ଛୁଇଁ ପ୍ରଣାମ କରିବାର ସଂସ୍କାର କାଏମ୍ ରଖିଚି। ସତେ ଅବା ଆମେ ଦୁହେଁ ଆଜି ଠାରୁ ଅର୍ଦ୍ଧଶତାବ୍ଦୀ ତଳର ଏକ ନିର୍ଦ୍ଦିଷ୍ଟ କାଳଖଣ୍ଡରେ ସ୍ଥିର ହୋଇଯାଇଚୁ। ସେ ମୋର ଯୁବକ ଶିକ୍ଷକ ଓ ମୁଁ ତାଙ୍କର ତରୁଣ ଛାତ୍ର।

ମୋର ସବୁବେଳେ ମନେପଡ଼େ ଶ୍ରେଣୀଗୃହରେ ତାଙ୍କର ପ୍ରଥମ ପ୍ରବେଶର ସେଦିନ। କଲେଜ ଖୋଲିଥାଏ ଓ ସିଧା ସ୍କୁଲରୁ ଆସି ଓଡ଼ିଶାର ପ୍ରଖ୍ୟାତ ଶିକ୍ଷାୟତନ ରେଭେନ୍‌ସା କଲେଜରେ ନାମ ଲେଖାଇ କଲେଜ ଛାତ୍ରର ଗାମ୍ଭୀର୍ଯ୍ୟ ଆୟତ୍ତ କରୁକରୁ କିଶୋର ସୁଲଭ ଚପଳତାରେ ଉଚ୍ଛୃଙ୍ଖଳ ହୋଇ ପଡ଼ିଥିବା ଗୁଡ଼େ ପିଲା ଅପେକ୍ଷା କରିଥାନ୍ତି ଇଂରେଜୀ କ୍ଲାସର ଅଧ୍ୟାପକଙ୍କୁ। କେତୋଟି କ୍ଲାସ ସରିଥାଏ ଓ ଆମେ ଅପେକ୍ଷା କରି ରହିଥାଉ ନାଟକୀୟ ଭାଷାରେ ଅତ୍ୟନ୍ତ କୋମଳ ଇଂରେଜୀ କହୁଥିବା ଜଣେ ଅଧ୍ୟାପକଙ୍କୁ। କିନ୍ତୁ ଏ କ'ଣ ? ଏକ ଗ୍ରେ ପ୍ୟାଣ୍ଟ ଓ ବ୍ଲୁ ଟେରିଲିନ୍ ସାର୍ଟ କହୁଣୀ ପର୍ଯ୍ୟନ୍ତ ମୋଡ଼ି ମତ୍ତହସ୍ତୀ ଭଳି ଝୁଲି ଝୁଲି ଆସୁଥିବା ଏ ଯୁବକ କିଏ ? ପ୍ରଫୁଲ୍ଲ କୁମାର ମହାନ୍ତି, ରେଭେନ୍‌ସା କଲେଜରେ ସଦ୍ୟ ଯୋଗ ଦେଇଥିବା ଇଂରେଜୀ ଅଧ୍ୟାପକ। ହାଜିରା ପକାଇ ସେ ଆରମ୍ଭ କଲେ ତାଙ୍କ ଲେକ୍‌ଚର। କ'ଣ ଥିଲା ବିଷୟ ମନେ ନାହିଁ, କେବଳ ମନେ ଅଛି ସାମାନ୍ୟ ବର୍ଷା ପରେ ଶୀତଳ ହୋଇ

ଆସିଥବା ଶ୍ରେଣୀଗୃହରେ ସତେ ଅବା ଭରିଯାଇଥିଲା ଉଷ୍ଣ ପ୍ରବାହ। ପ୍ରଫୁଲ୍ଲ ସାର୍‌ଙ୍କ ଲେକ୍‌ଚର୍‌ରେ ଅରନକ କୁଆପଥର ବର୍ଷା ଭଳି ଇଂରେଜୀ ଶବ୍ଦ ଓ ଉଦ୍ଧୃତିମାନେ କରଡ଼ି ହୋଇ ପଡୁଥିଲେ, ଖରଖଚ୍ ଭର୍ତ୍ତି ଶ୍ରେଣୀଗୃହରେ ନିଃଶ୍ୱାସ ଛାଡ଼ିବା ପାଇଁ ବି ଭୟ ଲାଗୁଥିଲା। କେତେବେଳେ ପଇଁଚାଳିଶ ମିନିଟ୍ ସରିଲା, ସାର୍ ଦ୍ରୁତଗତିରେ ଶ୍ରେଣୀଗୃହ ଛାଡ଼ି ଓହ୍ଲେଇଗଲେ ବାରଣ୍ଡାକୁ ଜଣାପଡ଼ିଲା ନାହିଁ। କଣ କିରେ ? ଶ୍ରେଣୀର ମାମଲତକାର ମାଧ ପଚାରିଲା ଚିତାଚଇତନ ପକେଇ ନୀତିବାନ୍ ଛାତ୍ରର ପ୍ରଭାବ ସୃଷ୍ଟି କରିବାକୁ ଚାହୁଁଥିବା ଲୋକାକୁ। ଲୋକା ଗମ୍ଭୀର ହୋଇ ଗୋଟିଏ ଶବ୍ଦରେ ଉତ୍ତର ଦେଲା : ହରିକେନ୍ ! ମାଧ ପଚାରିଲା : ଆବେ ହରିକେନ୍ କଣ ? ପକେଟ୍‌ରେ ସବୁବେଳେ ଗୋଟିଏ ଛୋଟ ଇଂରେଜୀ ଅଭିଧାନ ଧରି ବୁଲୁଥିବା ଲୋକା ଉର୍ଫ ଲୋକନାଥ କହିଲା : ସମୁଦ୍ର ଝଡ଼। ଗୋଟେ ତୁମୂଳ ହାସ୍ୟରୋଳ ଭିତରେ ପ୍ରଫୁଲ୍ଲ ସାର୍ ହୋଇଗଲେ ହରିକେନ୍। ଉଲ୍ଲେଖଯୋଗ୍ୟ ଯେ ଲୋକନାଥ ସେ ନୂଆ ଶବ୍ଦଟିକୁ ପାଇଥିଲା ପ୍ରଫୁଲ୍ଲ ସାର୍‌ଙ୍କ ଲେକ୍‌ଚର୍‌ରୁ। ତାଙ୍କର ସେଦିନର ଲେକ୍‌ଚର୍‌ରୁ କୁଆପଥର ବର୍ଷାରେ କୁଆପଥର ଗୋଟେଇଲା ଭଳି ଆମେ କିଏ କେତେ ଶବ୍ଦ ପାଇଥିଲୁ। ମୁଁ ଖାତାରେ ନୋଟ୍ କରିଥିଲି ଶେଲି ଓ କିଟ୍‌ସ୍ ନାମଧେୟ ଦୁଇଜଣ ଇଂରେଜ କବିଙ୍କ ନାଁ। ସେଇଦିନ କିତାବ ମହଲରୁ କିଣିଥିଲି 'ରୋମାଣ୍ଟିକ୍ ପୋଏଟ୍‌ସ୍'। ଧୀରେ ଧୀରେ ପ୍ରଫୁଲ୍ଲ ସାର୍ ଆମର ପ୍ରିୟ ହୋଇଗଲେ। ତାଙ୍କୁ ଆମେ ବୁଝି ପାରିଲୁ। ତାଙ୍କର ଇଂରେଜୀ କହିବାର ଢଙ୍ଗ ବି ଥିଲା ଅଲଗା। କିନ୍ତୁ ସେତେବେଳର ସେ ଯେଉଁ ହରିକେନ୍ ଆମକୁ ଚାହିଁ ପାଠ ପଢ଼ାଉ ନଥିଲେ, ସେ ଆମର ଅନେକ ଆଗର ପରିପକ୍ୱ ସାହିତ୍ୟ ଓ ତାର ଆଲୋଚନା ପଦ୍ଧତିକୁ ଆଣି ଆମ ସାମ୍ନାରେ ଠିଆ କରୁଥିଲେ। ମନ୍ତ୍ରମୁଗ୍ଧ ହେଲା ଭଳି ପଢ଼ାଉଥିଲେ ଓ କ୍ଲାସ ସରିଲା ପରେ ଆଖି ପିଛୁଳାକେ ଉଭାନ୍ ହୋଇଯାଉଥିଲେ। ଶ୍ରେଣୀଗୃହରେ ଠିଆହୋଇ ଆମେ ଦେଖୁଥିଲୁ ବ୍ଲୁ ହରିକେନ୍ (ବ୍ଲୁ ସାର୍ଟରେ ପ୍ରଫୁଲ୍ଲ ମହାନ୍ତି) ବାରଣ୍ଡାରେ ଚାଲିବାର ଦୃଶ୍ୟ। ତରତର ସେ ଚାଲି, ବେପରୱା କିନ୍ତୁ ସୁନିର୍ଦ୍ଦିଷ୍ଟ। ବି.ଏ. କ୍ଲାସ୍‌ରେ ରାଜନୀତି ବିଜ୍ଞାନ ଅନର୍ସ ନେବା ଯୋଗୁଁ ତାଙ୍କ ସହିତ ଖୁବ୍ ବେଶି ପ୍ରତ୍ୟକ୍ଷ ସମ୍ପର୍କର ସୁଯୋଗ ନଥିଲା, କିନ୍ତୁ ଜେନେରାଲ ଇଂଲିଶ କ୍ଲାସ୍‌ରେ ତାଙ୍କୁ ଦେଖିବାର ସୁଯୋଗ ମିଳୁଥିଲା। ସେକେଣ୍ଡ ଇୟର ଡିଗ୍ରୀ କ୍ଲାସ୍‌ରେ ବିଶ୍ୱବିଦ୍ୟାଳୟ ପରୀକ୍ଷା ନଥିଲା, କ୍ଲାସ୍ ପରୀକ୍ଷା ହେଉଥିଲା ବର୍ଷ ଶେଷରେ, ସେମେଷ୍ଟର ପରୀକ୍ଷା ଭଳି।

ଗୋଟିଏ ବିଡ଼ା ଖାତା ନେଇ ନୀଳ ହରିକେନ୍ ଆସିଲେ କ୍ଲାସ୍‌କୁ। ଯେତେ ହେଲେ ବି ପରୀକ୍ଷା। କେତେ ନମ୍ବର ରହିଲା ଜାଣିବାକୁ ଆମେ ବ୍ୟାକୁଳ। ଖାତାଗୁଡ଼ିକ ଗୋଳିଆମିଶା କରିଦେଇ ରୋଲ୍ ନମ୍ବର ଡାକିଲେ ସାର୍। ଗୋଟିଏ ପକେଟ୍ ଡିକ୍ସନାରୀ ସାହାଯ୍ୟରେ ନିଜକୁ ଜଣେ ଇଂରାଜୀ ବିଶାରଦ ବୋଲି ପ୍ରମାଣ କରିବାପାଇଁ ଆତୁର ଲୋକନାଥର ଖାତା ବାହାରିଲା ପ୍ରଥମେ। ରୋଲ୍ ନମ୍ବର ୧୭, ତମେ ପାଇଛ ଶହେରୁ ୧୭। ତାପରେ ବହିଲା ଲଜ୍ଜାକର ଖରାପ ମାର୍କର ଝଡ଼। ୧୫, ୨୫, ୨୭, ୩୦, ୪୦, ୩୧, ୩୬, ୯, ୧୧... ସର୍ବଶେଷରେ ଗୋଟିଏ ୪୮। ପ୍ରାୟ ସମସ୍ତେ ଫେଲ୍। ଉଃ, କିନ୍ତୁ ମୋର କଣ ହେଲା? ସାର୍ ମୋ ଖାତା ଦେଖିନାହାନ୍ତି ନା କଣ? ମୁଁ ଭାବିଲି କାଳେ ସ୍କ୍ରାଚ୍ ହେଇଯାଇଥିବ। କିନ୍ତୁ କାହିଁକି? ମୋତେ ଆଦୌ ନ ଅନେଇ ନୀଳ ହରିକେନ୍ ବାହାର କଲେ ଗୋଟିଏ ବଳକା ଖାତା ଓ କହିଲେ ରୋଲ୍ ନମ୍ବର ୫ ହରପ୍ରସାଦ ଦାସ ୬୩। ଏଇ ଗୋଟିଏ ଖାତା। ଏଇ ଗୋଟିଏ ପିଲା। କ୍ଲାସ୍ କୋଳାହଳମୟ। ନୀଳ ହରିକେନ୍ ସେଇ କୋଳାହଳ ଭିତରେ ହାଜିରା ଖାତା ହଲେଇ ହଲେଇ ତାଙ୍କର ସେଇ ବେପରୁଆ ଚାଲିରେ ବାରଣ୍ଡାରେ ଅଲକ୍ଷ୍ୟ ହୋଇଗଲେ। କିନ୍ତୁ ମୁଁ ଏ କାହାଣୀ କାହିଁକି କହୁଚି? ଅଛି ଯାର ଗୋଟିଏ ଭୂମିକା ମୋ ଜୀବନରେ, ସେଇଥିପାଇଁ କହୁଚି। ସବୁଠୁ ବେଶୀ ନମ୍ବର ପାଇ ଫୁଲି ଉଠୁଥାଏ ମୋ ଛାତି। ଇଚ୍ଛା ହେଉଥାଏ ପ୍ରଫୁଲ୍ଲ ସାର୍ ମୋତେ ମୋ ଇଂରେଜୀ ବିଷୟରେ ଆଜି ଟିକିଏ କଣ କହନ୍ତୁ। ମୁଁ ତାଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ସାର୍‌ଙ୍କ କମନ୍‌ରୁମ୍ ଯାଏ ଚାଲିଗଲି ଦିନେ। ମୋତେ ଦେଖି ହସିଲେ। ଶୁଣିଲା ଭଳି କହିଲେ : ପ୍ରଶଂସା ଚାହୁଁଚ? ଥରେ ଭଲ କରିଦେଲେ ମୁଁ ପ୍ରଶଂସା କରେନି। ବି କନ୍‌ସିସ୍ଟେଣ୍ଟ, ଭଲ କରିଚାଲ, ପ୍ରଶଂସା ଆପେ ମିଳିବ। ସେଇ ପଦେ କଥା ମୋର ଦୃଷ୍ଟିକୋଣ ବଦଳାଇ ଦେଲା। ଜଣେ ସ୍ୱପ୍ନଭୂକ୍ ତରୁଣରୁ ମୁଁ ଜଣେ କର୍ମଠ ଯୁବକରେ ପରିଣତ ହୋଇଗଲି। ତାପରେ ତାଙ୍କ ସହିତ ଆଉ ସଂଯୋଗ ରହିଲା ନାହିଁ।

ରାଜନୀତି ବିଜ୍ଞାନ ଅନର୍ସ, ଏମ୍.ଏ., ସିଭିଲ୍ ସର୍ଭିସ୍, କେନ୍ଦ୍ର ସରକାରଙ୍କ ବିଭିନ୍ନ ଦପ୍ତରରେ ଓ ବିଭିନ୍ନ ରାଜ୍ୟରେ କାର୍ଯ୍ୟକରି ମାତ୍ର ୪ ବର୍ଷ ପାଇଁ ମୁଁ ଫେରିଲି ଭୁବନେଶ୍ୱରକୁ। କୋଉ ଗୋଟେ ମିଟିଂରେ ହଠାତ୍ ଦେଖା ହୋଇଗଲା ସାର୍‌ଙ୍କ ସହିତ। ସେ ଗୋଟିଏ ବ୍ଲୁ ସଫାରି ପିନ୍ଧିଥିଲେ, ମୁଁ ମନେ ମନେ ହସିଲି। ସେତେବେଳକୁ ସେ ବୋଧହୁଏ ରେଭେନ୍‌ସାର ପ୍ରିନ୍‌ସିପାଲ୍ ଥିଲେ। ଦେଖା ହେଲା ମାତ୍ରେ ମୁଁ ନଇଁପଡ଼ି

ପାଦ ଛୁଇଁଲି ଓ ସେ ମୋତେ କୁଣ୍ଢେଇ ଧରିଲେ। ସେଇ ଶ୍ୟାମଳ ମୁହଁ, ନିଶ, ଘନକୃଷ୍ଣ କେଶ ଓ ନୀଳରଂଗ ! ଆଖି ଓଦା, ଆମେ ଦୁହେଁ ବାକ୍‌ରୁଦ୍ଧ। କହିଲେ : ଆଇ ଆମ୍ ପ୍ରାଉଡ୍ ଅଫ୍ ୟୁ ! କାହିଁ କେତେଦିନ ତଳେ ବାକି ରଖିଥିବା ଟିକିଏ ପ୍ରଶଂସାକୁ ସେ ଏତେବଡ଼ କରି ଫେରେଇଲେ ଯେ ମୁଁ ଋଣୀ ହେଇଗଲି। ସେଇ ଦିନଠୁ ସେ ମୋତେ କେତେ ପ୍ରକାରେ ଆହୁରି ଋଣୀ କରି ଚାଲିଛନ୍ତି। ମୁଁ ପରିଶୋଧ କରିବା ପାଇଁ ସୁଯୋଗ ପାଇ ନାହିଁ। ଏବେ ଏଇ ଯେଉଁ କ୍ଷୁଦ୍ର ରଚନାଟି ମୁଁ ତାଙ୍କୁ ସ୍ମରଣ କରି ଲେଖୁଚି, ତାର ବା ମୂଲ୍ୟ କେତେ ?

ଅଧ୍ୟାପନାରୁ ଅବସର ନେବାର ଅନେକ ବର୍ଷ ହୋଇଗଲାଣି, କିନ୍ତୁ ମୁଁ ତାଙ୍କୁ ଅବସରପ୍ରାପ୍ତ ଶିକ୍ଷାବିତ୍‌ଙ୍କ ଶ୍ରେଣୀରେ ସାମିଲ୍ କରିପାରେନି। ସେଥିରେ ମୋର ସ୍ୱାର୍ଥ ଅଛି। ମୋର ସ୍ୱାର୍ଥ ଏଇ ଯେ ମୋର ଶିକ୍ଷକ ଯଦି ଯୁବକ, ତେବେ ତାଙ୍କର ଛାତ୍ର ଭାବରେ ମୁଁ ତରୁଣ। ସତେ ଯେମିତି ସେ ମୋର ଉଦ୍ଦୀପନାର ମୂର୍ତ୍ତିମନ୍ତ ବିଗ୍ରହ। ସେ ସେମିତି ଥାନ୍ତୁ, ମୁଁ ବି ଏମିତି ଥାଏଁ। ସାର୍ ହସିବେ ଯାକୁ ପଢ଼ିକି, କିନ୍ତୁ ତାଙ୍କର ନିଶ୍ଚୟ ମନେପଡ଼ିବ ଯେ ମୁଁ ତାଙ୍କୁ କେବେବି ବରିଷ୍ଠ ହେବାର ମୁକୁଟ ପିନ୍ଧେଇବିନି। ସେ ବରିଷ୍ଠ କି ଗରିଷ୍ଠ ନୁହଁନ୍ତି, ସେ ଘନିଷ୍ଠ।

ଜଣେ ବ୍ୟକ୍ତି ଭାବରେ ତାଙ୍କର ଘନିଷ୍ଠତାର ପ୍ରମାଣ ମିଳିଲା ତାଙ୍କର ଜୀବନରୁ। ତାଙ୍କ ଜୀବନ ସମସ୍ତଙ୍କ ପାଇଁ ଖୋଲା ବହି ନୁହେଁ, କିନ୍ତୁ ସେ ନିଜେ ସେ ବହିଟିକୁ କିଭଳି ପଢ଼ିଛନ୍ତି, ସେ ପ୍ରମାଣ ଆମ ଆଖି ଆଗରେ। ସେ ସାହସର ସହିତ ଜୀବନର ସମ୍ମୁଖୀନ ହୋଇଛନ୍ତି। ବ୍ୟକ୍ତିଗତ ଜୀବନ ହେଉ କି ସାମାଜିକ ଜୀବନ ହେଉ କେଉଁଠି ବି ସେ ଜଣେ ଉପର ଠାଉରିଆ ଅବସରଭୋଗୀ ସୁବିଧାବାଦୀ ଭାବରେ କିଛି କହିନାହାନ୍ତି କି କରିନାହାନ୍ତି। କ୍ଷୁଦ୍ରରୁ କ୍ଷୁଦ୍ରତର ସାହିତ୍ୟ ସଭାରେ ସେ ନିଶ୍ଚିତ ଭାବରେ ତାଙ୍କ ଅଧ୍ୟବସାୟର ପରିଚୟ ଦେଇଛନ୍ତି। ସେ କିଛି କହିବାର ଅର୍ଥ ଭାବିଚିନ୍ତି କହିବେ, ପ୍ରସ୍ତୁତି ତାଙ୍କର ପ୍ରତି ବାକ୍ୟରେ। କିନ୍ତୁ ଥରେ ସହଜ ହେଇଗଲା ପରେ ଆମ ଛାତ୍ର ଜୀବନର ସେଇ ବ୍ଲୁ ହରିକେନ୍ ଭାଷାର ମାଧୁର୍ଯ୍ୟ, ଗାମ୍ଭୀର୍ଯ୍ୟ ସହିତ ଚଟୁଳତା ଓ ସୌନ୍ଦର୍ଯ୍ୟରେ ସେ ତାଙ୍କର ନିଜର ପ୍ରତିମାନ। ନିନ୍ଦା ପ୍ରଶଂସାକୁ ଅପେକ୍ଷା ନକରି ସେ କହିବେ ଓ ତାଙ୍କର ନିଜ ବାଟରେ ଚାଲିଯିବେ। ମିଶିଗଲା ଭଳି ଲାଗିବେ କିନ୍ତୁ ତା ଭିତରେ ନିଜର ସ୍ୱାତନ୍ତ୍ର୍ୟ ଓ ସଂଭ୍ରମ ବଜାୟ ରଖିବାପାଇଁ ତାଙ୍କର ଯୋଡ଼େ ସତର୍କ

ଆଖି ବରାବର କୌଣସି ନା କୌଣସି ଗୋଟେ ପୋତାଶ୍ରୟ ଖୋଜୁଥିବେ। ପାଇଗଲେ ସେ ବିମଳ ହସଟିଏ ହସିବେ ଓ ଆସିବ ଗୋଟେ ଶେଲୀ ବା ସେକ୍‌ସପିୟରୀୟ ଉଦ୍ଧୃତି। ତାଙ୍କୁ ସହଜ ଭାବି ସୁଯୋଗ ନେଉଥିବା ବେଶ୍ କିଛି ସାହିତ୍ୟିକ ଏ ଭିତରେ ଜାଣିଗଲେଣି ଯେ ଜୀବନ ସହିତ ଘନିଷ୍ଠ ଏ ଲୋକ କାହାରି ଦୟାର କି ଦାକ୍ଷିଣ୍ୟର ପାତ୍ର ନୁହେଁ। ବିବେକୀ ମଣିଷ। ଦମ୍ଭିଲା ମଣିଷ। ସ୍ନେହୀ ମଣିଷ। କିନ୍ତୁ ଜୀବନ ସହିତ ମୁକାବିଲା କରିବା ପାଇଁ ସବୁବେଳେ ପ୍ରସ୍ତୁତ ଏ ମଣିଷଟି ଭିତରେ ଗୋଟେ ବହୁତ ବଡ଼ ଶୂନ୍ୟସ୍ଥାନ ଦେଖିଚି। କେତେଥର ଭାବିଚି ପଚାରିବି : ସାର୍ ମୁହଁ ପଛରେ ରହସ୍ୟ ଏ ଛାୟାଟି କାହିଁକି ? ବେଳେ ବେଳେ ଲାଗିଚି ମୁଁ ଯେମିତି ଉତ୍ତର ପାଇଯାଇଚି। ତାଙ୍କର ଅନେକ କବିତା ପଢ଼ିଚି, କେତେବେଳେ ଆବେଗ ଆପ୍ଲୁତ ତ କେତେବେଳେ ଯୁକ୍ତିପ୍ରଧାନ। ସବୁଠି ଆହୁରି କିଛି ଅଧିକ କରିବା ପାଇଁ ଚାହୁଁଥିବା ଓ ସେତକ କରିନପାରି ବ୍ୟସ୍ତ ବିକଳ ଗୋଟେ ଲୋକ। ସେଇ ତାଙ୍କର ଶୂନ୍ୟସ୍ଥାନ କି ? ଜୀବନରେ ଅନେକ କିଛି କରିପାରିବାର ସାମର୍ଥ୍ୟ ରଖିଥିବା ଓ ସମସ୍ତ ସଫଳତା ସତ୍ତ୍ୱେ ନିଜକୁ ନିଜ ଆଗରେ ଉପସ୍ଥାପିତ କରି ନପାରିଥିବା ଜଣେ ନିଜ ମଣିଷର ସ୍ଥପତି କି ସେ ଖାଲିଜାଗା, ସେ ଶୂନ୍ୟସ୍ଥାନ ?

ସେଇ ଅଦୃଶ୍ୟ ଶୂନ୍ୟସ୍ଥାନକୁ ଭରିବା ପାଇଁ ସେ ଶିକ୍ଷକ ହୋଇଚନ୍ତି, ଗୃହୀମଣିଷ ହୋଇଚନ୍ତି, ପ୍ରେମିକ ପୁରୁଷ ହୋଇଚନ୍ତି, ବାଗ୍ମୀ ହୋଇଚନ୍ତି ଓ ରାଶି ରାଶି ରଚନା ଲେଖି ଅନ୍ୟମାନଙ୍କୁ ଉପକୃତ କରିଚନ୍ତି। ନିଜେ କଣ ପାଇଚନ୍ତି ତାର ହିସାବ ସେ କେବେ କରିନାହାନ୍ତି। ତାଙ୍କର ସହକର୍ମୀମାନଙ୍କ ଭିତରେ ସେ ଅଲଗା, ତାଙ୍କର ପ୍ରିୟଜନଙ୍କ ମେଳରେ ବି ସେ ଅଲଗା, ଜଣେ କବି ଭାବରେ ବି ସେ ଅଲଗା। ଜୀବନର ଦୁଇଟି ସ୍ମରଣୀୟ ବହି 'ବିରହ ଓ ଅନ୍ୟ ବିଭାବମାନେ' ଓ 'ଭାରତୀୟ ସଂସ୍କୃତି ଓ ଭଗବଦ୍‌ଗୀତା' ଆଲୋଚନାରେ ସେ କି ବିଚିତ୍ର ବ୍ୟକ୍ତିତ୍ୱ ଆବିଷ୍କାର କଲି ମୁଁ। ଏ ଦୁଇଟି ବହି ଅନତିକ୍ରମଣୀୟ। 'ବିରହ' ଓ ତାଙ୍କର ପ୍ରାଣୋଚ୍ଛଳ ସ୍ୱୟଂଚାଳିତ ବୌଦ୍ଧିକ କ୍ରିୟା। କି ମାର୍ମିକତାର ସାମର୍ଥ୍ୟ ନେଇ ସେ ବହୁ ପୁରାତନ 'ବିରହ'କୁ ଏକ ଜୀବନ ଦର୍ଶନରେ ପରିଣତ କରିଛନ୍ତି, ତାହା ନପଢ଼ିଲେ ଜାଣିହେବ ନାହିଁ। ମୁଁ 'ବିରହ'ର ଆଲୋଚନା କରୁ ନାହିଁ, କାରଣ ଏ ବହିକୁ ଆଲୋଚନା କରିବାର କୌଣସି ମାନଦଣ୍ଡ ଆମ ପାଖରେ ନାହିଁ। ନା ଏ ଶାସ୍ତ୍ରୀୟ ତଥ୍ୟ ବିଚାର, ନା ଏ ତୁଳନାତ୍ମକ ବିଚାର, ନା ଏ ରମ୍ୟରଚନା, ନା ମନନଶୀଳ ପ୍ରବନ୍ଧ। ହୁଏତ ଏସବୁ,

କିନ୍ତୁ କୋଉ ଗୋଟିଏ ବି ନୁହେଁ। ଏଣୁ ପ୍ରଫୁଲ୍ଲ ମହାନ୍ତିଙ୍କ ବିଚାରର ବୈଶିଷ୍ଟ୍ୟ। ସେ ସବୁବେଳେ ଏମିତି ଗୋଟିଏ ଜାଗାରେ ଠିଆହୋଇ ଜୀବନକୁ ଓ ସାହିତ୍ୟକୁ ଦେଖନ୍ତି, ଯେଉଁଠି ଆଗରୁ କେହି ଠିଆ ହୋଇନଥିଲେ। ମଣିଷଟି ଭିତରେ ଅନନ୍ୟତାକୁ ସନ୍ଧାନ କରିବା ଗୋଟିଏ ପ୍ରବୃତ୍ତି ସେତେବେଳେ ଥିଲା, ଏବେ ବି ଅଛି। 'ବିରହ' ପଢ଼ିଲା ପରେ ବହୁଦିନ ପର୍ଯ୍ୟନ୍ତ ମୁଁ ଭାବିଲିଣି ପ୍ରକୃତରେ ମୁଁ କୋଉଠୁ ଯାଇ କୋଉଠି ପହଁଚିଲି। ଏବେ ଭାବୁଚି ମୁଁ ଗୋଟେ ନୀଳ ହରିକେନ୍‌ରେ ମିଳନର ମୁହାଣ ଯାଏଁ ଯାଇ ପୁଣି ଫେରିଆସିଲି। ଅଦ୍‌ଭୁତ ବହି। ସେହିଭଳି ଶ୍ରୀମଦ୍‌ଭଗବତ୍ ଗୀତା ଉପରେ ତାଙ୍କର ଯେଉଁ ଟିପ୍ପଣି ତାକୁ ଲେଖିବା ପାଇଁ ତାଙ୍କ ଛଡ଼ା ଆଉ କିଏ ସାହସ କରିଥାନ୍ତା ? ସେ ଯେଭଳି ଜୀବନକୁ ବୁଝିଛନ୍ତି, ସେଭଳି ବୁଝାଇଛନ୍ତି 'ଗୀତା'କୁ। ମୁଁ ନିଜେ ଶ୍ରୀମଦ୍ ଭଗବଦ୍ ଗୀତାର ସାତଶହ ଶ୍ଳୋକ ନବାକ୍ଷରୀରେ ଅନୁବାଦ କରିଚି ଓ ମୋଟ ଉପରେ ଭଗବଦ୍ ଗୀତାର ରହସ୍ୟକୁ ନେଇ ମୋ ଭିତରେ ଅନେକ କୌତୁହଳ ଏବେ ବି ବିଦ୍ୟମାନ। କିନ୍ତୁ ପ୍ରଫୁଲ୍ଲ କୁମାର ମହାନ୍ତିଙ୍କର ଭାଷ୍ୟ ଏଭଳି ଭାବରେ ଆତ୍ମନିବଦ୍ଧ ଯେ ମନେହେବ ସତେ ଯେମିତି ତାଙ୍କୁ ଭଗବଦ୍‌ଗୀତାର ଗୋଟିଏ ପରୀକ୍ଷାଭୂମି ଦିଶିଚି ଓ ସେ ସେଇ ପରୀକ୍ଷାଭୂମି ଉପରେ ଭଗବଦ୍‌ଗୀତାର ତଥ୍ୟ ଓ ତତ୍ତ୍ୱକୁ ନିଜ ଖୁଶିରେ ଭୋଗିଛନ୍ତି। 'ବିରହ'ରେ ଜଣେ ପ୍ରେମିକ ପୁରୁଷ ଓ 'ଭଗବଦ୍‌ଗୀତା'ରେ ଜଣେ ଆଧ୍ୟାତ୍ମିକ ପୁରୁଷଙ୍କୁ ଆବିଷ୍କାର କଲାପରେ ପ୍ରଫୁଲ୍ଲ ସାର୍‌ଙ୍କ ସୃଜନଶୀଳ ନବୋନ୍ମେଷ୍ୟର ତାତ୍ପର୍ଯ୍ୟ ମୋତେ ଦିଶିଗଲା। ଯାହା ଯେମିତି ଅଛି ତାକୁ ସେମିତି ଗ୍ରହଣ କରିବାରେ ତାଙ୍କର କୁଣ୍ଠା, ସେ ନୂଆର ଆବିଷ୍କାରରେ ମତ୍ତ। 'ମତ୍ତ' ଶବ୍ଦଟି ବ୍ୟବହାର କଲି ଏଇଥିପାଇଁ ଯେ ପ୍ରଫୁଲ୍ଲ ସାର୍‌ଙ୍କ ବ୍ୟକ୍ତିତ୍ୱ, କର୍ମତତ୍ପରତା ଓ ସାହିତ୍ୟସୃଜନ ସବୁଥିରେ ସେଇ ନିମଜ୍ଜିତ ମତ୍ତଭାବଟି ମୁଖ୍ୟ। ସେଇ ମତ୍ତଭାବଟି ଥିଲା ତାଙ୍କର ଯୌବନ କାଳରେ, ଯେତେବେଳେ ସେ ମୋର ଶିକ୍ଷକ ଥିଲେ। ସେଇ ମତ୍ତଭାବଟି ଅଛି ଏବେବି ତାଙ୍କର ଉଚ୍ଚାରଣରେ, ଆଚରଣରେ।

ସାର୍, ଆପଣଙ୍କର ଅସଂଖ୍ୟ ଛାତ୍ର, ବହୁ ସଫଳ ବନ୍ଧୁ, ବହୁ ସମର୍ଥ ସହଯୋଗୀ। ମୋର ଆପଣଙ୍କ ସହିତ କେତେ ବା ସଂପର୍କ ? ଯେତିକି ଟିକିଏ ମୋ ଭିତରେ ଏଯାଏଁ ଜମିଲେଇ ଉପଳ ଖଣ୍ଡ ହେଇ ରହିଯାଇଥିଲା ସେତିକି ମୋର ସ୍ମୃତିର ଶାଳଗ୍ରାମ। ଯେଉଁମାନେ ଆପଣଙ୍କୁ ମୋଠାରୁ ଅନେକ ଗୁଣରେ ଅଧିକ ଜାଣିଚନ୍ତି ବା ନିକଟରୁ ଦେଖିଚନ୍ତି, ସେମାନେ କେତେ କେତେ ସତ୍ୟ କହିବେ, କିଭଳି ଭାବରେ

କହିବେ ମୁଁ ଜାଣେ ନାହିଁ, କିନ୍ତୁ ଆପଣଙ୍କୁ ମୋର ଦେଖିବାରେ ଗୋଟେ ଅତି ଜଟିଳ ମାନବୀୟ ସନ୍ଦର୍ଭ ଅଛି ଯାହାକୁ ମୁଁ ଏଯାଏଁ ଠିକ୍ ଭାବରେ ଠାବ କରିପାରି ନାହିଁ। ସେ ସନ୍ଦର୍ଭ ହୋଇପାରେ ଜଣେ ଯୋଦ୍ଧାର, ହୋଇପାରେ ଜଣେ କଳାକାରର, ହୋଇପାରେ ଜଣେ ଶ୍ରମିକର ବା ହୋଇପାରେ ବିରହରିତ୍ ରୋମାଣ୍ଟିକ୍ ମଣିଷର। ମୁଁ ଚାହିଁ ନାହିଁ ଆପଣଙ୍କ ଘନକୃଷ୍ଣ କେଶ ଧଳା ହେଉ। ମୁଁ ଚାହେଁ ନାହିଁ ଆପଣଙ୍କ ଚାଲି ଓ ସେ ପ୍ରସିଦ୍ଧ 'ସ୍ୱାକ୍ଷର' ବଦଳୁ। ମୁଁ ଚାହେଁ ନାହିଁ ଆପଣଙ୍କ ଟିପ୍ ଟପ୍ ଡ୍ରେସ୍ ସେନ୍ସ ବଦଳୁ। ମୁଁ ଚାହେଁ ଆପଣ ଅନର୍ଗଳ କହୁଥାନ୍ତୁ ଓ ପୃଷ୍ଠା ପରେ ପୃଷ୍ଠା ଲେଖୁଥାନ୍ତୁ। ମୁଁ ଚାହେଁ ମୋର ପିଲାଦିନର ସେ 'ବ୍ଲୁ ହରିକେନ୍' ସମୟର ସୁଦୀର୍ଘ କରିଡର୍‌ରେ ପହଁରି ଚାଲିଥାଉ, ମୁଁ ଦେଖୁଥାଏଁ।

ବାଗର୍ଥ
ଏନ୍-୨/୨୬, ଆଇ.ଆର୍.ସି.ଭିଲେଜ
ଭୁବନେଶ୍ୱର-୧୫

# ଜୀବେତ୍ ଶରଦଃ ଶତମ୍

**ଡ. ଫନୀ ମହାଂତି**

ମର୍ଯ୍ୟାଦାଜନକ କେଂଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ଆମ ଭାଷା-ସାହିତ୍ୟର ଅନ୍ୟତମ ପ୍ରଥିତଯଶା ସମାଲୋଚକ, କୃତବିଦ୍ୟ ନାଟ୍ୟକାର, ବିଶିଷ୍ଟ ଅନୁବାଦକ ଓ ଔପନ୍ୟାସିକ ତଥା ବହୁଚର୍ଚ୍ଚିତ ଶିକ୍ଷାବିତ୍ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି ଏଇ ଜୁଲାଇ ମାସ ତା୨୩ରିଖରେ ୮୦ ବର୍ଷ ବୟସରେ ପଦାର୍ପଣ କରିବେ। ସୁଖର କଥା ତାଂକ ପରିବାରବର୍ଗ ଏହି ଅବସରରେ ସ୍ୱସ୍ତି ପ୍ରିମିଅମ୍ ହୋଟେଲ୍‌ରେ ୨୧ ତାରିଖ ପୂର୍ବାହ୍ନରେ ଏକ ସାରସ୍ୱତ ବଂଧୁ ମିଳନର ଆୟୋଜନ କରି ଜନ୍ମଦିନ ଉତ୍ସବ ପାଳନ କରିବାକୁ ମନ ବଳାଇଛନ୍ତି। ପ୍ରତିଭା ପୂଜାର ପର୍ବ ଆମ ରାଜ୍ୟରେ ଦିନକୁ ଦିନ ନିଶ୍ଚିହ୍ନ ହୋଇ ଆସୁଥିବାବେଳେ ପରିବାରବର୍ଗଂକ ଏହି ସାଧୁ ଉଦ୍ୟମ ନିଶ୍ଚୟ ଅଭିନଂଦନୀୟ। ବୟସ୍କ ଲେଖକମାନେ ଜୀବଦ୍ଦଶାରେ ଥାଉ ଥାଉ କେହି ସେମାନଂକୁ ଆଡ଼ ଆଖିରେ ଋହୁଁ ନାହାଂତି। ତରୁଣ ଲେଖକମାନେ ଏଥିପ୍ରତି ନିଃସ୍ପୃହ, ସରକାର ଉଦାସୀନ, ବେସରକାରୀ ସଂସ୍ଥା ଓ ବ୍ୟକ୍ତିବିଶେଷ ମଧ ତଦ୍ରୂପ। ବ୍ୟକ୍ତିଗତ ସ୍ୱାର୍ଥ ଥିବାଯାଏଁ କେହି କେହି ମନେ ପକାଂତି, ସ୍ୱାର୍ଥ ହାସଲ ପରେ ଯିଏ ଯାହା ବାଟରେ। ସଂପର୍କ, ସଦ୍‌ଭାବ, ପ୍ରେମ ଓ ମମତାର କୌଣସି ମୂଲ୍ୟ ଥିବାପରି ଅବବୋଧ ହେଉନାହିଁ। ଈର୍ଷା, ଅସୂୟା, ଅହଂକାର ଓ ପରଶ୍ରୀକାତରତାରେ ଆମେ ଏଭଳି ଜର୍ଜ୍ଜରିତ ଯେ ତାର ପଟାଂତର ନାହିଁ। ଏସବୁ ସତ୍ତ୍ୱେ ଯେଉଁ ଆତ୍ମୀୟ-ସ୍ୱଜନ ଓ ଅଳ୍ପ କେତେକ ସ୍ନେହକାଂଗାଳ ଲୋକେ ସ୍ୱତଃପ୍ରବୃତ୍ତ ଭାବେ ନିଜକୁ ଏଇ କାର୍ଯ୍ୟକ୍ରମରେ ସାମିଲ କରଂତି ସେମାନେ ଧନ୍ୟବାଦର ପାତ୍ର। ଏମିତି ଏକ ଶୁଭ ଅବସରରେ ସତୀର୍ଥମାନଂକ ଗହଣରେ ଜଣେ ସାରସ୍ୱତ ସାଧକଂକୁ ଭେଟିବା, ପରିସର ଭିତରେ ଭାବ ବିନିମୟ କରିବା, ହସଖୁସିରେ ସମୟ କାଟିବା କମ୍ ବଡ଼କଥା ନୁହେଁ।

ପ୍ରଫୁଲ୍ଲ ବାବୁ ଜଣେ ସ୍ପଷ୍ଟବାଦୀ ସ୍ୱର୍ଦ୍ଧିତ ମଣିଷ। ତାଂକ ଗ୍ୟାଂନ ଗାରିମାର ପଟାଂତର ନାହିଁ। ଜଣେ ଉତ୍ତମ ଶିକ୍ଷକ ଭାବେ ସେ ସାରା ରାଜ୍ୟରେ ସୁପରିଚିତ। ସାହିତ୍ୟର ବିଭିନ୍ନ ବିଭାବରେ ଲେଖନୀ ଚାଳନା କରି ସେ ବହୁ ଉଚ୍ଚକୋଟୀର ନାଟକ, ଉପନ୍ୟାସ, ସମାଲୋଚନା ଗ୍ରଂଥ ରଚନା କରିଛଂତି। ନିରପେକ୍ଷ ଓ ନିର୍ଭୀକ ସମାଲୋଚକ ଭାବେ ତାଂକର ସୁଖ୍ୟାତି ରହିଛି। ଆଧୁନିକତାର ପରିଭାଷା ସଂପର୍କରେ ତାଂକର ମତ ଅନ୍ୟମାନଂକଠାରୁ ଭିନ୍ନ ଓ ସ୍ୱତଂତ୍ର। ସର୍ଜନଶୀଳ ସାହିତ୍ୟର ସମାଲୋଚନା ଲେଖିଲା ବେଳେ ସେ ସ୍ରଷ୍ଟାର ପଦମର୍ଯ୍ୟାଦା, ସାମାଜିକ ପରାକାଷ୍ଠା ଓ ପଦପଦବୀ ପ୍ରତି ଦୃଷ୍ଟି ଦିଅଂତି ନାହିଁ, ବରଂ ତା'ର ସୃଷ୍ଟିର ବୈଭବ ଓ ବୈଚିତ୍ର୍ୟ ପ୍ରତି ବିଶେଷ ଦୃଷ୍ଟି ଦେଇ ଜଣେ ନିରପେକ୍ଷ ସମାଲୋଚକର ଦାୟିତ୍ୱ ନିର୍ବାହ କରିଥାଂତି। ସେ ଏକାଧାରରେ ନିରପେକ୍ଷ, ନିର୍ଭୀକ ଓ ସଂବେଦନଶୀଳ।

ପ୍ରଫୁଲ୍ଲ ମହାଂତି (ଭାଇ)ଂକ ସହ ମୋର ସଂପର୍କ ଚାରିଦଶକରୁ ଅଧିକ କାଳ ହୋଇଥିଲେ ବି ବେଳେବେଳେ ବହୁବିଧ କାରଣରୁ କମ୍ ତିକ୍ତ ହେଉଥିଲେ ବି ମୁଖ୍ୟତଃ ମଧୁର କୋମଳ ଶାଂତ। ଆମ ଭିତରେ ରକ୍ତର ସଂପର୍କ ନଥିଲେ ବି ରୁଚିର ସଂପର୍କରେ ଆମେ ଦୁହେଁ ବଂଧା। ବହୁ ସାରସ୍ୱତ ସମାରୋହରେ ଆମେ ଗୋଟିଏ ମଂଚରେ ଏକାଠି ରହିଆସିଛୁ। ନିଜର ବକ୍ତବ୍ୟ ରଖିଲାବେଳେ ସେ ପ୍ରାୟ ନୂଆ ନୂଆ ତତ୍ତ୍ୱ ଓ ତଥ୍ୟର ପରିବେଷଣ କରି ପ୍ରଶଂସାର ପାତ୍ର ହୋଇଥାଂତି।

ଭାରି ଖୁସି ମିଜାସର ମଣିଷ ସିଏ। ବୟସ ନିର୍ବିଶେଷରେ ସମସ୍ତଂକ ସାଂଗେ ମିଶି ଯାଆଂତି। ଭଲ ମୁଡ୍‌ରେ ଥିଲାବେଳେ ଭଂଜ, କବିସୂର୍ଯ୍ୟଂକ ରଚନାର କିଛି ପଦ ସୁଲାଳିତ ସୁରରେ ଗାଇ ସେ ବଂଧୁମାନଂକୁ ପ୍ରଲୁବ୍ଧ କରଂତି। ସମୟାନୁବର୍ତ୍ତିତାର ସେ ଏକ ଜ୍ୱଳଂତ ଉଦାହରଣ। ନିଂଦା ଓ ପ୍ରଶଂସାରେ ସେ ଭାଂଗି ପଡ଼ଂତିନି କି, ଉଚ୍ଛ୍ୱସିତ ହୁଅଂତି ନାହିଁ।

ପ୍ରଫୁଲ୍ଲ ଭାଇ ଶହେ ଶରଦ ହସଖୁସିରେ ଜିଅଂତୁ। ବାଗ୍‌ଦେବୀଂକ ବରପୁତ୍ର ଭାବେ ସୃଜନ କ୍ରିୟାରେ ଅବଶିଷ୍ଟ ସମୟ ବିନିଯୋଗ କରଂତୁ। ଆମ କାଳଖଣ୍ଡରେ ଲେଖାଯାଉଥିବା ସାହିତ୍ୟର ନବ ମୂଲ୍ୟାୟନ କରଂତୁ। ତାଂକ ନିଜର ଲେଖାର ନବ ଦିଗଂତର ପୃଷ୍ଠା ଅଚିରେ ଉନ୍ମୋଚିତ ହେଉ। ଏହି ଅବସରରେ ତାଂକର ଦୀର୍ଘ ନିରାମୟ ସୃଜନଶୀଳ ଜୀବନ ପାଇଁ ମୁଁ ଶ୍ରୀ ଜଗନ୍ନାଥଂକୁ ପ୍ରାର୍ଥନା କରୁଛି। ଇଚ୍ଛାର ପୃଥିବୀରେ ସ୍ପର୍ଧାର ସହିତ ଚଳଚଂଚଳ ଓ କ୍ରିୟାଶୀଳ ହୋଇ ସେ ଚିରକାଳ ରହିଥାଂତୁ ଏ ଧରାଧାମରେ।

ପୁଷ୍ପଧନୁ, ବମିଖାଲ, ଭୁବନେଶ୍ୱର

# ଡଃ ପ୍ରଫୁଲ୍ଲ କୁମାର ମହାନ୍ତିଙ୍କୁ ଅଶୀ ଛୁଇଁଲା

ଶାନ୍ତନୁ କୁମାର ଆଚାର୍ଯ୍ୟ

ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି ଓଡିଶା ସରକାରଙ୍କର ଉଚ୍ଚ ଶିକ୍ଷା ବିଭାଗର ଜଣେ ବରିଷ୍ଠ ପ୍ରଫେସର ଏବଂ ପ୍ରଶାସକ ଭାବେ ମୋର ସତୀର୍ଥ। ବୟସରେ କନିଷ୍ଠ ହେଲେ ମଧ୍ୟ ସେ ମୋର ଜଣେ ଏକାନ୍ତ ଅନ୍ତରଙ୍ଗ ବନ୍ଧୁ । ତାଙ୍କ ସହିତ ମନଖୋଲା କଥାବାର୍ତ୍ତା କରିବାକୁ ମତେ ସଂଯତ ହେବାକୁ ପଡେନାହିଁ। ପୁଣି ତାଙ୍କ ବିଚାର ପ୍ରତି ଅସ୍ଥା ବିଶ୍ୱାସ ଥିବା ଯୋଗୁ ତାଙ୍କର ବୌଦ୍ଧିକ ମତାମତକୁ ମଧ୍ୟ ମୁଁ ନିର୍ବିବାଦରେ ଗ୍ରହଣ କରିଥାଏ। ଉଚ୍ଚ ଶିକ୍ଷା ବିଭାଗରେ ଇଂରେଜୀ ଭାଷା ସାହିତ୍ୟର ସେ କେବଳ ଜଣେ ପ୍ରଫେସର ନୁହନ୍ତି; ସୃଜନଶୀଳ ଓଡିଆ ସାହିତ୍ୟ କ୍ଷେତ୍ରକୁ ତାଙ୍କର ବିଶେଷ ଅବଦାନ ହେତୁ ତାଙ୍କ ସହିତ ମୋର ବୌଦ୍ଧିକ ଏବଂ ବ୍ୟକ୍ତିଗତ ସଂପର୍କ ଗଢି ଉଠିପାରିଛି ବହୁ ପୂର୍ବରୁ। ଦୀର୍ଘ ବର୍ଷର ଏହି ସଂପର୍କ ବର୍ତ୍ତମାନ ପରିଣତ ହୋଇଛି- ତାଙ୍କର ଅଶୀତୀ ଜନ୍ମ ଉତ୍ସବର ଉଲ୍ଲାସ ପରିପ୍ରକାଶ ପାଇଁ ଏଇ କ୍ଷୁଦ୍ର ଲେଖାଟିର ଅଭିବ୍ୟକ୍ତିରେ।

ପ୍ରଫୁଲ୍ଲବାବୁ ୧୯୬୨ରେ ଓଡିଶା ସରକାରଙ୍କ ଶିକ୍ଷା ବିଭାଗରେ, ଅଧ୍ୟାପକ ଭାବେ ରେଭେନ୍ସା କଲେଜରେ ଯୋଗ ଦେଇଥିଲେ। ସେତେବେଳେ ମୁଁ ଭୁବନେଶ୍ୱରରେ ବି.ଜେ.ବି କଲେଜର ରସାୟନ ବିଭାଗରେ ଅଧ୍ୟାପନା କରୁ ଥାଏ । ସେଇ ବର୍ଷ, ୧୯୬୨ ରେ, ମୋର ଉପନ୍ୟାସ "ନର-କିନ୍ନର" ପ୍ରକାଶ ପାଇଲା । ଏହି ଉପନ୍ୟାସ ପ୍ରକାଶ ପାଇବା ପରେପରେ ଉଭୟ ଓଡିଆ ଓ ଇଂରେଜୀ ସାହିତ୍ୟ ବିଭାଗର ଅଧ୍ୟାପକୀୟ ତଥା ସମାଲୋଚକୀୟ ଦୃଷ୍ଟି ମୋ ପ୍ରତି ଆକର୍ଷିତ ହେଲା। ଉଭୟ ବିଭାଗର ଏକାଡେମିକ ମହଲର ବରିଷ୍ଠ କନିଷ୍ଠ ଅଧ୍ୟାପକ ଓ ଛାତ୍ରମାନଙ୍କ ସହିତ ବୌଦ୍ଧିକ ସଂପର୍କ ସ୍ଥାପନ ପାଇଁ ସୁଯୋଗର ଦ୍ୱାର ମଧ୍ୟ ମୋ ପାଇଁ ସେତେବେଳେ ଖୋଲିଯାଇଥିଲା। ସେହି ପର୍ଯ୍ୟାୟରେ ଇଂରେଜୀ ବିଭାଗର କେତେଜଣ ସମଝଦାର ପାଠକ ଓ ସମାଲୋଚକ ବନ୍ଧୁ

ମୁଁ ଆବିଷ୍କାର କରିପାରିଥିଲି । ସେମାନଙ୍କ ଭିତରେ ସର୍ବାଧିକ ବିଚକ୍ଷଣ ଯୁବ ଅଧ୍ୟାପକ ଥିଲେ ଶ୍ରୀ ପ୍ରଫୁଲ୍ଲ କୁମାର ମହାନ୍ତି । ତାଙ୍କ ସହିତ ମୋର ପରିଚୟ ସେଇ ୧୯୬୦ ଦଶକରୁ ଆରମ୍ଭ ହୋଇ ପରିପୁଷ୍ଟ ହୋଇ ଆସିଛି ଏଯାବତ -ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ କାଳ ଧରି ।

ପ୍ରଫୁଲ୍ଲ ବାବୁ ଇଂରେଜୀ ସାହିତ୍ୟର ଛାତ୍ର ହୋଇଥିଲେ ମଧ୍ୟ ଓଡିଆ ସାହିତ୍ୟକୁ ତାଙ୍କର ଅବଦାନ ଅସାମାନ୍ୟ । ସେ ଏକାଧାରରେ ଜଣେ କବି, ନାଟ୍ୟକାର, ଗାଳ୍ପିକ, ପ୍ରାବନ୍ଧିକ , ସମାଲୋଚକ ତଥା ଶିଶୁସାହିତ୍ୟିକ । ମୂଳରୁ ମୂଳରୁ ସେ ଯଥେଷ୍ଟ ଲୋକପ୍ରିୟତା ଏବଂ ସାହିତ୍ୟିକ ସୁଖ୍ୟାତି ଅର୍ଜନ କରିଥିଲେ ତାଙ୍କ ରଚିତ ନାଟକ ଗୁଡିକର ସଫଳ ମଂଚାୟନ ପାଇଁ । କଳାଜହ୍ନ, ଝରା କୁହେଳି ମଲା ଆକାଶ ଇତ୍ୟାଦି ଚାରିଖଣ୍ଡ ନାଟକ ପ୍ରକାଶିତ ହେବା ସହିତ କ୍ଷୁଦ୍ରଗଳ୍ପ, କବିତା, ପ୍ରବନ୍ଧ ସମାଲୋଚନା ଭ୍ରମଣ ସାହିତ୍ୟ, ଶିଶୁ ସାହିତ୍ୟ ଇତ୍ୟାଦି ବିଭିନ୍ନ ବିଭାଗରେ ତାଙ୍କର ସୃଜନଶୀଳତା ସମୟକ୍ରମେ ଆତ୍ମ ପ୍ରକାଶ କରିଛି । ସେହି ଭିତରେ ତାଙ୍କର ଛଅ ଖଣ୍ଡ ସମାଲୋଚନା ପୁସ୍ତକ ମଧ୍ୟ ପ୍ରକାଶିତ ହୋଇଛି ଏବଂ ସେସବୁ ଭିତରୁ ସର୍ବାଧିକ ଗୁରୁତ୍ୱପ୍ରାପ୍ତ ପୁସ୍ତକଟି ହେଉଛି "ଭାରତୀୟ ସଂସ୍କୃତି ଓ ଭଗବତ ଗୀତା " । ଏହି ପୁସ୍ତକ ଲାଗି ତାଙ୍କୁ ମଧ୍ୟ ପ୍ରାପ୍ତ ହୋଇଚି କେନ୍ଦ୍ର ସାହିତ୍ୟ ଏକାଡେମୀର ସମ୍ମାନସୁଚକ "ସାହିତ୍ୟ ଏକାଡେମୀ"ପୁରସ୍କାର । ଓଡିଆ ସାହିତ୍ୟକୁ ଏହି ବିପୁଳ ସୃଜନଶୀଳ ଅବଦାନ ସହିତ ନିଜର ବୃତ୍ତିଗତ ବିଦ୍ୟା ଇଂରେଜୀ ସାହିତ୍ୟକୁ ମଧ୍ୟ ତାଙ୍କର ଅବଦାନ ଅସାମାନ୍ୟ । ସେସବୁ ମଧ୍ୟରେ ରହିଛି ଗଭୀର ଦାର୍ଶନିକ ଚିନ୍ତା ଉଦ୍ରେକକାରୀ ଏବଂ ଜ୍ଞାନ ଭିତ୍ତିକ ଆଲୋଚନା ଏବଂ ସମାଲୋଚନା ମୂଳକ ବିଦ୍ୟାଚର୍ଚ୍ଚା ଯାହା ଜଣେ ଆନ୍ତର୍ଜାତିକ ମାନର ବିଶ୍ୱବିଦ୍ୟାଳୟ ପ୍ରଫେସର ପାଇଁ ମୌଳିକ କର୍ତବ୍ୟ । ଏହି ବିଭାଗରେ ତାଙ୍କ ରଚିତ ପୁସ୍ତକ ଗୁଡିକର କେବଳ ଶୀର୍ଷକ ଗୁଡିକୁ ଲକ୍ଷ୍ୟକଲେ ହିଁ ଲେଖକଙ୍କର ବୌଦ୍ଧିକ ଗଭୀରତା ଓ ମନନଶୀଳତାର ଆକଳନ ପାଇଁ ଯଥେଷ୍ଟ । ଉଦାହରଣ ସ୍ୱରୂପ କେତୋଟି ପୁସ୍ତକର ଶୀର୍ଷକ ଏଠାରେ ଉଲ୍ଲେଖ କରାଯାଇପାରେ- Religion , Democracy and other Reflections; Thoughts and Impulse; Stories from Sarala's Mahabhara; Ideas and Skill; Quiet flows the Mahanadi(Ed);Appreciating Poetry(Criticism.Communication Skill ( for School Teachers ); Festivals of Orissa;Post-Independence Oriya Novel; Luminous Illusions(A collection of Poems,Reality

Revisited(Essays) ଏବଂ ଏହା ବ୍ୟତୀତ ଇଂରେଜୀରୁ ଓଡିଆ ଭାଷାକୁ ଅନୁବାଦିତ History of Kannada Literature ଇତ୍ୟାଦି ବହୁ ସଂଖ୍ୟକ ପୁସ୍ତକ ।

ପ୍ରଫୁଲ୍ଲ ବାବୁ ଆମ ସମୟର ଜଣେ ଉଚ୍ଚକୋଟୀର ଶିକ୍ଷାବିତ ତଥା ଅସାମାନ୍ୟ ବୌଦ୍ଧିକ ପ୍ରତିଭା ସଂପନ୍ନ ବ୍ୟକ୍ତିତ୍ୱ । ଭାରତବର୍ଷ ସ୍ୱାଧୀନ ହେବା ପରେ ଏ ଦେଶର ଜାତୀୟ ଶିକ୍ଷାନୀତିର ମୌଳିକ ପରିବର୍ତ୍ତନ ଲାଗି ତତକାଳିନ ରାଷ୍ଟ୍ରପତି ସାର୍ବେପଲ୍ଲୀ ରାଧାକ୍ରିଷ୍ଣନ କମିସନ ଠାରୁ ଆରମ୍ଭ କରି ବହୁବହୁ ଶିକ୍ଷା କମିସନ ଅତୀତରେ ବସିଛନ୍ତି ଏବଂ ଏବେ ମଧ୍ୟ ବସୁଛନ୍ତି । କିନ୍ତୁ, ସବୁ ଶିକ୍ଷା କମିସନଙ୍କର ସମ୍ମିଳିତ ସୁପାରିସ ମୂଳରେ ଗୋଟିଏ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ରହିଥିବା ଲକ୍ଷ୍ୟ କରାଯାଇ ଆସିଛି । ସେହି ଆଭିମୁଖ୍ୟର ସ୍ୱରୂପଟି କଣ ? ଏକଥା ନିର୍ବିବାଦରେ କୁହାଯାଇ ପାରେ ଯେ ତାହା ହେଉଛି- ସ୍ୱାଧୀନ ଭାରତର ଉଚ୍ଚଶିକ୍ଷାର ଆଧୁନୀକୀକରଣ । କିନ୍ତୁ ଆଧୁନୀକୀ କରଣର ସ୍ୱରୂପ ବାସ୍ତବରେ କଣ ଓ ତାହା କେଉଁ ଉପାୟରେ ହାସଲ କରାଯାଇପାରେ- ଏହାହିଁ ଜଣେ ଶିକ୍ଷକର ଚିରନ୍ତନ ସମସ୍ୟା । ଏ ସମସ୍ୟାକୁ ନେଇ ସ୍ୱାଧୀନତା ପରଠାରୁ ଆଜି ପର୍ଯ୍ୟନ୍ତ ଦେଶର ଶିକ୍ଷକ,ଶିକ୍ଷାବିତ ତଥା ଗଣତାନ୍ତ୍ରିକ ପଦ୍ଧତିରେ ନିର୍ବାଚିତ ଶାସକ, ପ୍ରଶାସକମାନଙ୍କ ଭିତରେ ଦୁର୍ଲଂଘ୍ୟ ମତାନ୍ତର ରହିଛି । ସେ ମତାନ୍ତରର ମୂଳ ହେଉଛି ଶିକ୍ଷାର ମାଧ୍ୟମ ନିର୍ଦ୍ଧାରଣ । ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ଉପନିବେଶବାଦର ଐତିହାସିକ ଚାପରୁ ମୁକ୍ତ ହେବା ସତ୍ୱେ ସ୍ୱଧୀନ ଭାରତରେ ଶିକ୍ଷାର ମାଧ୍ୟମ କଣ ହେବା ଉଚିତ – ଇଂରେଜୀ ବା ମାତୃଭାଷା, ବିଗତ ସାତ ଦଶନ୍ଧି ଧରି ସ୍ୱାଧୀନତା ପ୍ରାପ୍ତି ସତ୍ୱେ ଭାରତର ଶିକ୍ଷାନୀତିରେ କୌଣସି ସ୍ଥାୟୀ ସମାଧାନ ହୋଇପାରିଲା ନାହିଁ ।

ଏହି ପରିପ୍ରେକ୍ଷୀରେ, ଜଣେ କଲେଜ ଶିକ୍ଷକ ଭାବେ, ପ୍ରଫେସର ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ଆଭିମୁଖ୍ୟ ସ୍ୱତଃ ଦୃଷ୍ଟିରେ ପଡେ । ପ୍ରଫୁଲ୍ଲବାବୁ ଇଂରେଜୀ ସାହିତ୍ୟ ବିଭାଗରେ ଅଧ୍ୟାପନା ଏବଂ ଗବେଷଣା କରନ୍ତି । କିନ୍ତୁ ତାହା ସହିତ ମାତୃଭାଷା ଓଡିଆ ସାହିତ୍ୟର ସମୃଦ୍ଧି ଏବଂ ତାହାର ଆଧୁନୀକୀକରଣ ଲାଗି ଜଣେ ଓଡିଆ ସାହିତ୍ୟର ପ୍ରଫେସରଙ୍କ ତୁଳନାରେ ଆଦୌ କମ କାମ କରିନାହାନ୍ତି । ତାଙ୍କ ରଚିତ ଓଡିଆ ସାହିତ୍ୟର ପୁସ୍ତକ ଉଭୟ ସଂଖ୍ୟା ଏବଂ ଗୁଣାତ୍ମକତା ଦୃଷ୍ଟିରୁ ଓଡିଆ ବିଭାଗର ଗବେଷକ ଅଧ୍ୟାପକଙ୍କ ଅବଦାନ ସହିତ ନିଶ୍ଚିତ ଭାବେ ତୁଳନୀୟ । କେବଳ ସେତିକି ନୁହେଁ-ଏହି ତୁଳନାତ୍ମକତାର ଅନ୍ୟ ଏକ ଦିଗ ମଧ୍ୟ ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

ଭାରତରେ ବ୍ରିଟିଶ ଶାସନ କାଳରେ ସ୍କୁଲ କଲେଜ ଶିକ୍ଷାର ମାଧ୍ୟମ ରୂପେ ଇଂରେଜୀ ଭାଷାକୁ ଶିକ୍ଷାର ମାଧ୍ୟମ ରୂପେ ପ୍ରବର୍ତ୍ତନ କରାଯାଇଥିଲା। ୧୮୩୫ ଠାରୁ ଲର୍ଡ ମ୍ୟାକଲେଙ୍କ ଶିକ୍ଷାନୀତି ଭାରତରେ ପ୍ରଚଳିତ ହୋଇଥିଲା। ତଦନୁଯାୟୀ ଭାରତର ସ୍କୁଲ କଲେଜରେ ସେପର୍ଯ୍ୟନ୍ତ ପ୍ରଚଳିତ ସଂସ୍କୃତ ଓ ପାର୍ଶୀ ଭାଷାର ମାଧ୍ୟମକୁ ରଦ୍ଦ କରି ତା ସ୍ଥାନରେ ଇଂରେଜୀ ଭାଷାର ପ୍ରଚଳନ ଆରମ୍ଭ ହେଲା। ୧୮୩୫ରୁ ୧୯୪୭ – ହାରାହାରି ଗୋଟାଏ ଶତାବ୍ଦୀ ଅନ୍ତରାଳରେ ଇଂରେଜୀ ଭାଷାର ପ୍ରଚାର ପ୍ରସାର ତାର ରାଜନୈତିକ ଅଭୀଷ୍ଟ ସିଦ୍ଧି ସହିତ ଗୋଟିଏ ପ୍ରଭାବଶାଳୀ ଅଣଭାରତୀୟ ମନୋଭାବପନ୍ନ ଶିକ୍ଷିତ ଗୋଷ୍ଠୀ ମଧ୍ୟ ଉତ୍ପନ୍ନ କରିଥିଲା। ଏହି ଶିକ୍ଷିତ ଗୋଷ୍ଠୀ ଭାରତର ସ୍ୱାଧୀନତା ସଂଗ୍ରାମ କାଳରେ ମଧ୍ୟ ଜାତୀୟତାବାଦୀ ଚିନ୍ତାଧାରାର ବିପକ୍ଷବାଦୀ ଏକ ଶକ୍ତିଶାଳୀ ଗୋଷ୍ଠୀ ସୃଷ୍ଟି କରିପାରିଥିଲା । ଏହି ଗୋଷ୍ଠୀ ସ୍କୁଲ କଲେଜରେ ଆଧୁନିକ ଶିକ୍ଷାର ବାର୍ତ୍ତାବହ ଭାବେ ନିଜକୁ ପରିଚିତ କରାଇବାକୁ ମଧ୍ୟ ସମର୍ଥ ହୋଇଥିଲା। ସ୍ୱାଧୀନତା ପରବର୍ତ୍ତୀ ସମୟରେ ସୁଦ୍ଧା ସେମାନେ ନିଜକୁ ଜାତୀୟତାବାଦୀ ମୁଖ୍ୟଧାରା ଠାରୁ ଅଲଗା କରି ପରିଚିତ କରାଇବାକୁ ପଶ୍ଚାତପଦ ହେଉନଥିଲେ। ଓଡିଶାର ଶିକ୍ଷାବିଭାଗରେ ଇଂରେଜୀ ଶିକ୍ଷକମାନଙ୍କର ମାତୃଭାଷା ଓଡିଆ ପ୍ରତି ଉନ୍ନାସିକତା ସ୍ୱାଧୀନତା ପରବର୍ତ୍ତୀ କାଳରେ ବି ସଂପୂର୍ଣ୍ଣ ଅବ୍ୟାହତ ରହି ଆସିଥିଲା। କିନ୍ତୁ ସେହି ପ୍ରତିକୂଳ ପାଣିପାଗ ସତ୍ତ୍ୱେ ଓଡିଶାର ଉଚ୍ଚଶିକ୍ଷା ବିଭାଗ ଅନ୍ତର୍ଗତ ଇଂରେଜୀ ବିଭାଗର କେତେଜଣ ଛାତ୍ର ତଥା ଯୁବ-ଶିକ୍ଷକ ଯୁଦ୍ଧୋତ୍ତର ବିଶ୍ୱରେ ସଦ୍ୟ ସୃଷ୍ଟି ହୋଇଥିବା ଆନ୍ତର୍ଜାତିକ ଚିନ୍ତାଧାରା ସଂପନ୍ନ ଟି.ଏସ. ଏଲିଏଟିୟ କାବ୍ୟଧାରାକୁ ଓଡିଆ ଭାଷାସାହିତ୍ୟରେ ପ୍ରୟୋଗ ଓ ପରୀକ୍ଷଣରେ ସଫଳତା ଅର୍ଜନ କରିଥିଲେ। ସେମାନଙ୍କ ଭିତରେ କବି ଗୁରୁପ୍ରସାଦ ମହାନ୍ତି ଏବଂ ପରେପରେ ରମାକାନ୍ତ ରଥ ପ୍ରଭୃତି କବି ଲେଖକଙ୍କ ଆବିର୍ଭାବ ଯୋଗୁ ଆଧୁନିକ ଓଡିଆ ସାହିତ୍ୟର ମର୍ଯ୍ୟାଦାବନ୍ତ ଅଭିବୃଦ୍ଧି ଘଟିଥିବା ବିଷୟ ଇତିହାସ ସମର୍ଥିତ ସତ୍ୟ।

ଡଃ ପ୍ରଫୁଲ୍ଲ କୁମାର ମହାନ୍ତି ଉପରୋକ୍ତ ପର୍ଯ୍ୟାୟର ଜଣେ କୃତବିଦ ଇଂରେଜୀ ଅଧ୍ୟାପକ ଯାହାଙ୍କର ଓଡିଆ ଭାଷାରେ ରଚିତ ବହୁମୁଖୀ ପ୍ରତିଭା ସଂପନ୍ନ ସାହିତ୍ୟ କୃତୀକୁ ମୂଲ୍ୟାୟନ କରାଗଲେ ତାଙ୍କୁ କଦାପି ଜଣେ ଉନ୍ନାସିକ ବୁଦ୍ଧିଜୀବୀ ବୋଲି ନାମିତ କରି ହେବନାହିଁ। ଭାରତୀୟ ସଭ୍ୟତା, ସଂସ୍କୃତି, ସାହିତ୍ୟ ଏବଂ ଦର୍ଶନ କ୍ଷେତ୍ରରେ ତାଙ୍କର ସଂବେଦନଶୀଳ ପ୍ରବେଶ, ମନନଶୀଳ ଯୋଗଦାନ ଏବଂ ହାର୍ଦ୍ଦିକ ବୁଝାମଣାର ବହୁ ପ୍ରମାଣ ମିଳେ ତାଙ୍କ ରଚିତ ସାହିତ୍ୟ ଭଣ୍ଡାରରେ ଗଚ୍ଛିତ ସୃଷ୍ଟି ତାଲିକାରେ। ସେହି

ପରିପ୍ରେକ୍ଷୀରେ ଜ୍ୱଳନ୍ତ ଉଦାହରଣ ହେଉଛି ତାଙ୍କ ରଚିତ ନିବନ୍ଧ ମାଳା ଯହିଁରେ ଏକାନ୍ତ ଉଲ୍ଲେଖନୀୟ ଗ୍ରନ୍ଥ ହେଉଛି -"ଭାରତୀୟ ସଂସ୍କୃତି ଓ ଭଗବତ ଗୀତା ", ଯାହାର ରଚନା ପାଇଁ ସେ ଅଳଂକୃତ ହୋଇଛନ୍ତି ଭାରତର ସର୍ବୋଚ୍ଚ ରାଷ୍ଟ୍ରୀୟ ପୁରସ୍କାର ସାହିତ୍ୟ ଏକାଡେମୀ ପୁରସ୍କାରରେ।

ଏସବୁ ଆଲୋଚନା ବାହାରେ, ପ୍ରଫୁଲ୍ଲ ବାବୁଙ୍କ ସହିତ ମୋର ସଂପର୍କ କେବଳ ବୃତ୍ତିଗତ ବା ବୌଦ୍ଧିକ ନୁହେଁ। ତାଙ୍କର ପରିବାର ସହିତ ମଧ୍ୟ ଗାଢ ଅନ୍ତରଙ୍ଗତା ସମୟ କ୍ରମେ ଗଢି ଉଠିପାରିଛି ଆମର। ତାଙ୍କର ପତ୍ନୀ ଶ୍ରୀମତୀ ପ୍ରମୋଦିନୀ ହେଉଛନ୍ତି ଓଡିଶାର ପ୍ରଖ୍ୟାତ ଔପନ୍ୟାସିକ ଲକ୍ଷ୍ମୀଧର ନାୟକଙ୍କ କନ୍ୟା। ଲକ୍ଷ୍ମୀଧର ନାୟକଙ୍କର ରଚିତ ବହୁ ଲୋକପ୍ରିୟ ଉପନ୍ୟାସ ଛାତ୍ର ବୟସରେ ଆମେ ପଢିଛୁ ଏବଂ ପ୍ରଭାବିତ ହୋଇଛୁ। ତାଙ୍କ ଉପନ୍ୟାସ "ହା'ରେ ଦୁର୍ଭାଗା ଦେଶ " ଭଳି ଆଧୁନିକ ଉପନ୍ୟାସରୁ ଆନ୍ତର୍ଜାତିକ ଶିଳ୍ପବିପ୍ଳବ ଏବଂ ମାର୍କସବାଦୀ ମାନବିକ ଚିନ୍ତାଧାରାର ପ୍ରାଥମିକ ପରିଚୟ ହୋଇଥିଲା ଆମ ପୀଢିର ଲେଖକମାନଙ୍କର। ବହୁବର୍ଷଧରି ଓଡିଶାର ଶିଳ୍ପ ସହର ରାଉରକେଲାରୁ ତାଙ୍କ ସଂପାଦନାରେ ଏକ ଆଧୁନିକ ସାହିତ୍ୟ ପତ୍ରିକା "ନବପତ୍ର" ପ୍ରକାଶ ପାଉଥିଲା। ଓଡିଆ ସାହିତ୍ୟର ଆଧୁନୀକୀକରଣ ତଥା ଜଗତୀକରଣ ଲାଗି ଏହି ପତ୍ରିକାର ଅବଦାନ ଅନସ୍ୱୀକାର୍ଯ୍ୟ। ଇଂରେଜୀ ସାହିତ୍ୟର ପ୍ରାଧ୍ୟାପକ ପ୍ରଫୁଲ୍ଲ ବାବୁଙ୍କର ଓଡିଆ ସାହିତ୍ୟ ପ୍ରତି ଅହେତୁକ ସମ୍ବେଦନଶୀଳତାର ଅନ୍ୟତମ କାରଣ ଏହି ପାରିବାରିକ ପୃଷ୍ଠଭୂମୀ ହୋଇଥାଇପାରେ ବୋଲି ମନେକରାଯିବା ସ୍ୱାଭାବିକ।

ପ୍ରଫୁଲ୍ଲବାବୁଙ୍କୁ ଅଶୀ ଛୁଇଁଲା। ନିରବଧି କାଳ ଏବଂ ବିପୁଳ ପୃଥ୍ୱୀ ସହିତ ସଂପର୍କ ରଖୁଥିବା ଜଣେ ଆଧୁନିକ କବି ସାହିତ୍ୟିକ ପାଇଁ ସମୟ "କଫି ଚାମଚ"ରେ ମପା ଯାଏନା। ମହାକାଳ ହିଁ ସାରସ୍ୱତ ପରୁଷମାନଙ୍କର ଯଥାର୍ଥ ମାନଦଣ୍ଡ। ଭାରତବର୍ଷର ସେ ଜଣେ ଯଶସ୍ୱୀ ସାରସ୍ୱତ ସନ୍ତାନ। ତାଙ୍କର ଦୀର୍ଘ ଜୀବନ କାମନା କରୁଛି।

***

# ଅଶୀବର୍ଷକୁ ଅସ୍ୱୀକାର

ଶରତ ଚନ୍ଦ୍ର ଶତପଥୀ

**କ**ହୁଛନ୍ତି ଯେ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ଦେହ ଏ ପର୍ଯ୍ୟନ୍ତ ଅଶୀଟି ବର୍ଷର ଖରା ବର୍ଷା ଶୀତ ସ୍ପର୍ଶରେ ପୁରୁଣା ବହି ପରି ଜୀର୍ଣ୍ଣ ଅଥଚ ମହାର୍ଘ ପାଲଟି ଗଲାଣି। ଏହା ସଂପୂର୍ଣ୍ଣ ଲୋକାପବାଦ। ତେଣୁ ଦୁର୍ନିବାର। କିନ୍ତୁ ମୁଣ୍ଡଫଟା ଖରା କି ତାତିଲା ଝାଂଜି ପବନ, ବରଷା ବଢ଼ି, ଝଡ଼ ବତାସ କି ହାଡୁଆ ଶୀତର କୌଣସି ବିବର୍ଣ୍ଣ ସ୍ୱାକ୍ଷର ସେ ନିଜ ଦେହର ସ୍ୱାଭାବିକ ଚିତ୍ରପଟରେ ସୌଂଦର୍ଯ୍ୟହୀନତାର ଦାଗ ପାଲଟି ଯିବାକୁ, ଚଳଂତି ପଚାଶ ଷାଠିଏ ବର୍ଷ ଭିତରେ ପୁରାପୁରି ମନା କରିଦେଇଛନ୍ତି ବୋଲି ମୋର ମନେହୁଏ। ତାଂକର ଏ ପ୍ରକାର ନିର୍ଦ୍ଦେଶନାମା, ଈଶ୍ୱରଂକ ଦୟାରୁ ଚିରସ୍ଥାୟୀ ରହିଥାଉ। ବୁଢ଼ା ବୟସ, ପରିଣତ ଅବସ୍ଥା, ଏପରି ଶବ୍ଦ ଓ ଅଭିବ୍ୟକ୍ତି ତାଂକ ବ୍ୟକ୍ତିଗତ ଜୀବନ ଅଭିଧାନରେ ଲେଖା ନାହିଁ। ଅବଶ୍ୟ ପରିପୂର୍ଣ୍ଣ ସମୟର ପ୍ରତିଷ୍ଠା, ମର୍ଯ୍ୟାଦା ଓ ପୁରସ୍କାର ସେ ସର୍ବଦା ସମ୍ମାନର ସହ ବିନମ୍ର ମୁଦ୍ରାରେ ସ୍ୱୀକାର କରିଆସିଛନ୍ତି।

ମେଦ ମାଂସରେ ଗଢ଼ା ଦେହର କ୍ଷୟିଷ୍ଣୁ ବେହରଣ ତଳେ ଯେଉଁ ଅସଲ ପ୍ରଫୁଲ୍ଲ କୁମାର ଜଣକ ଅବଶ୍ୟ ପ୍ରାଣ ପ୍ରାଚୁର୍ଯ୍ୟ ସହ ଆନଂଦରେ ବସବାସ କରନ୍ତି, ସେ ବଡ଼ ବିଚିତ୍ର ଆତ୍ମାପୁରୁଷ। ସେ ସମୟକୁ ସ୍ୱୀକାର କରନ୍ତି ନାହିଁ, ନିଜକୁ ସମୟର ଅଧୀନସ୍ଥ ପ୍ରଜା ବୋଲି ମନେ କରନ୍ତି ନାହିଁ। ତେଣୁ ସାଂସାରିକ ନ୍ୟାୟରେ ସେ ସମୟର ଗତି ସହ ସଂପୃକ୍ତ ନୁହନ୍ତି। ହାତରେ କେବେ ଘଡ଼ିଟିଏ ବାନ୍ଧନ୍ତି ନାହିଁ। କହନ୍ତି, "ମୁଁ କାହିଁକି ସମୟର କ୍ରୀଡ଼ନକ ପାଲଟିଯିବି ?" ସେ ସଂପୂର୍ଣ୍ଣ ଭାବରେ ଏକ ସମୟୋତ୍ତର ଦୁନିଆର

ସ୍ୱାଧୀନ ଅଧିବାସୀ। ନିଜେ ରାଜା, ନିଜେ ହିଁ ପ୍ରଜା। ସ୍ୱୟଂ ନିୟମର ପ୍ରଣେତା ଓ ପ୍ରୟୋଗକର୍ତ୍ତା। ପୁଣି ନିଜ ପରିପ୍ରେକ୍ଷୀରେ ଜୀବନର ଏକ ଚମତ୍କାର ରାଗ ସଂଗୀତର ସେ ବହ୍ନିଳିତ ସ୍ରଷ୍ଟା, ବିଦଗ୍ଧ ଗାୟକ ଓ ବିମୁଗ୍ଧ ଶ୍ରୋତା। ଦେହର ଅଶୀଟି ବସଂତର ସଂକ୍ଷିପ୍ତ ସଂସ୍କରଣ ତାଙ୍କ ଲାଗି ଅର୍ଥହୀନ କାରଣ ଦେହ, ସମାଜ, ପଦପଦବୀ, ପୁରସ୍କାର, ଶାସନ ଅନୁଶାସନ ଆଦି ବିଭିନ୍ନ ଆବରଣ ଆଢୁଆଳରେ ପ୍ରଫୁଲ୍ଲ କୁମାର ମହାନ୍ତିଂକର ବର୍ଣ୍ଣାଢ୍ୟ ପୃଥିବୀ। ଏକ ଅଂତହୀନ ଚିର ବସଂତର ରାଜ୍ୟ, ଯେଉଁଠି ଇନ୍ଦ୍ରଧନୁର ରଂଗ ଫିକା ପଡ଼େ ନାହିଁ, ପ୍ରଜାପତିର ରଂଗୀନ ଡେଣା ଫୁଲର ସହର ପରିଭ୍ରମଣରେ କ୍ଳାଂତ ହୁଏ ନାହିଁ। ସେଠାରେ କେବଳ ଜୀବନର ଜୟଯାତ୍ରା, ଖୁସିର ମହୋତ୍ସବ, ଉଦ୍‌ବେଳିତ ପ୍ରାଣସତ୍ତାର ସୁଦୀର୍ଘ ପଟୁଆର, ଶଂଖଧ୍ୱନିରେ ପ୍ରକମ୍ପିତ। ତାଂକ ଅଫୁରନ୍ତ ଆନଂଦର ନିଜସ୍ୱ ଦୁନିଆ ଚିରକାଳ ଉଜ୍ଜ୍ୱଳ ରହୁ, ଆମ ସମସ୍ତଂକର ଅଶେଷ ଶୁଭକାମନା।

ମୋର ଧାରଣା ଯଦି କେହି କିଛି ସମୟ କରି ପ୍ରଫୁଲ୍ଲ କୁମାର ମହାଂତିଙ୍କୁ ବୁଝିବାକୁ ଚେଷ୍ଟା କରିବ ତେବେ ତାଂକର ଅନୁଭବ ମୋର ନିଜସ୍ୱ ସିଦ୍ଧାନ୍ତଠାରୁ ଭିନ୍ନ ହେବନାହିଁ ନିଶ୍ଚୟ। ଅବଶ୍ୟ ଏକଥା ସତ ଯେ ଅନ୍ୟକୁ ଠିକ୍ ରୂପେ ବୁଝିପାରିବା ଖୁବ୍ ଜଟିଳ ବ୍ୟାପାର।

ସେ ମୋର ଶିକ୍ଷକ ଥିଲେ କି ନାହିଁ ମୋର ମନେ ନାହିଁ। ମୁଁ ମଧ ତାଂକର ଛାତ୍ର ଥିଲି କି ନାହିଁ ସେକଥା ସେ ମଧ ମନେରଖି ନାହାନ୍ତି। କାରଣ ଧରାବଂଧା ସଂପର୍କର ବୁଢ଼ିଆଣୀ ଜାଲରେ ତାଂକୁ ଧରିରଖିବା ଆଦୌ ସଂଭବ ନୁହେଁ। ସେ କେବଳ ଗୋଟିଏ ସଂପର୍କ ବୁଝନ୍ତି : ମଣିଷ ପ୍ରତି ମଣିଷର ଶ୍ରଦ୍ଧା, ସମ୍ମାନ ଓ ପ୍ରେମର ବିଜଡ଼ିତ ଆବେଗଭରା ସଂପର୍କ। ତେଣୁ ଦୀର୍ଘ ସମୟ ଧରି ଆମର ପରସ୍ପର ଲାଗି ଶ୍ରଦ୍ଧା ଓ ସମ୍ମାନ ଅତୁଟ ରହିଆସିଛି। କେହି ଯଦି ପ୍ରଫୁଲ୍ଲ ବାବୁଙ୍କର ସାମାଜିକ ବା କର୍ମକ୍ଷେତ୍ର ସଂପର୍କିତ ଲୋକମାନଂକର ମନକଥା ତର୍ଜମା କରିବସିବ, ତେବେ ଜଣା ପଡ଼ିଯିବ ଯେ ତାଂକର ପ୍ରକୃତ ଶୁଭେଚ୍ଛୁ ମାନଂକର ସଂଖ୍ୟା ହାତଗଣତି କ୍ଷୁଦ୍ର ସଂସାରରେ ହିଁ ସୀମିତ। କାରଣ କାହାରି ଚିଂତା ଓ ଦ୍ୟୋତନାର ସୂକ୍ଷ୍ମ ସ୍ତରକୁ ଆରୋହଣ କରି ବ୍ୟକ୍ତି ସହ ନିଜକୁ ଯୋଡ଼ି ପାରିବାର ଅର୍ଥ ଯଦି ସଂପର୍କ ହୁଏ, ତେବେ ଖୁବ୍ କମ୍ ମଣିଷ ତାଂକ ସ୍ତର ପର୍ଯ୍ୟଂତ ନିଜକୁ ଉନ୍ନୀତ କରିପାରିବାର ସାମର୍ଥ୍ୟ ଧାରଣ କରଂତି। ପ୍ରଫୁଲ୍ଲ

ବାବୁଂକର ସିଧା ସିଧା କଥା, ସେ ପୁଣି ଅନେକ ସମୟରେ ବାଟୁଳୀ ଭଳି ଟାଣକଥା, ମନର କଥା, ଗୁଣ ଅବିଗୁଣର କଥା - ଏ ସବୁର ସରଳ ଓ ଅନାବିଳ ପ୍ରଗଲ୍‌ଭ ପରିପ୍ରକାଶ। ଅସୂୟା ନାହିଁ, ଅସମତା କି ଅସଂଗତି ନାହିଁ କିଂତୁ ସାଲିସ୍ ମଧ୍ୟ ନାହିଁ କାରଣ କାହାରିଠାରୁ କିଛି ପାଇବାର କି ନେଇଯିବାର ପ୍ରତ୍ୟାଶା ମଧ୍ୟ ନାହିଁ। ସେ ଅତ୍ୟନ୍ତ ପ୍ରଗଲ୍‌ଭ ଓ ପ୍ରାଂଜଳ, ତାରୁଣ ସୁଲଭ ଉଦଗ୍ର ଅନୁସଂଧିତ୍ସାରେ ଆତୁର ନୂଆକଥା ଜାଣିବାକୁ, ନୂଆ ବହିଟିଏ ପଢ଼ିବାକୁ, ମଣିଷକୁ ଚିହ୍ନିବାକୁ ପ୍ରବଳ ଆଗ୍ରହ ଓ ସେଥିଲାଗି ଅଦମ୍ୟ ପ୍ରଚେଷ୍ଟା। ମନକୁ ଛୁଇଁଥିବା, ସୁଖ ଲାଗୁଥିବା କଥାଟିକୁ ସେ ତାଂକର ଘରିପଟର ପୃଥିବୀରେ ବାଂଟିବାକୁ ଆଗ୍ରହୀ - 'ତୁମେ ଏଇଟି ପଢ଼ିଲଣି', 'ସେ ବହିଟି କାହିଁକି ପଢୁନାହଁ', ନପଢ଼ିଲେ କ'ଣ ଜାଣିବ ନିଜେ', 'ପିଲାଂକୁ କ'ଣ ଖାଲି ତୁମକୁ ଶିଖେଇଥିବା ମାଟି ଅବଧାନର ଓଡ଼ାଂକ ଫେଡ଼ାଂକ ଜୀବନସାରା ରଟି କହୁଥିବ, 'ତାଂକୁ ତ ମହାଜଗତର ସ୍ୱପ୍ନ ଶିଖାଇବା ତୁମର ଦାୟିତ୍ୱ କେମିତି ତୁଲେଇବ ?' 'ଅମୁକ ସିନେମା ଦେଖିଲଣି', 'ସେ ଗୀତର ଶାସ୍ତ୍ରୀୟ ରାଗର ବିଶେଷତ୍ୱ ଜାଣିଚ ତ...' ଅଂତହୀନ ଜିଜ୍ଞାସା... ଅସୁମାରୀ ଉପଲକ୍ଷ୍ୟ। ଏ ପ୍ରକାର ବୌଦ୍ଧିକ, ଆତ୍ମିକ ଆକ୍ରମଣ ପରେ, ତାଙ୍କ ଘରିପଟେ କେବଳ ଅସହିଷ୍ଣୁ ନିଂଦୁକ ମାନଂକର ମେଳି ଗହଳି ବସିବ ସିନା, ତାଂକ ସହ ତାଳ ଦେଇ ଦି'କଥା କହି, ଖୁସି ହେବାକୁ ଦି'ଜଣ ମଣିଷ ମିଳିବେ ନାହିଁ। ସହକର୍ମୀ ହିସାବରେ ତାଂକ ସହ କିଛିବର୍ଷ ବିତାଇବାର ସୌଭାଗ୍ୟ ମୋର ହୋଇଥିଲା। ସବୁ ଜ୍ଞାନଗର୍ଭକ, ତାତ୍ତ୍ୱିକ ଆଲୋଚନାରେ ମୁଁ ନିଜେ ସର୍ବଦା ତାଂକ ଠାରୁ ଉପକୃତ ହୋଇଛି। ପ୍ରଫୁଲ୍ଲ ବାବୁଂକ ସହ ଅର୍ଥଶାସ୍ତ୍ରରୁ କାମଶାସ୍ତ୍ର, ଫକୀରମୋହନଂକ ଠାରୁ ସେକ୍‌ସ୍‌ପିଅର, ପିଙ୍ଗଳା ଠାରୁ ଉଦ୍ଧବ ଓ ସିତାର ଠାରୁ ଜାଜ୍ ପର୍ଯ୍ୟଂତ ସବୁକଥା ସୁଂଦର ଭାବରେ ଆଲୋଚନା କରିହୁଏ। କାରଣ ତାଂକର ସବୁକଥାରେ ଆଗ୍ରହ ଓ ବାଳସୁଲଭ ଉଦ୍ଦୀପନା। ଭଲ କଥାଟିଏ ଶୁଣିଲେ ଖୁସି ହେବେ। 'ଚାଲ୍ ଖାଇବାକୁ ଯିବା' ବୋଲି ଡାକ ଛାଡ଼ିବେ। ସବୁଠୁ ମଜାର କଥା ହେଉଛି - ପ୍ରଫୁଲ୍ଲ ବାବୁଂକ ମନ ଭିତରେ ତାଂକ ନିଂଦୁକ, ଅସହିଷ୍ଣୁ ସଂପ୍ରଦାୟ ପ୍ରତି କୌଣସି ରାଗରୋଷ ନଥାଏ। ସେ ମନେରଖନ୍ତି ନାହିଁ ଯେ କିଏ କାହିଁକି କେବେ କ'ଣ କହି ତାଂକୁ ନିଂଦା କରୁଥିଲା କି ମଂଦକଥା କହୁଥିଲା। ସେ କାହାରି ଉପରେ ରାଗ ରଖନ୍ତି ନାହିଁ, କି କାୟମନୋବାକ୍ୟରେ କାହାରି ଅନିଷ୍ଟ ପାଂଚନ୍ତି ନାହିଁ। ତାଂକ ଲାଗି କେହି କଷ୍ଟ ଭୋଗିଛି, କ୍ଷତି ସହିଛି, ବିନା କାରଣରେ ଏମନ୍ତ ଉଦାହରଣ ମିଳିବା ଖୁବ୍ କଠିନ।

ପ୍ରଫୁଲ୍ଲ ବାବୁଂକର ଚେତନା ପୁରୁଷର ଅବାରିତ, ଆଦିମ, ଅକପଟ ଆଗ୍ରହ, ଜୀବନର ସବୁ ଘଟଣା ପ୍ରତି (ଅଘଟଣ, ବିଘଟଣ ମାନଂକୁ ବାଦ ନଦେଇ) ସବୁ ଅଧ୍ୟାୟ ଓ ଉପାଖ୍ୟାନ ପ୍ରତି ଉପଦେ୍ାଘାତ, ଉପକ୍ରମଣିକା ଠାରୁ ଉପସଂହାର ପର୍ଯ୍ୟଂତ ପ୍ରଚଣ୍ଡ ଆଗ୍ରହ ଓ ଅଭିରୁଚି। ତେଣୁ ବୟସର ସୀମା ସରହଦ, ସ୍ଥାନ କାଳ ପାତ୍ର ଇତ୍ୟାଦିର ବିଭେଦ, ବିଷମତା ବା ଗୁଣାତ୍ମକ ପାର୍ଥକ୍ୟ ଭଳି ନିୟାମକ ବା ବିଭାଜକ ମାନଂକୁ ଭୁଲିଯାଇ, ମୁକ୍ତ ଆକାଶର ମେଘ କି ରୌଦ୍ର, କି ତାରକିତ ରାତ୍ରିର ଚଂଦ୍ରାତପ ସୁଶୋଭିତ ଆକାଶକୁ ସମ୍ମୁଖୀନ ହୋଇ ସେ ମୁକ୍ତ କଂଠରେ ଗୀତ ଗାଇପାରନ୍ତି, ସେକ୍‌ସ୍‌ପିଅରଂକ ନାଟକର ସଂଳାପକୁ ଅନର୍ଗଳ ନାଟକୀୟ ଛଟାରେ କହିପାରଂତି ଓ ଗୁରୁପ୍ରସାଦଂକ 'କାଳପୁରୁଷ' କବିତାକୁ ଉଚ୍ଚାଟରେ ଆବୃତ୍ତି କରିପାରନ୍ତି। ତା' ସାଥିରେ ମିଶିଯାଏ ଫକୀର ମୋହନଂକ ଉପନ୍ୟାସ ମାନଂକର ଚିତ୍ର ଓ ଚରିତ୍ରର ବ୍ୟାଖ୍ୟାନ, ବିଶ୍ୱସାହିତ୍ୟ ଠାରୁ ଆରମ୍ଭ କରି ପ୍ରାଂନ୍ତୀୟ କୃତି ମାନଂକରେ ଉଲ୍ଲିଖିତ ବହୁ ଉପାଖ୍ୟାନ ଓ ପଂକ୍ତି ମାନଂକର ପର୍ଯ୍ୟାଲୋଚନା, ପୁଣି ସିନେମା ଗୀତ ଠାରୁ ରାଗ ସଂଗୀତ, ମଂଚକଳା, ଅଭିନୟ, ଦାର୍ଶନିକ ତତ୍ତ୍ୱଦର୍ଶିତା, ସାହିତ୍ୟ, ସୃଷ୍ଟି, ସଂପାଦନା - ଏଭଳି ବହୁବିଧ ସଂଭାବନାର ଉପସ୍ଥାପନା ବା ପ୍ରୟୋଗ। ଜ୍ଞାନବିଜ୍ଞାନର ଏପରି କୌଣସି ବିଭାଗ ନାହିଁ ଯାହା ସଂବଂଧରେ ସେ ଆଲୋଚନା କରିବାକୁ କୁଂଠାବୋଧ କରିବେ। ବୃଦ୍ଧର ବାର୍ଦ୍ଧକ୍ୟ ଠାରୁ ରାଜନର୍ତ୍ତକୀର ଲାବଣ୍ୟ ପର୍ଯ୍ୟଂତ ସବୁଥିରେ ତାଂକର ନିଷ୍ପାପର ଆଗ୍ରହ। ସମାଜର ନିୟମରେ ନିୟଂତ୍ରିତ କ୍ଷୟିଷ୍ଣୁ ଦେହ ଭିତରେ ଏପରି ଏକ ସମୟର ଅତ୍ୟାଚ଼ରକୁ ଅସ୍ୱୀକାର କରୁଥିବା ଚେତନା ପୁରୁଷଟି ପ୍ରଫୁଲ୍ଲ ବାବୁଂକୁ ବିଭିନ୍ନ ସମୟରେ ବହୁ ଘାତ ପ୍ରତିଘାତର ଚକ୍ରବ୍ୟୂହ ଭିତରକୁ ବାରଂବାର ଟାଣି ନେଇଛି ଆଉ ସେ ମଧ୍ୟ ସୁଅ ମୁହଁରେ ପତର ତୁଲ୍ୟ ନିଜକୁ ଭସାଇ ଦେଇଛନ୍ତି। କାରଣ ସେ ଆପଣାର ସ୍ୱାର୍ଥ ଓ ସୁରକ୍ଷା ପାଇଁ ଚିରକାଳ ଅସତର୍କ ଓ କିଛି ମାତ୍ରାରେ ଉଦାସୀନ। ତାଂକୁ ଏସବୁ କଥା ପଚ଼ରିଲେ ହସିଦେଇ ସାଧାରଣ ଭାବରେ ଉତ୍ତର ଦେବେ, 'ଭାସିଯିବାରେ ମଧ୍ୟ ଜୀବନର ବହୁ ଆନଂଦ ଖୋଜି ପାଇହୁଏ। କୂଳର ନିରାପତ୍ତାରେ ସଂରକ୍ଷିତ ଥିଲେ ଜୀବନକୁ ଗଭୀର ଭାବରେ ହୁଏତ ବୁଝିହୋଇ ନଥାନ୍ତା।' ଖମା ଖାଲରୁ ଉଠିଲା ପରେ ସେ ଆଂଠୁଗଂଠିର ଯଂତ୍ରଣା ଭୁଲି, ମୁକ୍ତ ଆକାଶର ଛାଇରେ ପୁଣି ଗୁଡ଼ି ଉଡ଼େଇବାରେ ମାଡ଼ିଯାଆନ୍ତି। ଏତେ ସଂକ୍ଷିପ୍ତ ମଣିଷ ଜୀବନରେ,

ଦିଗରେଖାର ଆରପଟ ପର୍ଯ୍ୟନ୍ତ ବିସ୍ତୃତ ଆନନ୍ଦରୁ ସେ ଚିରୁଳାଏ ମଧ୍ଯ ହାତଛଡ଼ା କରିବାକୁ ନାରାଜ। ତାଂକ ଆତ୍ମାପୁରୁଷ ବଂଚିରହିଛି ପଦ୍ମପତ୍ରରେ ନୀରବିଂଦୁ ସଦୃଶ, ଅସ୍ଥିର କିନ୍ତୁ ସଂପୂର୍ଣ୍ଣ ବଂଧନମୁକ୍ତ। ଏହିପରି ମୁକ୍ତ ସ୍ୱାଧୀନ ଜୀବନର ପ୍ରତୀକ ହୋଇ ସେ ଚିରକାଳ ଥାଆନ୍ତୁ, ଏହା ହିଁ ଆଜିର କାମନା।

ଏବେ ମୁକ୍ତକଂଠରେ ମୁଁ କହିବାକୁ ଚାହେଁ ଯେ ଆଜିର ଏହି ଖୁସି ମୁହୂର୍ତ୍ତରେ, ପ୍ରଫୁଲ୍ଲ ବାବୁଂକଠାରୁ ଅଧିକ ଧନ୍ୟବାଦ ଓ ଶୁଭେଚ୍ଛାର ପାତ୍ରୀ ହେଉଛନ୍ତି ତାଂକର ଧର୍ମପତ୍ନୀ ଶ୍ରୀମତୀ ପ୍ରମୋଦିନୀ କାରଣ ପ୍ରଫୁଲ୍ଲ ବାବୁଂକର ଜୀବନକୁ ଋଦ୍ଧିମନ୍ତ ଓ ସଫଳ କରି ଗଢ଼ି ତୋଳିବା ପଛରେ, ନିଜକୁ ଚିରକାଳ ଅସ୍ୱୀକାର କରୁଥିବା ଏହି ମହିୟସୀ ନାରୀଂକର ଅକୁଂଠ ତ୍ୟାଗ ଓ କାର୍ପଣ୍ୟହୀନ, ସଂବେଦନଶୀଳ ବୁଝାମଣା ପ୍ରଚ୍ଛନ୍ନ ଭାବରେ ଭରି ରହିଛି। ତାଂକ ପରିବାର ସହ ସଂପର୍କିତ ପ୍ରତ୍ୟେକ ବ୍ୟକ୍ତି ଏହା ନିଶ୍ଚୟ ସ୍ୱୀକାର କରିବେ। ତାଂକ ନିଜ ପିଲାଏ କ'ଣ ପଢ଼ନ୍ତି, କ'ଣ କରନ୍ତି, କେମିତି ସଂସାରରେ ଚଳନ୍ତି, ଘରଦ୍ୱାର କରନ୍ତି, ନିଜ ଘର କେମିତି ଚଳେ, ପ୍ରଫୁଲ୍ଲ ବାବୁ ଏଭଳି ସାଂସାରିକ ଦାୟିତ୍ୱ, ଜଂଜାଳର ଖବର ବିଷୟରେ ସଚେତନ ବୋଲି କେହି ଭୁଲ୍‌ରେ ମଧ୍ଯ କହିପାରିବ ନାହିଁ। ସେ ଦିଗରେ ତାଂକର ଧାରଣା ଖୁବ୍ ଗଭୀର ବୋଲି ମନେ ହୁଏ ନାହିଁ। ଖଣ୍ଡିଆଭୂତ ଠାରୁ ଆରମ୍ଭ କରି, ଧଳା ଧଳା ମେଘ ଛାଇରେ ଦୌଡ଼ିବାରୁ ଅବ୍ୟାହତି ମିଳିଲେ ତ ସେ ଏସବୁ ଆପାତଃ ଅବାନ୍ତର ସମସ୍ୟାରେ ମୁଣ୍ଡ ଖେଳେଇବେ ! ଭଲ ଲାଗିଲାନି, ମନକୁ ପାଇଲା ନାହିଁ ଚାକିରୀ ଛାଡ଼ିଦେଲେ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ, ରେଭେନ୍‌ସା କଲେଜର ଅଧ୍ୟକ୍ଷ ପଦରୁ। କାରଣ ମନ ଏବଂ ହୃଦୟର ରଂଗୀନ ସ୍ୱପ୍ନରେ ହଜି ଯାଇଥିବା, ମଜ୍ଜି ଯାଇଥିବା ପ୍ରଫୁଲ୍ଲ ବାବୁଙ୍କୁ ପଦପଦବୀ, ସଂସାର ଦାୟିତ୍ୱ କି ପରିସ୍ଥିତିର ଦ୍ୱାହିଦେଇ ବାଂଧିରଖିବା ଯେ ଅସଂଭବ, ଏକଥା ଶ୍ରୀମତୀ ମହାନ୍ତିଂକ ଛଡ଼ା କିଏ ଆଉ ଅଧିକ ଜାଣଂତି ନାହିଁ। ସେ ତାଂକୁ ଧରି ରଖିଛନ୍ତି, ତାଂକ ଅଳି ଅର୍ଦ୍ଦୋଳି (ଅତ୍ୟାଚାର ମଧ୍ଯ) ସହିଛଂତି। ସଂସାରର ସବୁ ଜଂଜାଳ, ଦାୟିତ୍ୱ, ବୋଝ ସବୁକୁ ତାଂକଠୁ କାଢ଼ିନେଇ ନିଜେ ସଂଭାଳିଛନ୍ତି। ତାଂକୁ ଛାଡ଼ିଦେଇଛନ୍ତି ସେ ତୋଟାମାଳରେ ଡାଳମାଂକୁଡ଼ି ଖେଳନ୍ତୁ, ନୋହିଲେ ସଂପାନ, ସଭା ସମିତିରେ ଗୁରୁତର ସମସ୍ୟା ଉପରେ ସୁଚିଂତିତ ସାରଗର୍ଭକ ତାତ୍ତ୍ୱିକ ଭାଷଣ ଦିଅଂତୁ, ଯାହା ତାଂକର ଇଚ୍ଛା। ମୂଳକଥା ସେ ଖୁସିରେ ରହନ୍ତୁ। ଆମେ ସମସ୍ତେ ବହିରେ ପଢ଼ିଥାଉ

ଯେ ସବୁ ସଫଳ ବ୍ୟକ୍ତିତ୍ୱ ଆଢୁଆଳରେ ଜଣେ ମହନୀୟା ମହିଳାଂକର ତ୍ୟାଗପୂତ ଜୀବନକାହାଣୀ ଲୁକ୍‌କାୟିତ ଥାଏ। କିନ୍ତୁ ପ୍ରଫୁଲ୍ଲ ବାବୁଂକ କ୍ଷେତ୍ରରେ ଏହାଂକୁ ଆମେ ଚର୍ମଚକ୍ଷୁରେ ଦର୍ଶନ କରିପାରିବାର ସୌଭାଗ୍ୟ ପାଇଛୁ।

ଈଶ୍ୱର ପ୍ରଫୁଲ୍ଲ କୁମାର ମହାନ୍ତିଂକୁ ସୁସ୍ଥ, ନିରାମୟ, ଜ୍ଞାନପୁଷ୍ଟ ଦୀର୍ଘଜୀବନ ଦିଅନ୍ତୁ ଏବଂ ଚିରକାଳ ତାଂକୁ ସଫଳ ନାୟକ ପୋଷାକରେ ସଜାଇ, ଶ୍ରୀମତୀ ମହାନ୍ତି ତାଂକ ଜୀବନର ରଂଗମଂଚ ସଂଭାଳୁ ଥାଆନ୍ତୁ ଏବଂ ଦର୍ଶକମାନଂକ ପାଖରୁ ପ୍ରଚୁର କରତାଳି ସମର୍ଥନ ଓ ସମ୍ମିଳିତ ଶୁଭେଚ୍ଛା ଦୁହିଁଂକୁ ମିଳୁଥାଉ, ଏହା ହିଁ ଆଜି ଦିନରେ ଆମ. ସମସ୍ତଂକର ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା।

ପ୍ରାକ୍ତନ ଇଂରାଜୀ ପ୍ରଫେସର
ଉତ୍କଳ ବିଶ୍ୱବିଦ୍ୟାଳୟ

# ସୃଜନକଳାର ଅନନ୍ୟ ଜୀବନଶିଳ୍ପୀ

ଅର୍ଚ୍ଚନା ନାୟକ

୧୯୬୫ ମସିହା । ରେଭେନ୍‌ସା କଲେଜରେ ମୁଁ ବି.ଏ. ପ୍ରଥମ ବର୍ଷର ଛାତ୍ରୀ ଭାବରେ ଯୋଗ ଦେଇଥାଏ । ଏହାପୂର୍ବରୁ କଟକ ସହରରେ ଥିବା ରେଭେନ୍‌ସା ଗାର୍ଲସ୍ ସ୍କୁଲ ଓ ଶୈଳବାଳା ମହିଳା କଲେଜରେ ଶିକ୍ଷାଲାଭ କରିଥିଲି । ରେଭେନ୍‌ସା କଲେଜରେ ପାଠପଢ଼ିବାର ସୁଯୋଗ ସେ ସମୟରେ ଖୁବ୍ କମ୍ ଝିଅଙ୍କୁ ମିଳୁଥିଲା ।

ରେଭେନ୍‌ସା ଏକ ବିଶାଳ କଲେଜ । ତା'ର ବିସ୍ତୃତ ପରିସର ଓ ବହୁ ଛାତ୍ରଛାତ୍ରୀଙ୍କର ସମାଗମରେ ସର୍ବଦା ଚଳଚଞ୍ଚଳ ରହୁଥିଲା ତା'ର ପରିବେଶ । ସର୍ବୋପରି ଏହି ମହାନ୍ ଶିକ୍ଷାନୁଷ୍ଠାନରେ ଅଧ୍ୟାପନା କରୁଥିବା ବିଦ୍ୱାନ୍ ଅଧ୍ୟାପକମାନଙ୍କର କ୍ଲାସ ନେବାର ଶୈଳୀ ଥିଲା ଅନୁପମ । ମୁଁ ଖୁବ୍ ପ୍ରଭାବିତ ହୋଇଥିଲି ।

ଇଂରାଜୀ ବିଭାଗରେ ସେ ସମୟରେ ଥିଲେ ପୂଜାସ୍ପଦ ଅଧ୍ୟାପକ ତ୍ରିଲୋଚନ ମିଶ୍ର, ପ୍ରଫୁଲ୍ଲ ପତି, ଜିତେନ୍ଦ୍ର ପଟ୍ଟନାୟକ, ସୌଭାଗ୍ୟ କୁମାର ମିଶ୍ର ଓ ସାର୍ ପ୍ରଫୁଲ୍ଲ କୁମାର ମହାନ୍ତି । ସମସ୍ତ ଅଧ୍ୟାପକଙ୍କର ପାଠପଢ଼େଇବାର ଶୈଳୀ ଥିଲା ଉନ୍ନତମାନର । ପ୍ରଫୁଲ୍ଲ ସାର୍ ଆମକୁ ପଢ଼ାଉଥିଲେ ସେକ୍‌ସିପିଅରଙ୍କର ନାଟକ Twelfth-Night । ଆମେ ସବୁ ଛାତ୍ରଛାତ୍ରୀ ମୁଗ୍ଧ ଶ୍ରୋତା ଓ ଦର୍ଶକ । ଆମେ ନାଟକଟି ପଢୁଥିଲୁ ଓ ତା'ସହିତ ପ୍ରତ୍ୟକ୍ଷ ମଧ୍ୟ କରୁଥିଲୁ ନାଟକଟିକୁ । କ୍ଲାସ ସରିଯିବାର ଘଣ୍ଟି-ସଂକେତ ଆମର ରସଭଙ୍ଗ କରୁଥିଲା । ପ୍ରଫୁଲ୍ଲ ସାର୍‌ଙ୍କର ପାଠପଢ଼ା ସହିତ ଗୀତ, ନାଚ ଓ ଡ୍ରାମା ପ୍ରତି ଥିଲା ବହୁତ ଆଗ୍ରହ । ଛାତ୍ରଛାତ୍ରୀଙ୍କ ଭିତରେ ଏହିସବୁ ସାଂସ୍କୃତିକ କାର୍ଯ୍ୟକ୍ରମ ପ୍ରତି ଆଦର ସୃଷ୍ଟି କରାଇବା ପାଇଁ ତାଙ୍କର ଆନ୍ତରିକ ପ୍ରଚେଷ୍ଟା ଆମ ପିଲାଙ୍କ ଭିତରେ ବେଶ୍ ଚର୍ଚ୍ଚାର ବିଷୟ ହେଉଥିଲା ।

ସେବର୍ଷ 'ସମ୍ରାଟ କାଲିଗୁଲା' ନାମକ ଏକ ଉଚ୍ଚକୋଟୀର ନାଟକ ସାର୍‌ଙ୍କ ନିର୍ଦ୍ଦେଶନାରେ କଲେଜର ବାର୍ଷିକ ଉତ୍ସବରେ ମଞ୍ଚସ୍ଥ ହୋଇଥିଲା । ସେ ନାଟକରେ ସାର୍ ସମ୍ରାଟ କାଲିଗୁଲା ଭୂମିକାରେ ନିଜେ ଅଭିନୟ କରିଥିଲେ ଓ ପ୍ରଶାନ୍ତ ନନ୍ଦ, ସୌଦାମିନୀ ଓ ଝରଣା ପ୍ରଭୃତି କେତେଜଣ ଛାତ୍ରଛାତ୍ରୀ ସାର୍‌ଙ୍କର ସହକଳାକାରର ଭୂମିକା ନିର୍ବାହ କରିଥିବା ମୋର ମନେ ଅଛି । ନାଟକଟି ଏକ ପାଶ୍ଚାତ୍ୟ କଥାବସ୍ତୁ ଉପରେ ଆଧାରିତ ଥିଲା । ବେଶ୍ ଜଟିଳ ବିଷୟ । ମଣିଷ ମନର ବିଷମ ସ୍ଥିତି ଓ ତା'ର ବହୁସ୍ତରୀୟ ମନସ୍ତତ୍ତ୍ୱର ପ୍ରକାଶ ଘଟିଥିଲା ସେଥିରେ । ବୁଝିବା ସହଜ ନଥିଲା । ମୋର ମନେ ଅଛି ସେଥିରେ ଏପରି ଏକ ଦୃଶ୍ୟ ଥିଲା ଯେଉଁଥିରେ ସାର୍ ଦୀର୍ଘ ସଂଳାପଯୁକ୍ତ ଏକକ ଅଭିନୟ କରିଥିଲେ । ତାହା ଥିଲା ନାଟକଟିର ପ୍ରାଣକେନ୍ଦ୍ର । ସାଧାରଣତଃ କୋ-ଏଡ୍ କଲେଜରେ କୌଣସି ନାଟକରେ ଛାତ୍ରୀମାନେ ଅଂଶଗ୍ରହଣ କରିବାକୁ କୁଣ୍ଠିତ ହୁଅନ୍ତି । କାରଣ ଛାତ୍ରୀ ଅଭିନେତ୍ରୀ ଜଣକ ମଞ୍ଚରେ ପ୍ରବେଶ କରିବାମାତ୍ରେ ପୁଅମାନେ ହୁଇସିଲ୍ ମାରିବା, ନାନା କମେଣ୍ଟ କରିବା ଓ ଦର୍ଶକ ଗ୍ୟାଲେରୀରେ ବସି ଗଣ୍ଡଗୋଳ କରିବା ଏକ ସାଧାରଣ ଘଟଣା । ଏପରିକି ଛାତ୍ର ଅଭିନେତାର ନାମ ଧରି ଡାକିବା ଓ ନାନା ଇଙ୍ଗିତ କରିବା ମଧ୍ୟ ସେଥିରେ ସାମିଲ ଥାଏ । ତେଣୁ ଏହିସବୁ କଲେଜରେ ନାଟକ ପ୍ରଦର୍ଶନ କେବେହେଲେ ଆଶାନୁରୂପ ବା ଆନନ୍ଦକର ହୁଏନାହିଁ । କିନ୍ତୁ ସେଥର ରେଭେନ୍‌ସା ମଞ୍ଚରେ ଅଭିନୀତ ହେଉଥିବା 'ସମ୍ରାଟ କାଲିଗୁଲା' ନାଟକର ପ୍ରଥମ ଦୃଶ୍ୟରୁ ଯବନିକାପାତ ପର୍ଯ୍ୟନ୍ତ ଦର୍ଶକ ଗ୍ୟାଲେରୀ ଥିଲା ପୂରା ଅଭିଭୂତ ଓ ଏକପ୍ରକାର ସ୍ତବ୍ଧ । ଛାତ୍ରୀ କଳାକାରମାନେ ସମ୍ପୂର୍ଣ୍ଣ ସୁରକ୍ଷିତ । ରେଭେନ୍‌ସା କଲେଜରେ ଅନୁଷ୍ଠିତ ହେଉଥିବା ସାଂସ୍କୃତିକ କାର୍ଯ୍ୟକ୍ରମର ଇତିହାସରେ ତାହା ଥିଲା ଏକ ଅନନ୍ୟ ଓ ଅସାଧାରଣ ଘଟଣା । ଯାହାର ସମସ୍ତ ଶ୍ରେୟ ଥିଲା ସାର୍‌ଙ୍କର । ସେ ନାଟକରେ ତାଙ୍କର ନିର୍ଦ୍ଦେଶନା, ଅଭିନୟ ଓ ମଞ୍ଚ ପରିଚାଳନା ଥିଲା ଅନବଦ୍ୟ । ସାର୍‌ଙ୍କର ଉପସ୍ଥିତି ଓ ଅଭିନୟର ପ୍ରଭାବରେ ଉକ୍ତ ନାଟକରେ ଅଂଶଗ୍ରହଣ କରିବାପାଇଁ ସୁଯୋଗ ପାଇଥିବା ଛାତ୍ରଛାତ୍ରୀମାନେ ମଧ୍ୟ ପ୍ରବୀଣ କଳାକାରଙ୍କ ପରି ଅଭିନୟ କରିଥିଲେ । ନାଟକର କୌଣସି ଦୃଶ୍ୟର ଫଟୋଟିଏ ଉଠାଇ ରଖିବା ସେତେବେଳେ ସମ୍ଭବ ନଥିଲା । କିନ୍ତୁ ମୋ ସ୍ମୃତିରେ ସେ ଦୃଶ୍ୟସବୁ ଏବେବି ସଜୀବ ରହିଛି ।

କଲେଜମାନଙ୍କରେ ସାଂସ୍କୃତିକ କାର୍ଯ୍ୟକ୍ରମ ମାନେହିଁ ପ୍ରଥମେ ନିଶ୍ଚୟ ଏକ ସମବେତ ସଙ୍ଗୀତ ଗାନ କରାଯିବ । ସେଇ ବର୍ଷ ନାଟକ ନିର୍ଦ୍ଦେଶନା ସହ ସଙ୍ଗୀତ ରଚନା ଓ ନିର୍ଦ୍ଦେଶନା ମଧ୍ୟ ସାର୍ ଦେଇଥିଲେ । ସେ ସଙ୍ଗୀତ ଆଧାରିତ ଥିଲା କୌଣସି

ଏକ ରାଗ ଉପରେ । ସଙ୍ଗୀତର ବିଷୟ ଥିଲା ବସନ୍ତ ବର୍ଣ୍ଣନା । ସେଥିରୁ କେଇଟି ଶବ୍ଦ ମାତ୍ର ମୋର ମନେ ଅଛି । ବୋଧହୁଏ ଏଇ କେତୋଟି ଶବ୍ଦ ମତେ ବିମୋହିତ କରୁଥିଲା ।

ଆକାଶେ ବତାସେ... ପୁଲକ ଝଲସେ<br>
ସରଗ କନ୍ୟା କେ ଧନ୍ୟା କେ ।<br>
ଦିଏ ଉଡ଼ାଇରେ, ଚୋରା ମଳୟର ଶିରୀ।

ମଞ୍ଚରେ ଗାଉଥିଲେ ଛାତ୍ରଛାତ୍ରୀ ମିଶି ଆଠଦଶ ଜଣ। ମୋ ସାଙ୍ଗ ମମତା ଦାଶ ମଧ୍ୟ ସେଥିରେ ଗାଉଥିଲା । ସେ ସଙ୍ଗୀତର ସ୍ୱର ଓ ତା' ସହିତ ବାଦ୍ୟ ସଂଯୋଜନା ଅତି ଚମତ୍କାର ଥିଲା । ବାହାରେ ଥିବା ଆମେ ସବୁ ସେଇ ଗୀତକୁ ନିଜନିଜ ବାଗରେ ଗାଉଥିଲୁ । ସେତିକିବେଳେ ଆମକୁ ଜାଣିବାର ସୁଯୋଗ ମିଳିଥିଲା ଯେ ସାର୍ ଶାସ୍ତ୍ରୀୟ ସଙ୍ଗୀତ ନିଜେ ଗାନ କରନ୍ତି । ଓଡ଼ିଆ ଛାନ୍ଦ ଚମ୍ପୂ ସବୁ ସ୍ୱର-ତାଳ-ଲୟ ସହ ତାଙ୍କର କଣ୍ଠସ୍ଥ ରହିଛି ।

ତା'ପରେ ମୁଁ ସାର୍‌ଙ୍କୁ ଭେଟିଲି ୧୯୭୮ ମସିହାରେ ବ୍ରହ୍ମପୁରରେ । ମୁଁ ଓ ମୋର ସ୍ୱାମୀ ଡ. ବ୍ରଜକିଶୋର ରାୟ ସେହିବର୍ଷ କଟକରୁ ବଦଳି ହୋଇଗଲୁ ବ୍ରହ୍ମପୁର । ସେ ଯୋଗଦେଲେ ଖଲିକୋଟ କଲେଜର ଗଣିତ ବିଭାଗରେ, ମୁଁ ଯୋଗଦେଲି ବ୍ରହ୍ମପୁର ସରକାରୀ ମହିଳା ମହାବିଦ୍ୟାଳୟର ଓଡ଼ିଆ ବିଭାଗରେ । କଟକର ଶୈଳବାଳା ମହିଳା କଲେଜରେ ଅଧ୍ୟାପିକା ଭାବରେ ଯୋଗଦେବା ପରଠାରୁ ସେଠାକାର ନାଟ୍ୟସଂସଦ ମୋର ସ୍ଥାୟୀ ହୋଇଯାଇଥିଲା । କଟକରେ ନାଚ, ଗୀତ ଓ ଡ୍ରାମା କରିପାରୁଥିବା ବିଚକ୍ଷଣ ଛାତ୍ରୀଙ୍କର ଅଭାବ ନଥିଲା । କଲେଜର ମଞ୍ଚୋପଯୋଗୀ ଡ୍ରାମା ଓ ନୃତ୍ୟନାଟିକା ପ୍ରଭୃତି ସ୍କ୍ରିପ୍ଟ ପାଇବାରେ ମଧ୍ୟ ଅସୁବିଧା ନଥିଲା ।

ବ୍ରହ୍ମପୁର ମହିଳା କଲେଜରେ ପୁଣି ନେବାକୁ ପଡ଼ିଲା ସେଠାକାର ନାଟ୍ୟସଂସଦର ଦାୟିତ୍ୱ। ଏଠି ମୁଁ ନୂଆ। କାହା ସହିତ ପରିଚୟ ନାହିଁ। ଛାତ୍ରୀମାନଙ୍କ ଭିତରେ ଥିବା ପ୍ରତିଭାର ସନ୍ଧାନ ପାଇନଥାଏ ବା ବାଦ୍ୟ, ସଙ୍ଗୀତ ଓ ନାଟକ ନିର୍ଦ୍ଦେଶକଙ୍କ ସହ ପରିଚୟ ନଥାଏ । କୌଣସିମତେ ଯୋଗାଯୋଗ ହୋଇଗଲା । କେବଳ ନୃତ୍ୟନାଟିକା ପାଇଁ କୌଣସି ପ୍ରକାର ସ୍କ୍ରିପ୍ଟ ପାଇଲିନାହିଁ । ନିଜେ ଲେଖିଲି ଉଷା-ଚିତ୍ରଲେଖା- ଅନିରୁଦ୍ଧଙ୍କ ପ୍ରସଙ୍ଗକୁ ନେଇ । ନୃତ୍ୟନାଟିକା ପ୍ରସ୍ତୁତ । ଏଣିକି କଳାକାର ଚୟନ । ଉଷା ଚରିତ୍ରଟି ପାଇଁ ସୁନ୍ଦରୀ ଓ ନୃତ୍ୟନିପୁଣା ଝିଅଟିଏ ଦରକାର । ମୁଁ ସେ ପର୍ଯ୍ୟନ୍ତ ପିଲାମାନଙ୍କୁ ଭଲରେ

ଚିହ୍ନି ନଥିଲି । ଦିନେ କ୍ଲାସ ନେଇ ଫେରିବାବେଳେ ମୋ ଆଖିପଡ଼ିଗଲା ଗୋଟିଏ ଝିଅ ଉପରେ । ସେ କଲେଜର ଭିତର ବାରଣ୍ଡାରେ ଚାଲିଚାଲି ଆସୁଥିଲା । ତା'ର ରଙ୍ଗ ଥିଲା ଶ୍ୟାମଳ । ମୁହଁଟି ଆଙ୍କିଦେବା ପରି, ଖୁବ୍ ଲାବଣ୍ୟଭରା । ତା' ଶରୀରର ଗଠନ ଥିଲା ପୂରା ଶାଳାଭଂଜିକାର ଅନୁରୂପ । ମୁଁ ମୋ ନାୟିକାକୁ ଆବିଷ୍କାର କରି ଖୁସି ହୋଇଗଲି । କିନ୍ତୁ ମନକୁ ଆସିଲା ଏ ଝିଅ ନାଚ ଜାଣିଛି ତ ! ଯଦି ନ ଜାଣିଥିବ ନାୟିକା ଭୂମିକାରେ ତାକୁ ନେଇହେବନି । ମୁଁ ସେଠାକାର ଜଣେ ପୁରୁଣା ଅଧାପିକାଙ୍କୁ ସେ ଝିଅକୁ ଜାଣିଛନ୍ତି କି ବୋଲି ପଚାରିଲି ।

ସେ ମତେ ଉଚ୍ଛ୍ୱସିତ ହୋଇ ଉତ୍ତର ଦେଲେ, "ଓ ଶ୍ୟାମଳୀ କଥା କହୁଛ ? ସେ ପରା ଡକ୍ଟର ପ୍ରଫୁଲ୍ଲ ମହାନ୍ତିଙ୍କର ଝିଅ । ସେ ନୃତ୍ୟରେ ପାରଙ୍ଗମା । ସାର୍ ଅଛନ୍ତି ଖଲିକୋଟ କଲେଜରେ ।"

ମୋର ଖୁସିର ସୀମା ରହିଲାନାହିଁ । ମୁଁ ଶ୍ୟାମଳୀକୁ ପାଖକୁ ଡାକି କହିଲି, "ଶୁଣ ତୁମ ବାପା ହେଉଛନ୍ତି ମୋ ସାର୍ । ମୋ କଥା ତାଙ୍କୁ କହିବ । ତୁମର ନୃତ୍ୟନାଟିକାରେ ଭାଗନେବାକୁ ସାର୍ ଆଦୌ ମନାକରିବେନି ।"

ଶ୍ୟାମଳୀ ମଧ୍ୟ ଖୁସି ହୋଇଗଲା । ତା'ରି ସୂତ୍ରରେ କଲେଜରେ ଛାତ୍ରୀଥିବା ନୃତ୍ୟାଙ୍ଗନାମାନଙ୍କୁ ଜାଣିଲି । କଲେଜର ବାର୍ଷିକ ଉତ୍ସବରେ ପ୍ରଦର୍ଶିତ ହେବାକୁ ଥିବା ସାଂସ୍କୃତିକ କାର୍ଯ୍ୟକ୍ରମ ସବୁ ପ୍ରସ୍ତୁତ ହୋଇଗଲା । ସେଠି ମହିଳା କଲେଜର ବାର୍ଷିକ ଉତ୍ସବକୁ ସହରର ମାନ୍ୟଗଣ୍ୟ ବ୍ୟକ୍ତି, ବିଭିନ୍ନ କଲେଜର ଛାତ୍ର ପ୍ରତିନିଧିମାନଙ୍କୁ ନିମନ୍ତ୍ରଣ କରାଯାଏ । ମୁଁ ସାର୍‌ଙ୍କୁ ନିମନ୍ତ୍ରଣ କରିଥିଲି ତାଙ୍କ କନ୍ୟାର ନୃତ୍ୟ ଓ ଅଭିନୟ ଦେଖିବା ସହିତ ତାଙ୍କ ଛାତ୍ରୀର ନାଟ୍ୟରଚନା ଓ ସାଂସ୍କୃତିକ କାର୍ଯ୍ୟର ନିପୁଣ ଉପସ୍ଥାପନା ମଧ୍ୟ ଦେଖିବେ । ସେ ବର୍ଷର ସେହି ନୃତ୍ୟନାଟିକାଟି ସେ କଲେଜ ଇତିହାସରେ ସ୍ମରଣୀୟ ହୋଇ ରହିଛି ।

ଦୁଇବର୍ଷ ପରେ ମୁଁ କଟକ ଫେରିଆସିଥିଲି । ତେଣିକି ଗବେଷଣା କର୍ମ ଓ ବିଭିନ୍ନ କଲେଜରେ ପୋଷ୍ଟିଂ ଭିତରେ ବିତିଯାଇଥିଲା ଅନେକ ବର୍ଷ । ପ୍ରଫୁଲ୍ଲ ସାର୍ ରେଭେନ୍ସା କଲେଜରେ ପ୍ରିନ୍ସିପାଲ ଥିବାବେଳେ ସେଠାକାର ବିଭିନ୍ନ ଡିପାର୍ଟମେଣ୍ଟରେ ଅନୁଷ୍ଠିତ ହେଉଥିବା ସେମିନାର ଓ ଉତ୍ସବରେ ଦେଉଥିବା ଉଚ୍ଚକୋଟୀର ଓ ଚିନ୍ତାଦ୍ୟୋତକ ଭାଷଣ ସମ୍ପର୍କରେ ରେଭେନ୍ସା କଲେଜରେ ଥିବା ମୋର ବନ୍ଧୁ ଅଧ୍ୟାପକମାନଙ୍କଠାରୁ ଶୁଣିଛି । କଟକରେ ମୋର ଆଉ ସାର୍‌ଙ୍କ ସହିତ ଦେଖା ହୋଇନାହିଁ ।

ମୁଁ ୧୯୯୨ରେ ଭୁବନେଶ୍ୱର ଆସିବା ପରେ ସାର୍‌ଙ୍କ ସହ ଦେଖାସାକ୍ଷାତ ହେବାର ସୁଯୋଗ ମିଳିଲା । ଅପା (ସାର୍‌ଙ୍କ ପତ୍ନୀ)ଙ୍କ ସହ ମଧ୍ୟ ପରିଚୟ ହୋଇଗଲା । ଦିନେ ମୁଁ ମୋର ପ୍ରିୟ ବାନ୍ଧବୀ ବିଶିଷ୍ଟ ଆର୍କିଟେକ୍‌ଟ ଗୀତା ପଟ୍ଟନାୟକଙ୍କୁ ସେ ଭୁବନେଶ୍ୱରରେ କାହାକାହା ଘରର ଡିଜାଇନ୍ କରିଛି ବୋଲି ଏମିତି ପଚାରୁଥିଲି । ସେ ଯେଉଁମାନଙ୍କର ନାଁ କହିଲା ତା'ଭିତରେ ସାର୍‌ଙ୍କ ନାମ ଥିଲା ମୁଖ୍ୟ । କାରଣ ସେ ତାଙ୍କ ଘରର କେବଳ ଡିଜାଇନ ଦେଇନଥିଲା, ସମ୍ପୂର୍ଣ୍ଣ ନିର୍ମାଣକର୍ମଟି ମଧ୍ୟ କରିଥିଲା । ତା'ଠାରୁ ଶୁଣିଥିଲି ସାର୍ ଘରକାମର ମୂଳରୁ ଶେଷଯାଏ କିଛି ବୁଝିନାହାନ୍ତି; କେବଳ ଆବଶ୍ୟକ ହେଉଥିବା ଅର୍ଥତକ ଯୋଗାଇ ଦେଇଛନ୍ତି ।

ମୁଁ ଦିନେ ସାର୍‌ଙ୍କ ଘର ଦେଖିବା ପାଇଁ ପହଞ୍ଚି ଯାଇଥିଲି । ମତେ ତାଙ୍କ ଘରର ନିର୍ମାଣକଳାଟି ବହୁତ ଭଲ ଲାଗିଲା । ସାର୍ ଓ ଅପା ଗୀତାର ବହୁତ ପ୍ରଶଂସା କରିଥିଲେ । ମୁଁ ତା'ପୂର୍ବରୁ ସେ ମୋର ଘନିଷ୍ଠ ବାନ୍ଧବୀ ବୋଲି ପରିଚୟ ଦେଇନଥିଲି । ଭାବୁଥିଲି ଘରକାମକୁ ନେଇ ସାର୍‌ତ ନୁହନ୍ତି, କାଳେ ଅପାଙ୍କର କିଛି ଅସନ୍ତୋଷ ଥିବ । କିନ୍ତୁ ମୋ ବନ୍ଧୁର ପ୍ରଶଂସାର ଭାଗୀଦାର ହେବାପାଇଁ ଗୀତା ମୋ ସାଙ୍ଗ ବୋଲି ଉତ୍‌ଫୁଲ୍ଲ ହୋଇ କହିଥିଲି । ସାର୍‌ଙ୍କ ଘରେ କେବେକେବେ ଆୟୋଜିତ ହେଉଥିବା ଭୋଜି ଉତ୍ସବରେ ମୋ ପାଇଁ ସ୍ଥାୟୀ ନିମନ୍ତ୍ରଣଟିଏ ରହିଛି ।

କିଛିବର୍ଷ ତଳେ ଭାରତୀୟ କଥାସାହିତ୍ୟର ପ୍ରଥିତଯଶା ସ୍ରଷ୍ଟାପୁରୁଷ ମନୋଜ ଦାସଙ୍କ ଉପରେ ଇଂରାଜୀ ଭାଷାରେ କାର୍ଯ୍ୟକ୍ରମଟିଏ ପ୍ରସ୍ତୁତ କରିବାପାଇଁ ପ୍ରଫୁଲ୍ଲ ସାର କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ଅନୁବନ୍ଧିତ ହୋଇଥିଲେ । ସେଥିରେ ମନୋଜ ଦାସଙ୍କ ଉପରେ କିଛି କିଛି କଥା କହିବାପାଇଁ ସେ ଚାରିଜଣ ସାହିତ୍ୟିକଙ୍କୁ ଉକ୍ତ ସାକ୍ଷାତକାର କାର୍ଯ୍ୟକ୍ରମରେ ସୁଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରେ ମୁଁ ଥିଲି ଅନ୍ୟତମ । ସେଦିନ ସକାଳେ ମୋ ଘରେ କଇଁଫୁଲ ଫୁଟିଥିବା ପାଣିକୁଣ୍ଡ ଧାରରେ ବସି ମୁଁ ଯାହା କହିଥିଲି ସାର୍ ତାକୁ ଠିକ୍ ସେହିପରି ରେକର୍ଡିଂରେ ରଖିଛନ୍ତି । ସେ ପ୍ରୋଗ୍ରାମ ବହୁବାର ଦୂରଦର୍ଶନରେ ପ୍ରଦର୍ଶିତ ହୋଇସାରିଛି । ସାର୍ ମତେ ଏପରି ଏକ ମହାର୍ଘ ସୁଯୋଗ ଦେଇଥିବାରୁ ମୁଁ ତାଙ୍କ ନିକଟରେ ଗଭୀର ଭାବରେ କୃତଜ୍ଞ ।

ଭୁବନେଶ୍ୱରରେ ରହିବା ପରଠାରୁ କେତେକ ସାହିତ୍ୟସଭାରେ ସାର୍‌ଙ୍କ ସହିତ ଅତିଥି ବା ବକ୍ତା ଭାବରେ ଯୋଗ ଦେବାର ସୁଯୋଗ ମିଳୁଛି । ପ୍ରଥମେ ପ୍ରଥମେ ଟିକେ ଭୟ ଲାଗୁଥିଲା ଏବେ ପୂରା ଆଶ୍ୱସ୍ତ ।

ମୋ ସ୍ୱାମୀ ବ୍ରଜ ରାୟ ସାର୍‌ଙ୍କର କିଛି ବର୍ଷ ରେଭେନ୍‌ସାରେ ସହକର୍ମୀ ଥିଲେ । ବ୍ରଜବାବୁ ଗଣିତ ବିଭାଗର ହେଲେ ବି ସାର୍‌ଙ୍କ ସହିତ ତାଙ୍କର ବହୁତ ଭଲ ସମ୍ପର୍କ ରହିଛି । ମୋ ସହିତ ସାର୍‌ଙ୍କର ଯେଉଁଠି ଦେଖାହେଲେ ବି ସେ ନିଶ୍ଚୟ ତାଙ୍କ କଥା ପଚାରନ୍ତି ।

ଥରେ ସାର୍ ଓ ଅପା ଆମ ଘରକୁ ବୁଲିବାକୁ ଆସିଥିଲେ । ସାର୍‌ଙ୍କର ୨୦୧୦ ମସିହାରେ ପ୍ରକାଶିତ ଇଂରାଜୀ କବିତା ବହି Luminous Illusionsରୁ ସେ ମତେ ଖଣ୍ଡିଏ ସେଦିନ ଉପହାର ଦେଇଥିଲେ । ସେମାନେ ମୋ ଘରକୁ ଆସିଥିବାର ଅବକାଶରେ ମୁଁ ତାଙ୍କୁ ମୋର ନୂଆ ବହି 'ସାତପଦ୍ମର ଦୀପ (୨୦୧୦) ଉପନ୍ୟାସଟି ଦେଇ କୃତାର୍ଥ ଅନୁଭବ କରିଥିଲି । ସେଦିନ ଭାବୁଥିଲି ସାର୍‌ଙ୍କ ପରି ଜଣେ ଉଚ୍ଚକୋଟୀର ସାହିତ୍ୟ ସମାଲୋଚକ ମୋର ଏ ବହିଟି ପାଠ କରିବା ମୋ ପାଇଁ ଯଥେଷ୍ଟ ହେବ ।

ସେଇବର୍ଷ ବିଶ୍ୱମୁକ୍ତି ପତ୍ରିକାର ପୂଜାସଂଖ୍ୟାରେ ସାର୍ ମୋ ଉପନ୍ୟାସ ଉପରେ ସମୀକ୍ଷାଟିଏ ଲେଖିଥିଲେ; ଯାହାର ଶିରୋନାମା ଥିଲା 'ଉତ୍ତରଣର ମହାଯାତ୍ରା' । ଏତେ ଚମତ୍କାର ଆଲୋଚନାଟି ପଢ଼ି ମୁଁ ଅଭିଭୂତ ହୋଇଯାଇଥିଲି ।

ମୁଁ ସେଥିପାଇଁ ସାର୍‌ଙ୍କୁ କୃତଜ୍ଞତା ଜଣାଇବାବେଳେ ସେ କହିଥିଲେ, "ତୁମେ ତ ତୁମ ବହି ଉପରେ କିଛି ଲେଖିବାକୁ କହିନଥିଲ । ମତେ ବହିଟି ଏତେ ଭଲଲାଗିଲା ଯେ ମୁଁ ନଲେଖି ରହିପାରିଲି ନାହିଁ ।"

ପ୍ରଥମ କରି ମୋର ଗୋଟିଏ ସୃଷ୍ଟି ଜଣେ ବିଶିଷ୍ଟ ସାହିତ୍ୟ ସମାଲୋଚକଙ୍କର ଦୃଷ୍ଟି ଆକର୍ଷଣ କରିପାରିଥିବାରୁ ମୁଁ ନିଜ ଭିତରେ ଖୁବ୍ ସନ୍ତୋଷ ଓ ଆନନ୍ଦ ଅନୁଭବ କରିଥିଲି । ପରବର୍ତ୍ତୀ ସମୟରେ ଉକ୍ତ ପ୍ରବନ୍ଧଟି ସାର୍‌ଙ୍କର ପ୍ରବନ୍ଧ ସଂକଳନ "ଜୀବନରାଗ"ରେ ସ୍ଥାନିତ ହୋଇଛି ।

ସେଦିନ ସାର୍‌ଙ୍କର "ଜୀବନରାଗ" ଏକ ସାରସ୍ୱତ ଭବ୍ୟ ସମାବେଶରେ ଲୋକାର୍ପିତ ହେଲା । ସଭାମଞ୍ଚରେ ଉପସ୍ଥିତ ଥିବା ବିଶିଷ୍ଟ ଅତିଥି ଓ ବକ୍ତାମାନେ ଉକ୍ତ ପୁସ୍ତକରେ ସ୍ଥାନିତ ଥିବା ମୋ ଉପନ୍ୟାସର ଆଲୋଚନାଟି ପ୍ରସଙ୍ଗରେ ଅଧିକ କହିଥିଲେ । ମତେ ଲାଗିଥିଲା ମୋ ବହିଟି ସତେକି ସେଠାରେ ଉନ୍ମୋଚିତ ହେଲା । କାରଣ ଏପର୍ଯ୍ୟନ୍ତ ମୋର କୌଣସି ପୁସ୍ତକର କେବେ ବି ବିଧିବଦ୍ଧ ଭାବରେ ଉନ୍ମୋଚନ ବା ଆଲୋଚନା ହୋଇନଥିଲା । ସେଠାରେ ସେଦିନ ଉପସ୍ଥିତ ଥିବା ମୋର କେତେଜଣ ବନ୍ଧୁ ଓ ପରିଚିତ

ବେଶ୍ ଆମୋଦିତ ହୋଇ କହିଥିଲେ, "ମନେହେଲା ଆଜି ତୁମ ଉପନ୍ୟାସଟି ଉନ୍ମୋଚିତ ହେଲା ।''

ମୁଁ ସେହିକ୍ଷଣି ଯାଇ ସାର୍‌ଙ୍କୁ ଏ ସମ୍ବାଦଟି ଦେଇଦେଲି । ସାର୍ ହସି ହସି ତାଙ୍କର ସ୍ୱଭାବ ସୁଲଭ ଢ଼ଙ୍ଗରେ କହିଥିଲେ, "ଭଲହେଲା । ମୋ ବହି ଉନ୍ମୋଚନ କାଳରେ ଯଦି ମୋ ଛାତ୍ରୀର ବହି ଆଲୋଚିତ ହେଲା, ତା'ତ ମୋ ପାଇଁ ଗୌରବର କଥା ।''

ସାର୍‌ଙ୍କର ପ୍ରକାଶିତ ନାଟକ କଳାଜହ୍ନ, ମଲାଆକାଶ ଓ ସରାଗ ସନ୍ନ୍ୟାସୀ ପ୍ରଭୃତି ମୁଁ ପଢ଼ିଛି । ନାଟକର ବିଷୟବସ୍ତୁ, ଚରିତ୍ର ଓ ସଂଳାପ ପ୍ରଭୃତି ଦିଗରୁ ଏସବୁର ସ୍ୱାତନ୍ତ୍ର୍ୟ ଉଲ୍ଲେଖଯୋଗ୍ୟ । ମୁଁ ଏ ନାଟକଗୁଡ଼ିକ ମଞ୍ଚସ୍ଥ ହେବାର କେବେ ଦେଖିନାହିଁ । କିନ୍ତୁ ଏସବୁ ନାଟକ ପଢ଼ିବାବେଳେ ମନକୁ ଆସିଥିଲା ସାର୍ ନିଜେ ଏହାର ନିର୍ଦ୍ଦେଶନା ଦେଲେ ହିଁ ଏହା ଅନ୍ୟ ଏକ ସ୍ତରକୁ ଉତ୍ତୀର୍ଣ୍ଣ ହୋଇପାରିବ ।

ସାର୍ ଲେଖିଥିବା ସମାଲୋଚନା, ଗ୍ରନ୍ଥଗୁଡ଼ିକ ମଧ୍ୟରୁ 'ବିରହ ଓ ଅନ୍ୟାନ୍ୟ ବିଭାବମାନେ, କିଛି ଆକାଶ କିଛି ମାଟି, ଜୀବନରାଗ ଓ ଇଚ୍ଛାର ପୃଥିବୀ ପ୍ରଭୃତି ଉଲ୍ଲେଖନୀୟ ପ୍ରବନ୍ଧ ଓ ସମାଲୋଚନା ପାଠ କରିବାରେ ମୋର ବିଶେଷ ଆଗ୍ରହ ରହିଥିବାରୁ ମୁଁ ଏହିସବୁ ପୁସ୍ତକ ପଢ଼ିଛି ।

ଏଥିରେ ସାହିତ୍ୟରୁ ଆରମ୍ଭ କରି ଇତିହାସ, ପୁରାଣ, ରାଜନୀତି, ଶିକ୍ଷା, ଧର୍ମ ଓ ଆଧ୍ୟାତ୍ମିକତା ପ୍ରଭୃତି ପ୍ରସଙ୍ଗ ଉପରେ ବିଶ୍ଳେଷଣାତ୍ମକ, ବଳିଷ୍ଠ ଓ ଯୁକ୍ତିସମ୍ମତ ଉପସ୍ଥାପନା ରହିଛି । ସାର୍‌ଙ୍କର ପ୍ରବନ୍ଧଗୁଡ଼ିକ ଉପରେ କିଛି ଲେଖିବା କଥା ଭାବୁଥିଲି । କିନ୍ତୁ ସେଗୁଡ଼ିକ ଏତେ ସ୍ୱଚ୍ଛ, ପ୍ରାଞ୍ଜଳ, ଭାବଗର୍ଭକ ଓ ମୌଳିକ ଯେ ତା' ଉପରେ ଅଧିକ ମନ୍ତବ୍ୟ କିଛି ଦିଆଯାଇପାରିବ ବୋଲି ମୋର ହୃଦ୍‌ବୋଧ ହେଲାନାହିଁ । ସାର୍‌ଙ୍କର କେତୋଟି ପ୍ରବନ୍ଧ ମୋ ସଂପାଦିତ 'ସାବିତ୍ରୀ' ପତ୍ରିକାରେ ପ୍ରକାଶ ପାଇଛି ଓ ପତ୍ରିକାର କିଛି ବିଦଗ୍ଧ, ଜ୍ଞାନୀ ପାଠକମାନଙ୍କ ପାଇଁ ସେସବୁ ଖୁବ୍ ଗ୍ରହଣୀୟ ହୋଇଛି ।

ସାର୍ ଯେ ଓଡ଼ିଆ କବିତା ଲେଖନ୍ତି ମୁଁ ଜାଣିନଥିଲି ବହୁଦିନଯାଏ । ଥରେ ପତ୍ରିକା ପାଇଁ ପ୍ରବନ୍ଧ ପରିବର୍ତ୍ତେ ସାର୍ କବିତାଟିଏ 'ନବ ଯଦି ନିଅ' ପଠାଇଥିଲେ । ସେଇଟି ମତେ ବହୁତ ଭଲ ଲାଗିଥିଲା । ତା'ପରେ ସାର୍‌ଙ୍କର ଅନ୍ୟାନ୍ୟ କବିତାଗୁଡ଼ିକ ପଢ଼ିବାର ଆଗ୍ରହ ହେଲା । ତାଙ୍କର 'ଶୂନ୍ୟର ବ୍ୟାସ' କବିତା ସଂକଳନଟି ପ୍ରକାଶ ପାଇଛି ୨୦୧୮ ମସିହାରେ । ସେଥିରେ ସ୍ଥାନିତ ହୋଇଥିବା କବିତାଗୁଡ଼ିକ ପଢ଼ିବା ପରେ ସେସବୁ ଉପରେ

କିଛି ଲେଖିଥିଲି । ମୋର ସ୍ୱଭାବ ହେଲା କୌଣସି ଭଲ ବହିଟିଏ ପଢ଼ିଲେ ସେଥିରେ ମୋ ମନକୁ ଛୁଇଁଥିବା କେତୋଟି କଥା ଉପରେ କିଛି ଲେଖିଦିଏ । କିନ୍ତୁ ତାହା ବିଧିବଦ୍ଧ ସମାଲୋଚନା ହୋଇ ନଥିବାରୁ ତାହା ପ୍ରକାଶିତ ନହୋଇ ମୋ ଡାଏରୀ ପୃଷ୍ଠାରେ ରହିଯାଏ । ଏବେ ସାରଙ୍କ ଉପରେ ଲେଖାଟିଏ ପ୍ରସ୍ତୁତ କରିବାବେଳେ ତାଙ୍କ କବିତା ଉପରେ ମୁଁ ଲେଖିଥିବା କିଛି କଥା ମନେ ପଡ଼ିଗଲା । ଭାବିଲି ସେଇଟିକୁ ଏଇଥିରେ ସଂଯୋଜିତ କରିଦିଏ । ଏହା ଆଲୋଚନା ନୁହେ; ଏକ ଅନୁଭବ ।

"ଜୀବନର ସକଳ ସଫଳ ଓ ପୀଡ଼ନଯୁକ୍ତ ଅସଙ୍ଗତି ମଧ୍ୟରୁ ଦେବୀପ୍ୟମାନ ଓ ପ୍ରେମମୟ ଭାସ୍ୱର ଜ୍ୟୋତି ଅନୁସନ୍ଧାନୀ ସତ୍ୟସନ୍ଧ ନାୟକ ସେ । ଜୀବନ ଓ ଜଗତରେ ସତ୍ୟ ଓ ପ୍ରେମ ପ୍ରତି ତାଙ୍କର ଐକାନ୍ତିକ ଅଙ୍ଗୀକାରବଦ୍ଧତା ହିଁ ତାଙ୍କର ରୁଚିଶୀଳ ସୃଷ୍ଟିସ୍ତୋତ୍ର ଯାହାର ପୁନଃପୁନଃ ଉଚ୍ଚାରଣ ଓ ଅନୁରଣନରେ ଦିବ୍ୟଜୀବନାନୁସନ୍ଧାନୀ ମାନବାତ୍ମାର ବାଂଛିତ ଜୀବନର ଅପୂର୍ବ ସ୍ୱର ମୂର୍ଚ୍ଛନାରେ ଗୁଞ୍ଜରିତ ହୁଏ । ପ୍ରେମର ସଂରଚନାରେ ଜୀବନ ହୁଏ ସାର୍ଥକ ଓ ପରିପୂର୍ଣ୍ଣ । କବି ପ୍ରଫୁଲ୍ଲ କୁମାର ମହାନ୍ତି ଆପଣା ସୃଷ୍ଟିକୁ ସାରସ୍ୱତ ପ୍ରେମ ଓ ପବିତ୍ରତାର ଫଲ୍‌ଗୁରେ ଶୁଚି ଓ କାନ୍ତି ପ୍ରଦାନ କରି ପାରିଛନ୍ତି ।

ପ୍ରେମ ହିଁ ଜୀବନର ବିଶୁଦ୍ଧତମ ରୂପ; ଯାହାର ସଂଚରଣଶୀଳତା, ବିମୂର୍ତ୍ତ ଭାବାବେଗରେ ଅପ୍ରତିହତ ପ୍ରଭାବ ଜୀବନର ସକଳ ବିଭବକୁ ଐଶ୍ୱର୍ଯ୍ୟବନ୍ତ, ସୌନ୍ଦର୍ଯ୍ୟଶୀଳ ଓ ରସମୟ କରିଥାଏ । କବିଙ୍କର 'ଶୂନ୍ୟର ବ୍ୟାସ' କବିତା ସଂକଳନରେ କାବ୍ୟପୁରୁଷର ପ୍ରେମ ମର୍ମରିତ ଆକୁତିରେ ବିପୁଳ ଜୀବନ ପ୍ରତି ଏକ ଅପୂର୍ବ ଉଚ୍ଛ୍ୱାସର ତୁଳନା ନାହିଁ । ପ୍ରେମ ଅମୂର୍ତ୍ତ ଆତ୍ମାର ସଂଯୋଗକାରୀ ସେତୁ, ଭୂମିହୀନ ଭୂମିର ନଭଶ୍ଚୁମ୍ବୀ ସୃଷ୍ଟିସୌଧ । ଯାହାର ପ୍ରକାଶରେ ଅନନ୍ତ ଜୀବନର ସତ୍ୟ-ଶିବ-ସୁନ୍ଦରର ରୂପ ମୂର୍ତ୍ତିମାନ । ଏକ ଅପୂର୍ବ ପ୍ରେମାନୁଭବରେ ଶାନ୍ତ ସ୍ଥିର କବିଚିତ୍ତ-

ସମ୍ଭାଳି ପାରିବ ମତେ ? ଖୁବ୍ ଭାରୀ ମୁଁ
ଗଭୀର ଓ ବ୍ୟାପ୍ତ ମୋର ପ୍ରେମ
ମୋ ପ୍ରେମର ହାତ ନାହିଁ ଓଠ ନାହିଁ
ଆଲିଙ୍ଗନ ଚୁମ୍ବନର ମୋହ ନାହିଁ,
ନାହିଁ ମଧ୍ୟ ଦେବାନେବା ପାପପୁଣ୍ୟ
ସଂସାର ବାଲିଘର ଶାମୁକାର ମୋତିରାଗ

ଅଛି ଖାଲି ଅଶାନ୍ତ ଜୁଆର ପରି ଢ଼ାଳି ଦେବାପାଇଁ
ଅକ୍ଷୟ ଫେଣଝରା ଆତ୍ମାର ସରାଗ ।

(ନବ ଯଦି ନିଅ)

ପ୍ରାପ୍ତିଅପ୍ରାପ୍ତିର, ଦେବାନେବାର ବନ୍ଧନରୁ ବହୁ ଉର୍ଦ୍ଧ୍ୱରେ ପ୍ରେମର ଅସ୍ତିତ୍ୱକୁ ଅନୁଭବ କରି କାବ୍ୟନାୟକ ଜୀବନର ଯାତ୍ରାପଥରେ ପ୍ରଶାନ୍ତ-ଉଦାର ମନ ନେଇ ଗତିଶୀଳ । ଅନ୍ୟପାଇଁ ଆପଣାକୁ ସମର୍ପି ଦେବାର, ଅନ୍ୟକୁ ଆପଣାପଣରେ ଜଡ଼ାଇ ରଖିବାର ଏକ ଅନନ୍ୟ ସାଧନାରେ କବି ଆତ୍ମବିଭୋର । ଆପଣାର ପ୍ରେମମୟ ଅନ୍ତର୍ଦୃଷ୍ଟିରେ ବିଶ୍ୱକୁ ଅବଲୋକନ କରିବାର ମହତ୍ତର ଆକାଂକ୍ଷା ସେ ହୃଦୟରେ ପୋଷଣ କରନ୍ତି । ସଂସାର ଜୀବନର ସକଳ ପ୍ରବାହ ଭିତରେ ମହାସ୍ନାନ କରି ଯୋଗମୟ ବିଭୂତିରେ ଆପଣାକୁ ଲେପିତ କରନ୍ତି ଓ ବିଶ୍ୱଜୀବନରେ ସନ୍ଦର୍ଶନ କରନ୍ତି ପ୍ରେମଯୋଗର ସେଇ ମହାଲୀଳା-

ସବୁଦିନ ମୋ ପାଇଁ ଯୋଗଦିବସର ଆବିଶ୍ୱ ଆଲୋକ

ସବୁ ପ୍ରାଣୀ ମୋ ପାଇଁ ପ୍ରେମାସନେ ଜୀବନ ସାଧକ

(ପ୍ରେମ ଯୋଗ)

ପ୍ରୀତିମୁଗ୍ଧ କବିଚିତ୍ତ ଜୀବନର ବିପୁଳ ବନ୍ଦନାରେ ମୁଖରିତ । ସୌନ୍ଦର୍ଯ୍ୟପିପାସିତ ମନରେ, ଜୀବନ ଓ ଜଗତର ପ୍ରତିଟି ଦୃଶ୍ୟପଟ୍ଟ ପାଇଁ ବିପୁଳ ଆକର୍ଷଣରେ, ସୃଷ୍ଟିକୁ ଭଲ ପାଇବାର ଗଭୀର ଅବବୋଧରେ, ପ୍ରେମିକ ପୁରୁଷର ଗଭୀର ଦୃଷ୍ଟିରେ ପ୍ରତିନିୟତ ସେ ମାଟି-ମଣିଷ ଓ କେବେ ପୁଣି ପ୍ରିୟତମାର ବନ୍ଦନାରେ ଆତ୍ମବିସ୍ମୃତ ହୋଇପଡ଼ନ୍ତି । ପ୍ରେମିକ କବିର ଅନ୍ତର ଗାଇଉଠେ-

ମୁଁ ଖାଲି ପ୍ରେମିକ ଗଛଲତା ମାଟି ମଣିଷର
ସୌନ୍ଦର୍ଯ୍ୟ, ସୁଷମା ଆଉ ଆତ୍ମାର ସଂଭାର
ମୁଁ ଭଲପାଏ ଦେହମନ ଆତ୍ମାର ଐଶ୍ୱର୍ଯ୍ୟବିକାର
ମୋ ପ୍ରିୟା ଆଖିରେ ଦେଖେ ସମୟର
ଗୋଲାପ-ପଳାସ ।            (ଜେଲ (୭)

ପ୍ରେମ ପାଇଁ କବିର ଅନ୍ତହୀନନିରବ ସାଧନା, କେବେ କେବେ ବିରହ ଦଗ୍ଧ ପୃଥିବୀରେ ମିଳନର ଅପୂର୍ବ ଛନ୍ଦ-ରାଗ ସୃଷ୍ଟି ପାଇଁ ସତତ ବ୍ୟାକୁଳ ତ କେବେ ସକଳ ଜୀବନରେ ପ୍ରେମର ଅନିର୍ବଚନୀୟ ମଧୁ-ସୁରଭି ଭରିଦେବାକୁ ପ୍ରୟାସରତ । ପୃଥିବୀରେ

ଶାନ୍ତି ଓ ପ୍ରେମର ସହାବସ୍ଥାନ ପାଇଁ ସେ ପ୍ରୀତିର ଗଙ୍ଗାବତରଣ ପାଇଁ ସାଧନାରତ । ପ୍ରେମ ପାଇଁ ସାଧନାର ଏଇ ପ୍ରସ୍ଥରେ ତ୍ୟାଗ ହିଁ ପ୍ରେମକୁ ମଧୁର ଓ ଉଜ୍ଜ୍ୱଳତର କରିବାକୁ ସକ୍ଷମ । ତାଙ୍କର 'ବିଳାପ ଛନ୍ଦ'ରେ କବି କୁହନ୍ତି, "ହୁଏତ ମୋ 'ବିଳାପ ଛନ୍ଦ'ରେ ମଉଳା ଫୁଲମାନେ ପୁଣି ନାଚିବେ / କମାଇ ଦେବେ ଅରଣ୍ୟର ନିଦାଘ ଜ୍ୱାଳାକୁ/ମୁଁ ପଛେ ଜଳେ ନିଜ ଅଗ୍ନିରେ, କାହାରି ପଣତରେ ନଲାଗୁ ନିଆଁ ।''

ଜୀବନ ଓ ଜଗତକୁ ସେ ଭଲପାନ୍ତି ନିବିଡ଼ ଭାବରେ, ସୃଷ୍ଟିର ସକଳ ମୂର୍ତ୍ତ ଓ ଅମୂର୍ତ୍ତ ପ୍ରକାଶମାନ ରୂପ ମଧ୍ୟରେ ନିହିତ ସୌନ୍ଦର୍ଯ୍ୟର ଦର୍ଶନରେ ସେ ବିଭୋର । ପ୍ରଣୟ ମୁଗ୍ଧ କବିଚିତ୍ତରେ ଆପଣାର ପ୍ରେମାସ୍ପଦା ପାଇଁ ପ୍ରୀତି ଆକର୍ଷଣ ଗଭୀର । ଜୀବନର ବିପୁଳ ଐଶ୍ୱର୍ଯ୍ୟକୁ, ନିଜର ମନ ପ୍ରାଣକୁ ପ୍ରେମିକା ନିକଟରେ ସମର୍ପି ଦେବାରେ ସେ ଅକୁଣ୍ଠଚିତ୍ତ । କବିଙ୍କର ନିବିଡ଼ ଅନୁଭବ ଘଟିଛି ଯେ ତାଙ୍କର ସମଗ୍ର ସତ୍ତାକୁ ଆକାଶ ପରି ଆବୋରି ରହିଛି ତାଙ୍କର ପ୍ରେମିକା । ଅଥଚ ପ୍ରେମିକା ତାଙ୍କର ଅନୁରୋଧ କରୁଛି ତାଙ୍କର ହୃଦୟପଟ୍ଟରୁ ତାକୁ ଲିଭେଇ ଦେବାକୁ ।

ତାର ଉତ୍ତରରେ କବି କୁହନ୍ତି-

ମୁଁ ତ କେବେ ଲିଭେଇନି କିଛି
କେମିତି କହୁଛ ଲିଭେଇ ଦେବାକୁ
ତୁମ ପ୍ରତିଛବି ଯାହା ମୋର ମନ ଆତ୍ମା
ଆବୋରି ବସିଛି ଆକାଶ ପରି
ମୋ ଦିନରାତିର କାୟାପଲଟକୁ । (ମୋର ସବୁ ଅଲିଭା)

x x x

ପୁଣି ଆଉ ପଦେ ଅନ୍ୟତ୍ର ଲକ୍ଷ୍ୟ କରାଯାଉ-

ତଥାପି ଦେଖ ଦେଖ ମୋର ଚିରା ଛାତିରେ ଦେଖ
କେମିତି କଏ ଆଙ୍କିଦେଲା ପରି ରହିଛୁ ତୁ ।
ସେଇ ସାଗର ଗହୀରା ଆଖିରେ ପ୍ରୀତିର ଦୀପ୍ତି
ନେଇ ଝଲସୁଛୁ ତୁ, ହସର ଚାପାଚାପା ଆଭାସରେ ।

(କଣ ବା ଦେବି ତତେ)

କବିଙ୍କ ପାଇଁ ପ୍ରୀତିବେଦନା ଜୀବନସଂଜୀବନୀର ମନ୍ତ୍ର ହୋଇଛି । ପ୍ରେମାସ୍ପଦା ପାଇଁ ଅନ୍ତରର ଚିର ସମର୍ପଣ ଭାବ ପ୍ରତିନିୟତ ପ୍ରକାଶିତ ହୋଇଛି । ପ୍ରଣୟ ବିଭୋର କବି ଆପଣାର ପ୍ରୀତିର ପ୍ରକାଶ ମଧ୍ୟରେ ସାରସ୍ୱତ ଜୀବନର ମଧୁରତାକୁ ପ୍ରତ୍ୟକ୍ଷ କରିଛନ୍ତି । ସେଥିପାଇଁ କବି ଆଶାପୋଷଣ କରନ୍ତି ଯେ ଯୁଗଯୁଗ ପାଇଁ ଏହା ସେହିପରି ଅମ୍ଳାନ ହୋଇ ରହିବ । ପ୍ରେମିକ କବି ପ୍ରିୟାର ପାଦତଳେ ଅଜାଡ଼ି ଦିଅନ୍ତି ତାଙ୍କ ଆତ୍ମାର ସବୁ ପ୍ରେମ, ପ୍ରିୟାର ଶରୀରରେ ଲେପନ କରନ୍ତି ମହମହ ପ୍ରୀତିର ଚନ୍ଦନ ।

କିନ୍ତୁ ବିରହରେ ହିଁ ବୁଝିହୁଏ ପ୍ରେମର ସାର୍ଥକତା । ପ୍ରୀତିର ଗଭୀରତା ଓ ହୃଦୟର ଏକନିଷ୍ଠତାକୁ । ପ୍ରଣୟତଲ୍ଲୀନ କବିଚିତ୍ତରେ ପ୍ରେମର ଚିରନ୍ତନ ପରିପ୍ରକାଶ ବିରହରେ ହୋଇଛି ଅଧିକ ଜୀବନ୍ତ ଓ ପ୍ରାଣସ୍ପର୍ଶୀ । "ତୁମେ ଗଲାପରେ'' ଶିରୋନାମାରେ ରହିଛି ଛଅଟି କବିତା । ମର୍ମସ୍ପର୍ଶୀ ଏହାର ଆବେଦନ । ସ୍ପର୍ଶକାତର ପାଠକ ପ୍ରାଣକୁ ଉଦ୍‌ବେଳିତ କରେ ବିରହର କାରୁଣ୍ୟବୋଧରେ । ଜୀବନର ସର୍ବସ୍ୱ ମନେ ହେଉଥିବା, ପ୍ରାଣ, ମନ, ଆତ୍ମାକୁ ଅହରହ ଆବୋରି ରହିଥିବା, ଶୟନେ-ସ୍ୱପନେ-ଜାଗରଣେ ପ୍ରେମିକ ହୃଦୟରେ ପ୍ରୀତିକଲ୍ଲୋଳ ସୃଷ୍ଟି କରୁଥିବା ପ୍ରେମସ୍ପଦା ଜଣକ ହଠାତ୍ ବାଟହୁଡ଼ି ଅଜଣାପଥର ପଥିକ ହୋଇଗଲେ କ'ଣ ହୁଏ ତା'ର ପ୍ରୀତିତଲ୍ଲୀନ ମଣିଷଟିର !

ତା'ପାଇଁ ହଠାତ୍ ବଦଳିଯାଏ ଋତୁଚକ୍ର; ପୋଡ଼ିଯାଏ ପଦ୍ମବନ, ଜହ୍ନତାରା ମେଘର ଚାଦର ଘୋଡ଼ିହୋଇ ମୁହଁ ଢ଼ାଙ୍କି ଦିଅନ୍ତି, କଇଁ ଆଉ ପାଖୁଡ଼ା ମେଲାଏନାହିଁ । ସାମାଜିକତାର ବନ୍ଧନ ଭିତରେ ସେ ଅଣନିଃଶ୍ୱାସୀ ହୋଇପଡ଼େ । ପ୍ରିୟତମାର ଫେରିବା ପଥକୁ ଚାହିଁ ରହିବା ମନା ହୋଇଯାଏ, ଛଳ ଛଳ ଆଖିରେ ତା'ର ଛବି ଦେଖିବା ମନା ହୋଇଯାଏ; କ'ଣ ହୁଏ ତାର ଅବସ୍ଥା ପ୍ରମିଥିୟସ ମରି ପ୍ରତିଦିନ ପୁଣି ଜୀବନ୍ୟାସ ପାଏ; ପୁଣି ମରିବା ପାଇଁ ବିନା ପ୍ରତିବାଦରେ ବିନା ବିଚାରରେ । ଏହି ହେଉଛି ପ୍ରେମିକର ଭାଗ୍ୟ, ଯାହାକୁ ମାନିନେବାକୁ ହୁଏ ନିଃସର୍ତ୍ତରେ ।

'ଶୂନ୍ୟର ବ୍ୟାସ' କବିତା ସଂକଳନରେ ରହିଛି ବୟାନବେଟି କବିତା । ଭିନ୍ନ ଭିନ୍ନ ଭାବଭୂମି ଉପରେ ସେଗୁଡ଼ିକ ଆଧାରିତ । ପୃଥିବୀ, ସମୁଦ୍ର, ସୂର୍ଯ୍ୟ-ଚନ୍ଦ୍ର-ତାରା ଓ ଗ୍ରହମଣ୍ଡଳ ଭିତରେ ଅତିକ୍ରମଣ ଚାଲିଛି ଅହରହ । ସାଧାରଣ ଜୀବନଯାତ୍ରା ଭିତରେ ଘଟୁଛି ଅସାଧାରଣତାର ଅନୁଭବ । କେବେ କବି ଚେତନା ଶୃଙ୍ଗରୁ ଶୃଙ୍ଗକୁ ଆରୋହଣ

କରିଚାଲିଛି ତ କେବେ ପାତାଳ-ବିତଳ-ରସାତଳର ଗଭୀରତା ଭିତରକୁ ବୁଡ଼ ମାରିଛି । କେବେ ଭେଟୁଛି ଆଲୋକକୁ ତ କେବେ ପୁଣି ନିଶ୍ଚିହ୍ନ ହୋଇଯାଉଛି ଅନ୍ଧକାର ଗର୍ଭରେ । ସଂସାର ତା'ର ସତ୍ତାରେ ହୁଏତ କେବେ ଚନ୍ଦନର ଛୁଆଁଟିକେ ଦେଉ ଦେଉ ଠେଲିଦିଏ ପୁଣି ତାକୁ ଅଗ୍ନିଦହନକୁ ।

କିନ୍ତୁ ଦହନ, ପୀଡ଼ନ, ଯନ୍ତ୍ରଣା ଓ ଅନ୍ତହୀନ ବିରହ କବିଚିତ୍ତକୁ ଜୀବନ ଓ ଜଗତ ପ୍ରତି ଶୁଷ୍କ, ଉଦାସୀନ ଓ ନିସ୍ପୃହ କରିଦେଇପାରିନି । କାରଣ ତା'ର ଉତ୍ତରିତ ଚେତନାରେ ମିଳନ-ବିରହ, ଆଲୋକ-ଅନ୍ଧାର, ପ୍ରାପ୍ତି-ଅପ୍ରାପ୍ତି, ପୃଥିବୀ-ଆକାଶ, ଚନ୍ଦ୍ର, ତାରା ଓ ଗ୍ରହ ଆଦି ସମାହିତ ହୋଇଯାଇଛନ୍ତି । ନହେଲେ କ'ଣ ଶୂନ୍ୟର ବ୍ୟାସ କଳନା କରିବାପାଇଁ କବି ପ୍ରୟାସ କରିପାରିଥାନ୍ତେ ।

ମୋର ପ୍ରାର୍ଥନା ସାର୍‌ଙ୍କର ଶୁଭ ସ୍ୱନକ୍ଷତ୍ର ଦିବସ ଏହିପରି ଏକଶତ ବର୍ଷ ପର୍ଯ୍ୟନ୍ତ ପାଳିତ ହେଉଥାଉ ଏବଂ ତାଙ୍କର ଶୁଣିବା, କହିବା ଓ ନିରାମୟ ରହିବା ସହିତ ସାରସ୍ୱତ ସାଧନା ଅବ୍ୟାହତ ରହୁ ।

ଅଭୀପ୍ସା, ପ୍ଲଟ ୧୦୨,
ଶହିଦନଗର, ଭୁବନେଶ୍ୱର-୭
ଦୂରଭାଷ- ୯୪୩୭୨୨୭୮୨୦

# ମଝି ଆକାଶର ପକ୍ଷୀ

**ଡକ୍ଟର ହରପ୍ରସାଦ ପରିଛା ପଟନାୟକ**

ଇଂରାଜୀ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ଅଶୀ ବର୍ଷ ପୂର୍ତ୍ତି ଅବସରରେ ପ୍ରକାଶିତ ହେଉଥିବା ଏକ ଅଭିନନ୍ଦନିକା ପାଇଁ ଏ କ୍ଷୁଦ୍ର ଆଲେଖ୍ୟ। ଅଶୀ ବର୍ଷରେ ମଧ୍ୟ ସେ ଚଳଚଞ୍ଚଳ; ତାଙ୍କର ଚିନ୍ତନ ଓ କଲମ ମଧ ଚଳଚଞ୍ଚଳ। ମହାପ୍ରଭୁ ଜଗନ୍ନାଥଙ୍କ ପାଖରେ ପ୍ରାର୍ଥନା ଯେ ସେ ଦୀର୍ଘଜୀବୀ ହୁଅନ୍ତୁ ଏବଂ ତାଙ୍କର ଚିନ୍ତନ ଲିଖନ ସେହିପରି ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ଋଦ୍ଧିମନ୍ତ କରୁଥାଉ।

ଓଡ଼ିଆ ବୌଦ୍ଧିକ ଜଗତରେ ଡ. ପ୍ରଫୁଲ୍ଲ କୁମାର ମହାନ୍ତି ଜଣେ ବିରଳ ବ୍ୟକ୍ତିତ୍ୱ। ସେ ବୋଧହୁଏ ଓଡ଼ିଶାର ଏକମାତ୍ର ସମ୍ପତ୍ତି ଯିଏ ଏକାଧାରରେ ଜଣେ ନାଟ୍ୟକାର, ନାଟ୍ୟାଭିନେତା, ନାଟ୍ୟ ନିର୍ଦ୍ଦେଶକ ଓ ସଂଳାପ ଲେଖକ; ସେ ମଧ ଜଣେ କବି, ଗାଳ୍ପିକ, ପ୍ରାବନ୍ଧିକ, ସମାଲୋଚକ, ସୁବକ୍ତା, ସମୀକ୍ଷକ, ସ୍ତମ୍ଭକାର, ଅନୁବାଦକ, ଧୂରୀଣ ପାଠକ ଓ ସମ୍ପାଦକ। ଏ ସମସ୍ତ ବିଭାଗରେ ତାଙ୍କର ଯେଉଁ ସ୍ୱାକ୍ଷର ରହିଛି ତାହା ଖୁବ୍ କମ୍ ସାଧକଙ୍କ ଭିତରେ ଦେଖିବାକୁ ମିଳେ। କେବଳ ସାହିତ୍ୟ ସଂସ୍କୃତି ନୁହେଁ, ଦେଶ ଓ ବିଦେଶର ବିଭିନ୍ନ ଜଟିଳ ସମସ୍ୟା, ରାଜନୀତି ଓ ରାଜନୀତିକ ଦ୍ୱନ୍ଦ୍ୱ ଉପରେ ଲିଖନ ଓ ଭାଷଣରୁ ତାଙ୍କର ବିଚକ୍ଷଣତା ବାରିହୋଇ ପଡ଼େ। ତାହା ସେ ଲେଖୁଥିବା 'ସମ୍ବାଦ', 'ସନ୍ ଟାଇମ୍ସ', 'ସର୍ବସାଧାରଣ' ଇତ୍ୟାଦି ବିଭିନ୍ନ ଖବରକାଗଜର ନିୟମିତ ସ୍ତମ୍ଭରେ ବିଶେଷତଃ 'ସମୟ' ଖବରକାଗଜର ସମ୍ପାଦକୀୟ ପୃଷ୍ଠାର ଦ୍ୱିତୀୟ ସମ୍ପାଦକୀୟରୁ ବାରିହୁଏ। ତାଙ୍କ ଗଦ୍ୟର ଏକ ନିର୍ଦ୍ଦିଷ୍ଟ ଅନ୍ତଃଛନ୍ଦ ପାଠକଙ୍କୁ ଆକର୍ଷିତ କରିଥାଏ, ଫଳରେ ସମ୍ପୂର୍ଣ୍ଣ ଲେଖାଟିକୁ ପଢ଼ିବା ପାଇଁ ପାଠକ କୌଣସି କ୍ଳେଶ ବା ବିରକ୍ତିଭାବ ଅନୁଭବ କରେନାହିଁ।

ପ୍ରଫୁଲ୍ଲ ବାବୁଙ୍କ ନାଟ୍ୟପ୍ରୀତି ଓ ସର୍ଜନା ପାଇଁ ଆଗ୍ରହ ସେ ବ୍ରହ୍ମପୁରସ୍ଥ ଖଲ୍ଲୀକୋଟ କଲେଜରେ ପଢ଼ିବା ବେଳଠୁ ଆରମ୍ଭ ହୋଇଥିବା ଜଣାଯାଏ । କଲେଜ୍‌ର ନାଟ୍ୟ ସଂସଦରେ ସକ୍ରିୟ ଅଂଶଗ୍ରହଣ କରିବା ଓ ଅଭିନୟ କରିବା ତାଙ୍କର ରକ୍ତଜ ହୋଇଯାଇଥିଲା । ତେଣୁ ନିଜ କଲେଜ ଛଡ଼ା ବ୍ରହ୍ମପୁରର ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନରେ ହେଉଥିବା ନାଟକଗୁଡ଼ିକର ସେ ନିର୍ଦ୍ଦେଶନା ଦେବାଠାରୁ ଆରମ୍ଭ କରି ମଞ୍ଚସଜ୍ଜା ଇତ୍ୟାଦିରେ ସେ ଆଗ୍ରହ ନଉଥିଲେ । ପରେ ପରେ ସେ ଆଗ୍ରହ ଇଂରାଜୀ ଓ ଓଡ଼ିଆ ନାଟକରେ ଦେଖିବାକୁ ମିଳେ । ସେକ୍ସପିୟରଙ୍କ 'ଅଥେଲୋ' ନାଟକରେ ଜଣେ ପେଶାଦାର ଅଭିନେତା ଭଳି ହିରୋ ଅଥେଲୋ ଭୂମିକାରେ ଅଭିନୟ କରି ସେ ଦର୍ଶକମାନଙ୍କୁ ଚମତ୍କୃତ କରିଥିବାର ଦୃଷ୍ଟାନ୍ତ ରହିଛି । ତାଙ୍କ ନିଜସ୍ୱ ସୃଜନ 'କଳାଜହ୍ନ', 'ସରାଗ ସନ୍ନ୍ୟାସୀ', 'ମଲା ଆକାଶ' ଇତ୍ୟାଦି ନାଟକ ବିଭିନ୍ନ ମଞ୍ଚରେ ଅଭିନୀତ ହୋଇ ତାଙ୍କୁ ଯଶ ଆଣିଦେଇଛି । ନାଟକ କ୍ଷେତ୍ରରେ ପ୍ରଫୁଲ୍ଲ ବାବୁଙ୍କ ସବୁଠୁ ବଡ଼ ବିଶେଷତ୍ୱ ହେଲା ସେ ପ୍ରଥମେ ଭାବଚିତ୍ରକୁ ଅନୁଭବ କରି ସଂଳାପ ରଚନା କରନ୍ତି ।

କବିତା ଓ ଗଳ୍ପ କ୍ଷେତ୍ରରେ ମଧ୍ୟ ଡକ୍ଟର ମହାନ୍ତି ତାଙ୍କ ନାଟକୀୟ ଟେକ୍‌ନିକ୍ ବହୁଳ ଭାବରେ ବ୍ୟବହାର କରିଥାନ୍ତି । ଏପରିକି କବିତାରେ ସେ ପ୍ରେମ, ନିସଂଗତା, ହତାଶା ଇତ୍ୟାଦି ବିଷୟବସ୍ତୁକୁ ଅବତାରଣା କଲାବେଳେ ଜଣାଯାଏ ସେ କାହାକୁ ନା କାହାକୁ ନିଜ ବାଞ୍ଛିତ ବକ୍ତବ୍ୟ ପାଇଁ ସାମ୍ନାରେ ରଖିଥାନ୍ତି । ବୋଧହୁଏ ଡକ୍ଟର ମହାନ୍ତି ଅବାଞ୍ଛିତ କ୍ଲିଷ୍ଟତା ଓ ଅବୋଧ୍ୟତାକୁ ପସନ୍ଦ କରନ୍ତି ନାହିଁ । କବିତାରେ ଏକ ସ୍ୱଚ୍ଛ ଭାବକୁ ସଜାଇବା ପାଇଁ ଯେତିକି ସାଙ୍ଗୀତିକତା, ମୂର୍ଚ୍ଛନା ଓ ଆନ୍ତରିକତାର ଆବଶ୍ୟକ ତା'ଠାରୁ ଅଧିକ ଲେଖିଲେ ପାଠକଙ୍କ ପାଇଁ ଗ୍ରହଣଯୋଗ୍ୟ ହୋଇନଥାଏ । ଭାବରେ କ୍ଲିଷ୍ଟତା ଥାଇପାରେ କିନ୍ତୁ ଉପସ୍ଥାପନାରେ ଯେଉଁ କ୍ଲିଷ୍ଟତା ତାଙ୍କ ସମସାମୟିକ କବିମାନଙ୍କ ପାଖରେ ପରିଦୃଷ୍ଟ ହୁଏ, ତାହାହିଁ ପାଠକୀୟ ଅନାଗ୍ରହ ଆଣି ଦେଇଥାଏ । ତେଣୁ ତାଙ୍କ ସମୟର ଓଡ଼ିଆ କବିତା ପାଠକୀୟ ଆଦୃତି ନପାଇବାର ଏକ ମୁଖ୍ୟ କାରଣ ବୋଲି ପ୍ରଫେସର ମହାନ୍ତି ବିଶ୍ୱାସ କରନ୍ତି ।

ଜଣେ ସଚେତନ ସମାଲୋଚକ ଭାବେ ପ୍ରଫେସର ମହାନ୍ତି ପୌରାଣିକରୁ ଆଧୁନିକ ପର୍ଯ୍ୟନ୍ତ ଆମ ସାହିତ୍ୟର ସବୁ ବିଭାଗରେ ପ୍ରାୟତଃ ସମାଲୋଚନା ଲେଖି

ପାଠକୀୟ ମର୍ଯ୍ୟାଦା ପାଇପାରିଛନ୍ତି। ଭଗବଦ୍ ଗୀତା, ସାରଳା ମହାଭାରତ ଠାରୁ ଆରମ୍ଭ କରି ବିଭିନ୍ନ ଗ୍ରନ୍ଥର ମଧ୍ୟ ସେ ବ୍ୟାଖ୍ୟା କରି ନିଜସ୍ୱ ମତ ପ୍ରଦାନରେ କେବେହେଲେ କୁଣ୍ଠାବୋଧ କରିନାହାନ୍ତି। ଆମର ହେତୁ ହେବା ଦିନଠାରୁ ଆମେ ପ୍ରଫେସର ମହାନ୍ତିଙ୍କର ଲେଖା କଲିକତାରୁ ପ୍ରକାଶିତ ଓଡ଼ିଆ ପତ୍ରପତ୍ରିକାରୁ ଆରମ୍ଭ କରି ବିଭିନ୍ନ ପ୍ରମୁଖ ଖବରକାଗଜ ଏବଂ ଓଡ଼ିଶା ବାହାରେ ବାହାରୁଥିବା ଇଂରାଜୀ ପତ୍ରପତ୍ରିକାମାନଙ୍କରେ ମଧ୍ୟ ଦେଖିଆସିଛୁ। ଭଗବଦ୍ ଗୀତାକୁ ନେଇ 'ସମ୍ବାଦ'ରେ ପ୍ରକାଶିତ ଧାରାବାହିକ ନିବନ୍ଧ ତାଙ୍କର ମୌଳିକ ଓ ଅପାରମ୍ପରିକ ଦୃଷ୍ଟିଭଙ୍ଗୀ ପ୍ରତି ପାଠକୀୟ ଆକର୍ଷଣ ବାରି ହୋଇପଡ଼େ। ସେ ଗୀତାକୁ କେବଳ ହିନ୍ଦୁମାନଙ୍କ ଏକ ଧାର୍ମିକ ଗ୍ରନ୍ଥ ବୋଲି ବିଚାର ନକରି ସେଥିରେ ଥିବା ଉନ୍ନତ ସାହିତ୍ୟ ଓ ମାନବୀୟ ଆଚରଣର ଲୁକ୍କାୟିତ ଦିଗଗୁଡ଼ିକୁ ଉନ୍ମୋଚନ କରିଛନ୍ତି। ସେଇଥିପାଇଁ ବୋଧହୁଏ ଏଇସବୁ ଲେଖାଗୁଡ଼ିକୁ ନେଇ ପ୍ରସ୍ତୁତ ପୁସ୍ତକ 'ଭାରତୀୟ ସଂସ୍କୃତି ଓ ଭଗବଦ୍ ଗୀତା' ତାଙ୍କୁ ୨୦୦୫ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରରେ ସମ୍ମାନିତ କରିଛି। ଅନେକ କୁହନ୍ତି ଓ ଭାବନ୍ତି ଯେ ଗଦ୍ୟ ଓ ସମାଲୋଚନା ରସହୀନ ତେଣୁ ବିରକ୍ତିକର। କିନ୍ତୁ ପ୍ରଫେସର ମହାନ୍ତିଙ୍କର ଗଦ୍ୟରେ କାବ୍ୟିକ ଅନ୍ତଃସ୍ରୋତ ରହିଥିବାରୁ ପାଠକୀୟ ବିରକ୍ତି ପ୍ରକାଶ ପାଏନାହିଁ। ଏକଥା ମୁଁ ପୂର୍ବରୁ ଏଥିରେ ଉଲ୍ଲେଖ କରିଛି। ତାଙ୍କ ଦ୍ୱାରା ଇଂରାଜୀରେ ଲିଖିତ 'ସାରଳା ମହାଭାରତ' ବିଶ୍ୱ ପାଠକମାନଙ୍କ ପାଇଁ ଏକ ନିର୍ଭରଯୋଗ୍ୟ ଓ ଯଥାର୍ଥ ଗ୍ରନ୍ଥ। ବୋଧହୁଏ ଏହା ହେଉଛି ଓଡ଼ିଶାରେ 'ସାରଳା ମହାଭାରତ' ଉପରେ ଇଂରାଜୀରେ ଲିଖିତ ପ୍ରଥମ ଗ୍ରନ୍ଥ। ସମାଲୋଚନା ସାହିତ୍ୟକୁ ସେ ସବୁବେଳେ ସୃଜନାତ୍ମକ ଦୃଷ୍ଟିରେ ଦେଖନ୍ତି। ତେଣୁ ମୂଳ ଗ୍ରନ୍ଥରେ ଥିବା ଅନେକ ଅନାଲୋଚିତ ତଥ୍ୟକୁ ଆବିଷ୍କାର କରିବାରେ ସେ ବିଶ୍ୱାସ କରନ୍ତି।

ଅନୁବାଦ ସାହିତ୍ୟରେ ମଧ୍ୟ ପ୍ରଫେସର ମହାନ୍ତି ତାଙ୍କ ମନ ପସନ୍ଦର କିଛି ନାଟକ, କବିତା, ଗଳ୍ପ ଓ ଗଦ୍ୟ ସାହିତ୍ୟକୁ ଇଂରାଜୀରେ ଅନୁବାଦ କରିଛନ୍ତି। ଅନୁବାଦ କଲାବେଳେ ସେ ବେଳେବେଳେ ଏପରି ଭାବବିହ୍ୱଳ ହୋଇଯାଆନ୍ତି ଯେ ମୂଳଲେଖାର ସରହଦରୁ ଉଛୁଳି ପଡ଼ନ୍ତି। ବିଶିଷ୍ଟ ନାଟ୍ୟକାର ମନୋରଞ୍ଜନ ଦାସଙ୍କ 'କାଠଘୋଡ଼ା'କୁ (Wooden Horse) ଏବଂ ମନୋଜ୍ ଦାସଙ୍କ 'ଆରଣ୍ୟକ'କୁ ନେଇ ଏକ ବାୟୋପିକ୍ ମଧ୍ୟ ପ୍ରସ୍ତୁତ କରିଛନ୍ତି।

ସମ୍ପାଦନା କ୍ଷେତ୍ରରେ ମଧ୍ୟ ପ୍ରଫେସର ମହାନ୍ତିଙ୍କ ପ୍ରବଳ ନିଶା ସବୁବେଳେ କିଛି ଗୋଟେ ନୂଆକରି ଦେଖାଇବା ଭାବ ତାଙ୍କୁ ସମ୍ପାଦନା କ୍ଷେତ୍ରକୁ ଟାଣିଆଣିଛି । ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ସଂଗଠନ ଦ୍ୱାରା ପ୍ରକାଶିତ ମୁଖପତ୍ର ଠାରୁ ଆରମ୍ଭ କରି ପ୍ରମୁଖ ସାହିତ୍ୟ ପତ୍ରିକା ପର୍ଯ୍ୟନ୍ତ ସେ ସଂଶ୍ଳିଷ୍ଟ ଥିବା ସହ ଓଡ଼ିଆରେ ନିଜ ସଂପାଦନାରେ 'ବାଇଶି ପାହାଚ', 'ଏକବିଂଶ ଶତାବ୍ଦୀ', ସମୟ ଖବରକାଗଜର 'ସାପ୍ତାହିକୀ ସମୟ' ସଂପାଦନା କରିଛନ୍ତି । ଇଂରାଜୀରେ ତାଙ୍କର 'Luminous Illusions' ଶୀର୍ଷକ ଏକ ଇଂରାଜୀ କବିତା ସଂକଳନ ଥିବା ସହିତ ୧୦୦ ବର୍ଷର ଓଡ଼ିଆ କବିତାକୁ '100 Years of Odia Poetry' ତାଙ୍କ ଦ୍ୱାରା ଅନୂଦିତ ଓ ସଂପାଦିତ ହୋଇ ପ୍ରକାଶ ପାଇଛି ।

ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି ପେଶାରେ ଜଣେ ଇଂରାଜୀ ଅଧ୍ୟାପକ । ଏଯାଏ ଜୀବିତ ତାଙ୍କ ଛାତ୍ରମାନେ ତାଙ୍କର ଅଧ୍ୟାପନା ଶୈଳୀକୁ ଭୁଲିପାରି ନାହାନ୍ତି । ମୁଁ କେବେ ତାଙ୍କର ଛାତ୍ର ନଥିଲି, କିନ୍ତୁ ଶୁଣିଛି ପ୍ରଫେସର ମହାନ୍ତି ଯେତେବେଳେ କ୍ଲାସ୍‌ରେ ନାଟକ ପଢ଼ାନ୍ତି ସେ କ୍ଲାସ୍‌ରୁମ୍‌ଟି ଏକ ରଙ୍ଗମଞ୍ଚ ହୋଇଯାଏ । ଯେତେବେଳେ କବିତା ପଢ଼ାନ୍ତି ସେତେବେଳେ ସେ ଏକ ଦାର୍ଶନିକ ପକ୍ଷୀ ପରି ଶ୍ରେଣୀକକ୍ଷରେ ଘୂରିବୁଲନ୍ତି । ତାଙ୍କ ଶିକ୍ଷାଦାନ ଶୈଳୀ ସବୁବେଳେ ରୋମାଞ୍ଚକର ବୋଲି ଛାତ୍ରଛାତ୍ରୀମାନେ କୁହନ୍ତି । ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଥିବା ବେଳେ ଆମେରିକାର ଆୟବା ବିଶ୍ୱବିଦ୍ୟାଳୟରୁ ଫେଲୋସିପ୍ ପାଇ ଦୁଇମାସ ସାହିତ୍ୟିକ କାର୍ଯ୍ୟକ୍ରମ ବିନିମୟରେ ଯୋଗଦାନ କରିଥିଲେ । ସେ ରେଭେନ୍‌ସା, ବିଜେବି କଲେଜରୁ ଅଧ୍ୟାପନା ଆରମ୍ଭ କରି ଖଲ୍ଲିକୋଟ ମହାବିଦ୍ୟାଳୟର ଇଂରାଜୀ ସ୍ନାତକୋତ୍ତର ବିଭାଗ ମୁଖ୍ୟ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପ୍ରାଧ୍ୟାପକ, ରେଭେନ୍‌ସା ମହାବିଦ୍ୟାଳୟର ଇଂରାଜୀ ବିଭାଗର ପ୍ରଫେସର୍ ଓ ଅଧ୍ୟକ୍ଷ, ଖଲ୍ଲିକୋଟ କଲେଜର ଅଧ୍ୟକ୍ଷ, ଯୁକ୍ତ ଦୁଇ ପରିଷଦର ପ୍ରଥମ ସଂପାଦକ ଏବଂ ଶେଷରେ ତାର ଅଧ୍ୟକ୍ଷ, ଉଚ୍ଚଶିକ୍ଷା ବିଭାଗର ଉପନିର୍ଦ୍ଦେଶକ ଓ ନିର୍ଦ୍ଦେଶକ ଇତ୍ୟାଦି ଅନେକ ଶିକ୍ଷା ପ୍ରଶାସନିକ ଅଧିକାରୀ ଭାବେ କାର୍ଯ୍ୟ କରିଛନ୍ତି । ଏସବୁ ବିଷୟ ଅବତାରଣା କଲାବେଳେ ମୋର ଏକ ବ୍ୟକ୍ତିଗତ କଥା ମନେପଡ଼େ ।

୧୯୭୨ ମସିହା କଥା । Probitas ନାମକ ଏକ ସଂସ୍ଥା ଆମେ ବ୍ରହ୍ମପୁରଠାରେ ଗଠନ କରିଥିଲୁ । ତାହାର ଉପଦେଷ୍ଟା ଥିଲେ ପ୍ରଫେସର ମହାନ୍ତି । ଅନୁଷ୍ଠାନର ଉଦ୍ଦେଶ୍ୟ

ଥିଲା ମେଧାବୀ ଛାତ୍ରଛାତ୍ରୀମାନଙ୍କୁ ନିଜ ନିଜର ମେଧା ଅନୁଯାୟୀ ଉପରକୁ ଉଠାଇ ନେବା। ସର୍ଜନାତ୍ମକ ସାହିତ୍ୟ ଠାରୁ ଆରମ୍ଭ କରି ନୃତ୍ୟ, ଗୀତ, ସାମ୍ବାଦିକତା ଇତ୍ୟାଦି କ୍ଷେତ୍ରରେ ଆଗ୍ରହ ଥିବା ଛାତ୍ରଛାତ୍ରୀମାନଙ୍କୁ ନେଇ ଏଇ ସଂସ୍ଥା ଗଠିତ ହୋଇଥିଲା। ମୁଁ ସେତେବେଳେ ରେଭେନ୍‌ସା ମହାବିଦ୍ୟାଳୟରେ ସ୍ନାତକୋତ୍ତର ବିଭାଗରେ ପାଠ ପଢୁଥାଏ। ପ୍ରଫେସର ମହାନ୍ତି ଥାଆନ୍ତି ବ୍ରହ୍ମପୁର ଠାରେ। ଏହି ଅନୁଷ୍ଠାନ ଖୁବ୍ କମ୍ ଦିନ ମଧ୍ୟରେ ଏପରି ଜନାଦୃତ ହେଲା ଯେ ଅଣଛାତ୍ରମାନେ ମଧ୍ୟ ଯଥା ଡାକ୍ତର, ଇଂଜିନିୟର, ଅଧ୍ୟାପକ ଇତ୍ୟାଦି ଏହି ସଂଗଠନରେ ସାମିଲ ହେଉଥିଲେ। ଏସବୁ ପ୍ରଫେସର ମହାନ୍ତିଙ୍କର ସାଂଗଠନିକ ଦକ୍ଷତା ଯୋଗୁଁ ସମ୍ଭବପର ହୋଇଥିଲା। ପରେ ମୋ ସଂପାଦନାରେ Probitas ଓ Vortas ଭଳି ଦୁଇଟି ଉଚ୍ଚକୋଟୀର ତ୍ରୟୋମାସିକ ଇଂରାଜୀ ପତ୍ରିକା କିଛି ବର୍ଷ ଧରି ପ୍ରକାଶ ପାଇଥିଲା। ଏକଥା ଲେଖିବାର ଉଦ୍ଦେଶ୍ୟ ହେଲା ପ୍ରଫେସର ମହାନ୍ତି ଯେଉଁଥିରେ ମିଶିଯାଆନ୍ତି ତାହା ଜଳ ଭର୍ତ୍ତି ମାଠିଆ ପରି ମିଶିଯାଆନ୍ତି।

ମଣିଷ ଜୀବନର ପରିପୂର୍ଣ୍ଣତା ତା'ର ପ୍ରାପ୍ତିରେ ନଥାଏ; ଥାଏ ତା'ର ଆନ୍ତରିକ ଇଚ୍ଛା ଓ ଉଦ୍ୟମରେ। ସ୍ୱପ୍ନର ପରିପୂର୍ଣ୍ଣତାରେ ନୁହେଁ ବରଂ ସ୍ୱପ୍ନ ଦେଖିବାରେ। ଚିରସ୍ରୋତା ନଦୀର ଗର୍ଜନ ତର୍ଜନରେ ଥାଏ ଏକ ନିଃଶବ୍ଦ ସ୍ୱର, ହଜିଯିବାର ଅନନ୍ତ ଦୃଶ୍ୟ। ଅନନ୍ତ ଅନ୍ୱେଷଣ ହିଁ ଜଣକୁ ଉଚ୍ଚତର ଚେତନା ଭିତରେ ତଲ୍ଲୀନ କରାଇଥାଏ। ସେ ତଲ୍ଲୀନତା ହିଁ ବୃହତ୍ତର ଦୃଷ୍ଟିରୁ କାବ୍ୟ, ସୌନ୍ଦର୍ଯ୍ୟର ଉପାସନା ଓ ଅନୁଭବ ହିଁ ସାହିତ୍ୟର ନନ୍ତଃସ୍ୱର।

ପ୍ରଫେସର ମହାନ୍ତି ଜୀବନରେ ସବୁବେଳେ ଏପରି ଯାଗାରେ ଠିଆ ହୋଇଥାନ୍ତି ଯେଉଁଠି ମାଟି ଯେତେ ଦୂର ଆକାଶ ବି ସେତେ ଦୂର। ତାଙ୍କ ଜୀବନରେ ନକରାତ୍ମକ ଦର୍ଶନ ଦେଖିବାକୁ ମିଳେନା। ସେଇଥିପାଇଁ ସେ ଏଯାଏ ସକ୍ରିୟ। ପ୍ରାର୍ଥନା କରେ ତାଙ୍କୁ ବାର୍ଦ୍ଧକ୍ୟ ସ୍ପର୍ଶ ନକରୁ।

ପ୍ଲଟ୍ ନଂ ୨୯୧୪/୨

ରାଧାକୃଷ୍ଣ ନଗର, ପ୍ରଥମ ଲେନ୍

ଗ୍ୟାରେଜ୍ ଛକ, ଭୁବନେଶ୍ୱର -୨

ମୋ: ୯୪୩୭୧୨୭୭୨୮

# 'ଭାରତୀୟ ସଂସ୍କୃତି ଓ ଭଗବତ୍‌ଗୀତା' ଏକ ସମାଲୋଚନାତ୍ମକ ବିଚାର

ପ୍ରଫେସର ନିତ୍ୟାନନ୍ଦ ଶତପଥୀ

ଏ ପୁସ୍ତକଟିର କଳେବର ସର୍ବମୋଟ ୨୭ଟି ପ୍ରବନ୍ଧକୁ ନେଇ ସମୃଦ୍ଧ ହୋଇଛି । ଶତାବ୍ଦୀର ଶେଷ ଅଙ୍କରେ ଅର୍ଥାତ୍ ୨୦୦୦ ମସିହାରେ ସମ୍ଭବତଃ ଏ ପ୍ରବନ୍ଧଗୁଡ଼ିକ ପରିକଳ୍ପିତ । ଶତାବ୍ଦୀ ସରିଯିବା ସହିତ ବିଗତ ସମୟର ବହୁ ସ୍ମୃତି ଓ ବେଦନାକୁ ନେଇ ପ୍ରବନ୍ଧଗୁଡ଼ିକର ଦୃଶ୍ୟପଟ ଓ ଭାବପକ୍ଷ ନିର୍ମିତ । ବ୍ୟତୀତ ହୋଇଯାଇଥିବା ସମୟକୁ ଲେଖକ ହସକାନ୍ଦର ଇତିହାସବୋଳା ସମୟ ଭାବେ ନାମିତ କରିଛନ୍ତି । ସଂସ୍କୃତି ଓ ସଭ୍ୟତାରେ କି ପରିବର୍ତ୍ତନ ଆସିଛି ତାକୁ ଆକଳନ କରିବାକୁ ଚେଷ୍ଟା କରିଛନ୍ତି । ସେ ସଂସ୍କୃତି ନିଶ୍ଚୟ ଭାରତୀୟ ସଂସ୍କୃତି ହୋଇପାରେ ଯଦିଓ ସଭ୍ୟତା ସବୁବେଳେ ଆବିଶ୍ୱମଣ୍ଡଳି ମଧ୍ୟରେ ନାନାଦି ପରିବର୍ତ୍ତନର ବୈଚିତ୍ର୍ୟକୁ କୁକ୍ଷୀଗତ କରିବାକୁ ବାଧ ହୁଏ । କିନ୍ତୁ ୨୦୦୦ ମସିହା ଏପରି ଏକ ସମୟ ଯେତେବେଳେ କି ବିଶ୍ୱର ସଭ୍ୟତା ନାନାଦି କାରଣରୁ ସମନ୍ୱୟ ମଧ୍ୟରେ ଗତି କରିବାକୁ ବାଧ ହୁଏ ଯଦିଓ ବିଶ୍ୱର ସଂସ୍କୃତି ବୋଲି କୌଣସି ନିର୍ଦ୍ଦିଷ୍ଟତା ନଥାଏ । "କୌଣସି ଗୋଟିଏ ଭୌଗୋଳିକ ସୀମା ମଧ୍ୟରେ ରାଜନୀତିର ମାନଚିତ୍ର ଆଙ୍କିବା ଲୋକମାନଙ୍କର ଗତିବିଧି, ଶିକ୍ଷାଦୀକ୍ଷା, ନାଟତାମସା, ବିକାକିଣା, ପୂଜାପାଠ, ମନ୍ଦିର ମସ୍‌ଜିଦ୍, ବାହାବେଦୀ, ମଶାଣିପଦାର ରେଖା ଚିତ୍ର ମନକୁ ଆସିଯାଏ ।" ସଂସ୍କୃତି ଜାତିର ପରିଚୟ, ସଭ୍ୟତା ନୁହେଁ । ତେଣୁ ସଭ୍ୟତା ବାହ୍ୟ ଚକଚକ୍ୟକୁ ନେଇ ବାରମ୍ବାର ବଦଳୁଥିଲେ ବି ସଂସ୍କୃତି ନିଦାବିଷ୍ଟ ପରି ଜାତିର ମାନସପଟରେ ଆଚରଣର ଦାମ୍ଭିକତାକୁ ନେଇ ଅବିଚଳ ମନେହୁଏ । କିନ୍ତୁ ଶତାବ୍ଦୀ ସାରା ନାନା ବହିଃଦେଶର ଜନସାଧାରଣଙ୍କ ଆଗମନ ଭୌଗୋଳିକ ଭୂଖଣ୍ଡର ନିର୍ଦ୍ଦିଷ୍ଟତାକୁ ଧରି ରଖିପାରେ ନାହିଁ । ଅନେକ କଥା ଗୋଳିଆମିଶା ହୋଇଯାଏ । ବିଶେଷତଃ ବୈବାହିକ ବନ୍ଧନ ଓ ପରିବାର ପରିକଳ୍ପନା

ଯାହା ଏକଦା ପ୍ରାୟ ନିର୍ଦ୍ଦିଷ୍ଟ ଓ ଅବିମିଶ୍ର ଥିଲା ତାହା ନିଜର ସଂସ୍କୃତିକୁ ବଂଚେଇ ରଖିପାରେ ନାହିଁ । ତାହା ନିଜର ଜାତୀୟତାକୁ ଜଳାଂଜଳି ଦେଇ କ୍ରମେ ବୈଶ୍ୱିକ ହୋଇ ଉଠେ । ଉଦାହରଣଟିଏ ଦିଆଯାଇପାରେ, ଯାହା ମୋର ଅନୁଭୂତି ସଂଜାତ ଘଟଣା । ଭାରତର ଜଣେ ଯୁବକ କୌଣସି ୟୁରୋପୀୟ ରାଜ୍ୟର ଦୂତାବାସରେ ଉଚ୍ଚ ବେତନଭୋଗୀ କର୍ମଚାରୀ । ସେ ବିବାହ କରନ୍ତି ସେଇ ୟୁରୋପୀୟ ରାଜ୍ୟର ଜଣେ ନାରୀଙ୍କୁ ଯାହାକୁ ପ୍ରେମବିବାହ କୁହାଯାଇପାରେ । ଦୁଇଟି କନ୍ୟା ସନ୍ତାନର ସେମାନେ ଜନକ ଓ ଜନନୀ ହୁଅନ୍ତି । କେତେବର୍ଷ ସେମାନେ ଏକାଠି ରହି ଦୂତାବାସରୁ ଦୂତାବାସକୁ ବଦଳି ହୁଅନ୍ତି । କିନ୍ତୁ ଯେତେବେଳେ ପ୍ରମୁଖ କର୍ମଚାରୀ ଭାରତକୁ (ନିଜ ଜନ୍ମଭୂମି) ବଦଳି ହୋଇ ଆସନ୍ତି ବାପାଙ୍କ ସହିତ କନ୍ୟା ସନ୍ତାନ ଦୁଇଟି ଆସିଲେ ମଧ୍ୟ ମାଆ ଆଉ ଆସନ୍ତିନି । ଏ ଗୋଟିଏ ଉଦାହରଣ ମାତ୍ର । ଏହିପରି ଶହ ଶହ ହଜାର ହଜାର ପରିବାର ଯେ ଖଣ୍ଡବିଖଣ୍ଡିତ ହୋଇଯାଏ ତାହା କଳନା କରି ହେବନାହିଁ । ଏଠି ସମ୍ଭବତଃ ସଂସ୍କୃତିର ମିଳନ ହୋଇନଥିଲା ଯଦିଓ ହୋଇଥିଲା ଦେହର ମିଳନ । ତେବେ କନ୍ୟା ଦୁହେଁ ଯେ ପିତାଙ୍କ ସହିତ ରହିବା ପାଇଁ ମନ ସ୍ଥିର କରି ନିଅନ୍ତି ଏହା ହିଁ ଭାରତୀୟ ପାରିବାରିକ ସଂସ୍କୃତିର ସମ୍ମୋହ ହୋଇପାରେ । ଯାହା ଏତେ ଶୀଘ୍ର ତୁଟିଯାଇ ନପାରେ । ତେଣୁ ଲେଖକ ଯାହା କହିଛନ୍ତି "ବର୍ତ୍ତମାନ ପୃଥିବୀର ଏକ ଚରମ ବିଶେଷତ୍ୱ ଯେ ସାଂସ୍କୃତିକ ବିଭିନ୍ନତାର ଅବକାଶ ପ୍ରାୟ ନାହିଁ" - ଏଥିରେ ମୁଁ ଏକମତ ହୋଇପାରୁ ନାହିଁ ।

ଦ୍ୱିତୀୟ ପ୍ରବନ୍ଧରେ ଲେଖକ କୁହନ୍ତି ଯେ ଭାରତର ଉପସ୍ଥିତ ସଭ୍ୟତା ଓ ସଂସ୍କୃତି କହିଲେ କିଛି ବୁଝି ହୁଏନାହିଁ । କିନ୍ତୁ ସେ ସ୍ୱୀକାର କରନ୍ତି ଯେ ଭାରତ ହେଉଛି ବେଦପୁରାଣ, ରାମାୟଣ, ଗୀତା ଓ ଭାଗବତର ଭୂଖଣ୍ଡ । ଏ ଦେଶ ଅତୀତରୁ ଗୋଟିଏ ରାଜନୈତିକ ଶାସନ ଓ ପରମ୍ପରାରେ ନ ବଢ଼ିଥିଲେ ବି ଏ ଦେଶରେ ସାଂସ୍କୃତିକ ଐକ୍ୟ ଥିଲା । ତେଣୁ ବାରମ୍ବାର ବୈଦେଶିକ ଆକ୍ରମଣ ହୋଇଥିଲେ ବି (ଆଲେକ୍‌ଜାଣ୍ଡର ଓ ମହମ୍ମଦ ଗଜ୍‌ନୀ ଆଦି) ଏ ଦେଶର ସଂସ୍କୃତି ତଥାପି ଥିଲା ଅନାହତ । ମୋଗଲ ସାମ୍ରାଜ୍ୟ ପ୍ରତିଷ୍ଠା ପରେ ଭାରତର ପ୍ରାୟ ଅର୍ଦ୍ଧେକ ଭୂମି ଉପରେ ଗୋଟିଏ ଶାସନର ଆଧିପତ୍ୟ ବିସ୍ତାର ହୋଇ କିଛିଟା ଐକ୍ୟ ଆସିଛି । ଶାସକ ବା ଶାସିତ ଉଭୟଙ୍କ ପାଇଁ ଏକପ୍ରକାର ଶୃଙ୍ଖଳା ଆସିଥିବା ଇତିହାସ ପ୍ରମାଣ କରେ । "୧୯୪୭ ପୂର୍ବରୁ କେବଳ ଗାନ୍ଧି ଆଣିଥିବା ସ୍ୱାଧୀନତା-ଲକ୍ଷ୍ୟ ପ୍ରଣୋଦିତ ଏକତା

ବ୍ୟତୀତ ଏହି ଶତାବ୍ଦୀର ଆରମ୍ଭରେ ଭାରତୀୟ ଚେତନା କହିଲେ କିଛି ସଠିକ୍ ଅର୍ଥ ବାହାରୁ ନଥିଲା । ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ମଧ୍ୟ ଏହି ଏକତା ରାଜନୈତିକ ଲକ୍ଷ୍ୟ ଓ ମୌଳିକ ମାନବବୋଧ ଛଡ଼ା ସଂସ୍କୃତିର ଆବେଗ ସମାବେଶରେ ଏକାତ୍ମ ନଥିଲା । କେବଳ ଧର୍ମ ମଧ୍ୟରେ ଏକତା ରହି ପାରିଥିଲା । କାରଣ ସଂସ୍କୃତିର ନିୟାମକ ଥିଲା ଧର୍ମ । ଏଇ ଧର୍ମ ହିନ୍ଦୁମାନଙ୍କ ପାଇଁ ଈଶ୍ୱର ଉପାସନା, ମୁସଲମାନମାନଙ୍କ ପାଇଁ ଆଲାହାଙ୍କ ପୂଜା ଓ ବନ୍ଦନା ଏବଂ ଖ୍ରୀଷ୍ଟିଆନ୍‌ମାନଙ୍କ ପାଇଁ ଯୀଶୁଙ୍କ ଉପାସନାରେ ଆବଦ୍ଧ ଥିଲା । ଏଇ ସଂପ୍ରଦାୟର ଉପାସନା ପଦ୍ଧତି ମଧ୍ୟ ପରସ୍ପରଠାରୁ ଭିନ୍ନ ଥିଲା; ତଥାପି ଧର୍ମ ନାମରେ ଏକ ଏକ ବୃହତ୍ତର ଗୋଷ୍ଠି ମଧ୍ୟରେ ଏକାର ଭାବନା ପ୍ରତିଷ୍ଠିତ ହୋଇ ପାରିଥିଲା । କିନ୍ତୁ ଭାରତରେ କୌଣସି ରାଜବଂଶ ଏକାଦିକ୍ରମରେ ଶହେବର୍ଷ ଶାସନ କରିପାରି ନଥିବାରୁ ସମୁଦାୟ ଜନ ସଂଘ ଉପରେ କୌଣସି ଧର୍ମୀୟ ଶୃଙ୍ଖଳା କାର୍ଯ୍ୟକାରୀ ହେବା ସମ୍ଭବ ନଥିଲା । ତଥାପି ହିନ୍ଦୁ ସଂପ୍ରଦାୟର ଲୋକମାନଙ୍କ ସଂଖ୍ୟାଧିକତା ହେତୁ ସନାତନ ବୈଦିକ ସଂସ୍କୃତିକୁ ବିଭିନ୍ନ ଦେବାଦେବୀଙ୍କ ପରିକଳ୍ପନା ମଧ୍ୟରେ ପୂଜା କରାଯାଉଥିଲା । ଯେପରି ରାମ ଓ କୃଷ୍ଣ ବୈଷ୍ଣବ ସଂପ୍ରଦାୟର ପ୍ରତିନିଧିତ୍ୱ କରୁଥିଲେ; ଓଡ଼ିଶାରେ ଜଗନ୍ନାଥ ମଧ୍ୟ ଏହି ସଂପ୍ରଦାୟ ସହିତ ମିଶି ରହିଥିଲେ । ମହାରାଜ ଅଶୋକଙ୍କ ସମୟରେ ବୁଦ୍ଧଦେବଙ୍କୁ ବୌଦ୍ଧଧର୍ମର ପ୍ରତୀକ ଭାବେ ପୂଜା କରାଯାଉଥିଲେ ବି ମାତ୍ର କେତେ ଶହ ବର୍ଷ ମଧ୍ୟରେ ଈଶ୍ୱର (ବିଷ୍ଣୁ) ଓ ମହେଶ୍ୱର (ମହାଦେବ) ଆରାଧନା ପ୍ରଭାବରେ ବୌଦ୍ଧଧର୍ମ ତାର ଉତ୍ପତ୍ତି ସ୍ଥଳରୁ ଉତ୍ପାଟିତ ହୋଇ ଜାପାନ, ଚୀନ, କାମ୍ବୋଡ଼ିଆ, ଥାଇଲାଣ୍ଡ ଓ ସିଂହଳ ଆଦି ଦେଶରେ ଖୁବ୍ ପ୍ରଭାବ ବିସ୍ତାର କରିପାରିଥିଲା । ପ୍ରାୟ ଦଶମ-ଏକାଦଶ ଶତାବ୍ଦୀ ବେଳକୁ ଏ ଧର୍ମ ଭାରତରୁ ପ୍ରାୟ ବିଲୁପ୍ତ ହୋଇଥିଲା । ତଥାପି ଡକ୍ଟର ମହାନ୍ତିଙ୍କ ମତରେ "ବୈଦିକ ସାହିତ୍ୟ କାବ୍ୟିକ ଶୃଙ୍ଖଳା ଯେହେତୁ ସୁପରିକଳ୍ପିତ ନଥିଲା ଏବଂ ଜଳ ସ୍ଥଳ ଆକାଶର ଦେବଦେବୀ ଓ ସେମାନଙ୍କର ଜୀବନ ବିନ୍ୟାସ ଭିତରେ ଗୋଟିଏ ସୁସଂଯତ ସଂପର୍କ ପ୍ରତିଷ୍ଠା କରାଯାଇ ପାରିନଥିଲା । ଋଗ୍‌ବେଦରୁ ଆରମ୍ଭ ହୋଇ ଯେଉଁ କାବ୍ୟାନୁଶୀଳନର ପୃଥିବୀ କଳ୍ପିତ ହେଲା ହଜାର ହଜାର ବର୍ଷର ତର୍ଜମା ପରେ ମଧ୍ୟ ପ୍ରକୃତି, ମଣିଷ ଓ ଭଗବାନଙ୍କ ଭିତରେ ଏକ ସରଳ, ବୋଧଗମ୍ୟ ଏବଂ ଉଦାର ନମନୀୟ ସଂପର୍କ ପ୍ରତିଷ୍ଠିତ ହୋଇପାରିଲା ନାହିଁ ।" ପୃ ୧୪ । ଆମ କାବ୍ୟସାଧକମାନେ ବୈଦିକ ସଭ୍ୟତାର ଦେବଦେବୀମାନଙ୍କୁ ସୁସଂପର୍କିତ କରିପାରି ନାହାନ୍ତି ବୋଲି ଏ.ଏଲ୍.ବାସମ୍

ମତ ଦେଇଛନ୍ତି । ତାଙ୍କୁ ହିଁ ଅନୁସରଣ କରି ଡକ୍ଟର ମହାନ୍ତି କହନ୍ତି ଯେ ଆମର ଈଶ୍ୱର କଳ୍ପନା ମଧ୍ୟ ସର୍ବମୟ କର୍ତ୍ତାଙ୍କ ପୂର୍ଣ୍ଣ କଳ୍ପନା କରିପାରି ନାହିଁ । ତା'ହେଲେ ଆମର ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ପରିକଳ୍ପନା କ'ଣ ଅପୂର୍ଣ୍ଣ ? ଆମର ଅନେକ ଠାକୁର ଓ ଅନେକ ପ୍ରକାର ପୂଜା ପଦ୍ଧତି ଥାଇପାରେ; ସେସବୁ ସେଇ ସେଇ ଠାକୁରଙ୍କ ଅନନ୍ୟ ବିଶେଷତ୍ୱକୁ ନେଇ । କିନ୍ତୁ ବୈଦିକ ଦେବାଦିମାନଙ୍କ ମଧ୍ୟରେ ବିଷ୍ଣୁ ବା ଭଗବାନଙ୍କ ପରିକଳ୍ପନା ନିଶ୍ଚୟ ସବୁଧର୍ମକୁ ଏକତ୍ର କରିବାର ଶକ୍ତି ହାସଲ କରିଥିଲା । ବୁଦ୍ଧଦେବଙ୍କ ଆବିର୍ଭାବ ସେଇ ବିଷ୍ଣୁଙ୍କ ଅଂଶାବତାର ବୋଲି କବି ଜୟଦେବ 'ଦଶାବତାର'ରେ କହିଗଲେ । ଭାରତୀୟ ସଂସ୍କୃତିର ପୁନାଦି ପଡ଼ିଥିଲା ବେଦ ଓ ଉପନିଷଦ ମାନଙ୍କରେ । କେବଳ ଅଶୋକଙ୍କ ସମୟରେ ଏହି ବିଶାଳ ଭୂଖଣ୍ଡରେ ବୁଦ୍ଧବାଣୀ ପ୍ରଚାର ରାଜନୀତି ଓ ପ୍ରଶାସନରେ ଅଂଶୀଭୂତ ହୋଇ ପାରିଥିବାରୁ ତାହା ଐତିହାସିକ ଗୌରବ ହାସଲ କରିପାରିଥିଲା । ନଚେତ୍ ହିନ୍ଦୁ ସନାତନ ଧର୍ମର ପ୍ରଶସ୍ତ ଓ ଉଦାର ବୈଦିକ ବିଶ୍ୱାସ ବୌଦ୍ଧଧର୍ମରେ ନଥିଲା । ତେଣୁ ଭାରତବର୍ଷରୁ ବୌଦ୍ଧଧର୍ମ ସମୟକ୍ରମେ ଲୁପ୍ତ ହୋଇଲା ବୋଲି କୁହାଯାଇପାରେ । ଡକ୍ଟର ମହାନ୍ତି ମଧ୍ୟ ତାଙ୍କ ତୃତୀୟ ପ୍ରବନ୍ଧରେ ସ୍ୱୀକାର କରିଛନ୍ତି ଯେ ବୁଦ୍ଧଧର୍ମ ହିନ୍ଦୁଧର୍ମ ପରଂପରାର ଏକ ପ୍ରସାରଣ : ପ୍ରତିକ୍ରିୟାର ଅବଶ୍ୟମ୍ଭାବିତାରେ । କିନ୍ତୁ ଏ ହିନ୍ଦୁଧର୍ମ ଗୋଟିଏ ସଂପୂର୍ଣ୍ଣ ଜୀବନାଭିମୁଖୀର ବୁଦ୍ଧିମନ୍ତ କଳ୍ପନା, ପରିପୂରକ ମହାକାବ୍ୟ ବା ପୁରାଣ ଗଢ଼ିପାରିଲା ନାହିଁ ବା କାବ୍ୟଚିତ୍ର ରଖିପାରିଲା ନାହିଁ ବୋଲି ଯାହା ଲେଖିଛନ୍ତି ତାହା ବିଚାର ବିମର୍ଶର ଅପେକ୍ଷା ରଖେ । ଆମର ରାମାୟଣ ଓ ମହାଭାରତ ଏବେ ଇତିହାସର ମର୍ଯ୍ୟାଦା ଲାଭ କରିପାରିଛି । ତାହା କେବେ ବି 'ଇଲିଆଡ୍' ବା 'ଓଡ଼ିଶୀ' ବା 'ଏନିଡ୍' ବା 'ପାରାଡାଇଜ୍ ଲଷ୍ଟ' ଠାରୁ ନିକୃଷ୍ଟ ହୋଇନପାରେ । କଲୋନିଆଲ ଶାସକମାନଙ୍କ ପ୍ରଭାବରେ ରଚିତ ହୋଇଥିବା ଭାରତୀୟ ଇତିହାସ ରାମାୟଣ, ମହାଭାରତ ପରି ଗ୍ରନ୍ଥକୁ ଐତିହାସିକ ମର୍ଯ୍ୟାଦା ନଦେବା ଥିଲା ସେମାନଙ୍କ ଅଭିସନ୍ଧି । ତେଣୁ ଜର୍ମାନୀର ମୋକ୍ଷମୁଲାରଙ୍କ ପରି ସ୍କଲାରଙ୍କୁ ଲଣ୍ଡନରେ ଆର୍ଥିକ ବ୍ୟବସ୍ଥା କରାଇଦେଇ ତାଙ୍କରି ମାଧ୍ୟମରେ ଓ ଆହୁରି ଅନେକ ଅନୁଗତ ଐତିହାସିକଙ୍କ ମାଧ୍ୟମରେ 'ମହାଭାରତ' ଯେ ସଂପୂର୍ଣ୍ଣ ରୂପେ ଏକ କାଳ୍ପନିକ ପୌରାଣିକ ଗ୍ରନ୍ଥ ଓ ଭାରତ ଇତିହାସ ଖ୍ରୀଷ୍ଟଜନ୍ମର ତିନିହଜାର ବର୍ଷର ପୁରାତନ ସାମଗ୍ରୀ ନୁହେଁ, ଏହା ପ୍ରମାଣିତ କରିବା ପାଇଁ ଗଳଦ୍‌ଘର୍ମ ଉଦ୍ୟମ କରିଥିଲେ । ତେଣୁ ସେମାନେ ହିଁ ବେଦ ରଚନା ସମୟ ଓ ମହାଭାରତ ଯୁଦ୍ଧ ସମୟକୁ

ଖୁବ୍ ବେଶୀ ହେଲେ ଖ୍ରୀଷ୍ଟପୂର୍ବ ଏକହଜାର ବର୍ଷର ଘଟଣା ଭାବେ ବର୍ଣ୍ଣନା କରିଛନ୍ତି । କିନ୍ତୁ ହରପ୍ପା ଓ ମହେଞ୍ଜୋଦାର ଠାରେ ଭୂଖୋଦନ ପରେ ଯେଉଁ ଐତିହାସିକ ସମ୍ବଳ ଓ ଚିତ୍ର ମିଳିଲା ତାହା ଯେ ମହାଭାରତ ଯୁଦ୍ଧ ପୂର୍ବବର୍ତ୍ତୀ ସରସ୍ୱତୀ ସଭ୍ୟତାର ସତ୍ୟ କାହାଣୀ ଏକଥା ଏଇ ଇଂରାଜୀ ଐତିହାସିକମାନେ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି ।

ତୃତୀୟ ପ୍ରବନ୍ଧରେ ଡକ୍ଟର ମହାନ୍ତି ଅନେକଟା ସମାଧାନ ଓ ସମନ୍ୱୟର ବାର୍ତ୍ତା ପ୍ରଦାନ କରିଛନ୍ତି । କହିଛନ୍ତି - "ମୋର ଏକଥା କହିବା ଉଦ୍ଦେଶ୍ୟ ନୁହେଁ ଯେ ବୈଦିକ ସଂସ୍କୃତି ଓ ସାହିତ୍ୟ ମଧ୍ୟରେ ପ୍ରଶାସନିକ ଢାଞ୍ଚା ନଥିଲା କିମ୍ବା କୌଣସି ଅନ୍ତର୍ନିହିତ ଦୋଷ ଓ ଦୁର୍ବଳତା ଯୋଗୁ ବୈଦିକ ସଂସ୍କୃତି ପ୍ରାଣୀର ବିଶ୍ୱର ପୂରାପୂରି କେନ୍ଦ୍ରୀଭୂତ କରିପାରିଲା ନାହିଁ । ମୋର କହିବା କଥା ଯେ ତତ୍ତ୍ୱ, ଧର୍ମ ଓ ପ୍ରଶାସନ ମଧ୍ୟରେ କୌଣସି ସାମାଜିକ ସେତୁ ନଥିଲା । ଆର୍ଥିକ ଉନ୍ନତି ଏବଂ ଦେହମନର ସର୍ବନିମ୍ନ ଆରାମ ସାଧନ ପାଇଁ କୌଣସି ବ୍ୟବସ୍ଥା ନଥିଲା ସେଥିରେ ।" ପୃ ୧୭ । କଥାଟା ସ୍ପଷ୍ଟ ହେଉନାହିଁ । ଦେହ ଓ ମନର ଆରାମ ସାଧନ ପାଇଁ ବୈଦିକ ସାହିତ୍ୟରେ କିଛି ବାର୍ତ୍ତା ନଥିଲା କହିବା ଦ୍ୱାରା ଲେଖକ କ'ଣ କହିବାକୁ ଚାହୁଁଛନ୍ତି ତାହା ସ୍ପଷ୍ଟ ହୁଏ ନାହିଁ । ତାଙ୍କ କହିବା କଥା ହେଲା - "ଗୋଟିଏ ସଂପୂର୍ଣ୍ଣ ଜୀବନାଭିମୁଖ୍ୟର ବୁଦ୍ଧିଦୀପ୍ତ କଳ୍ପନା, ପରିପୂରକ ମହାକାବ୍ୟ ବା ପୁରାଣ ଗଢ଼ି ପାରିଲା ନାହିଁ । ରାମାୟଣ, ମହାଭାରତ ସେହି ଦୃଷ୍ଟିରୁ ଇତିହାସର ଗୌରବ ପାଇ ନାହିଁ । 'ଇଲିଆଡ୍'ବା 'ଓଡ଼ିଶୀ' ବା 'ଇନିଡ୍' ବା ପାରାଡାଇଜ୍ ଲଷ୍ଟ' ପରି ଏକ ନିଖୁଣ, ବିରାଟ, କାବ୍ୟିକ ଯୁକ୍ତି ସମ୍ବଳିତ ଧାରା ବାଢ଼ି ପାରିନାହିଁ ଆମର ମହାକାବ୍ୟ ପରଂପରା ।" ଆମର ମହାକାବ୍ୟ (ରାମାୟଣ, ମହାଭାରତ ଓ ଭାଗବତ) ପରଂପରା ଏପରି ଭାବେ ଆମ ଦେଶର ସଂସ୍କୃତିକୁ ବାନ୍ଧି ରଖିପାରିଛି ଯାହା ଫଳରେ ଆଜି ବି ଆମେ ବିଶ୍ୱ ଦରବାରରେ ସେଥିପାଇଁ ନିନ୍ଦିତ ହେଉଛେ । ଲେଖକ ଯେଉଁ ଇଂରାଜୀ ପୁସ୍ତକମାନଙ୍କର ଅବତାରଣା କରଛନ୍ତି ସେସବୁ ଲେଖା ହେବାରବହୁ ପୂର୍ବରୁ ଆମର ରାମାୟଣ ଓ ବ୍ୟାସଦେବଙ୍କ କୃତ 'ମହାଭାରତ' ରଚିତ ହୋଇସାରିଥିଲା ଓ ଏ ବିଶାଳ ଦେଶର ସଂସ୍କୃତି ତଥା ଇତିହାସ ପାଇଁ ଏକ ମଜଭୁତ୍ ମୂଳଦୁଆ ସ୍ଥାପିତ କରିପାରିଥିଲା । ଆଜି ଆମେ ଏଥିପାଇଁ ଗର୍ବ କରିବା କଥା । ବେଦ ଓ ଉପନିଷଦ ମାନଙ୍କରେ ଲୀଳାର ଅନୁଭୂତି ଯେ ନାହିଁ ଏକଥା ଠିକ୍ ନୁହେଁ । ବହୁ ରୋମାଣ୍ଟିକ୍ ଓ କରୁଣ କାହାଣୀମାନ ରହିଛି ଯାହାକୁ

ଡକ୍ଟର ମହାନ୍ତିଙ୍କ ଭାଷାରେ ଲୀଳାଧର୍ମୀ କୁହାଯାଇପାରେ । ଆଉ ରାମାୟଣ ଓ ମହାଭାରତରେ କେବଳ ଲୀଳା ହିଁ ଲୀଳା । ଏ ଦୁଇ ମହାକାବ୍ୟରେ ନାଟକୀୟତାର ଅଭାବ ଅଛି ବୋଲି କେବେ ବି କୁହାଯାଇ ପାରିବ ନାହିଁ । ଡକ୍ଟର ମହାନ୍ତିଙ୍କ ମତରେ ମହାଭାରତରେ ଚରିତ୍ର ବିଚିତ୍ରା ମଧ୍ୟରୁ କୃଷ୍ଣଙ୍କୁ ସାମାଜିକ ବାସ୍ତବତା ଭିତରକୁ ଆଣି ଲୀଳାମୟ କରିବାର ଆବଶ୍ୟକତା ଉପଲବ୍ଧ ହୋଇଥିଲା ବୁଦ୍ଧୋତ୍ତର ଭାରତରେ - ଏକଥା ଠିକ୍ ନୁହେଁ । କାରଣ ବୁଦ୍ଧୋତ୍ତର ଭାରତ ଖ୍ରୀଷ୍ଟପୂର୍ବ ୫୭୦ ପରବର୍ତ୍ତୀ ଭାରତ ଯେତେବେଳେ ବୁଦ୍ଧଙ୍କର ମହାନିର୍ବାଣ ଘଟିଥିଲା । ମହାଭାରତର କୃଷ୍ଣଲୀଳା କିନ୍ତୁ ଖ୍ରୀଷ୍ଟପୂର୍ବ ୩୦୦୦ ବର୍ଷ ପୂର୍ବର । ମହାକବି ବ୍ୟାସଦେବ ଶ୍ରୀକୃଷ୍ଣଙ୍କ ଜନ୍ମ ଓ ମୃତ୍ୟୁର ଯେଉଁ କୁଣ୍ଡଳୀ ଗଣନା କରିଯାଇଛନ୍ତି ତହିଁରେ କୃଷ୍ଣଙ୍କ ଜନ୍ମ ଖ୍ରୀଷ୍ଟପୂର୍ବ ୩୨୦୦ ଓ ମୃତ୍ୟୁ ଖ୍ରୀଷ୍ଟପୂର୍ବ ୩୧୦୨ ଦିନ ୨ ଘଟିକା ୨୭ ମିନିଟ ୩୦ ସେକେଣ୍ଡରେ ବୋଲି ସାବ୍ୟସ୍ତ ହୋଇଛି । କୃଷ୍ଣଙ୍କ ମୃତ୍ୟୁ ଦିବସ ଦିନ ହିଁ ପୃଥିବୀକୁ କଳିଯୁଗର ଆଗମନ ହୋଇଥିଲା । ଏହି ଦିବସ ହିଁ କୃଷ୍ଣଙ୍କ ମହାପ୍ରୟାଣ ଦିବସ ବୋଲି ବ୍ୟାସଦେବ ସାବ୍ୟସ୍ତ କରିଛନ୍ତି । ଏହାର ୩୬ ବର୍ଷ ପୂର୍ବରୁ କୁରୁକ୍ଷେତ୍ରରେ ମହାଭାରତ ଯୁଦ୍ଧ ଖ୍ରୀ.ପୂ.୩୧୩୮ ମସିହାରେ ହୋଇଥିବା ବ୍ୟାସଙ୍କ ଗଣନାରୁ ସାବ୍ୟସ୍ତ ହୋଇଛି । ଅବଶ୍ୟ ସେତେବେଳେ ହସ୍ତିନା ରାଜସିଂହାସନରେ ଅନ୍ଧ ଧୃତରାଷ୍ଟ୍ର ବସିଥିବାରୁ ଓ ସେ ଅତିରିକ୍ତ ପୁତ୍ରବତ୍ସଳ ଥିବାରୁ ବହୁ ବହୁ ଅନ୍ୟାୟକୁ ପ୍ରଶ୍ରୟ ଦେଉଥିବା 'ମହାଭାରତ'ରୁ ଜଣାଯାଏ । କିନ୍ତୁ ସେତେବେଳେ କୌଣସି ନମସ୍ୟ ଅବତାର ପୁରୁଷର ଅଭାବ ହେତୁ ଭାରତୀୟ ଜୀବନରେ ବିଶୃଙ୍ଖଳାର ଅନ୍ଧକାର ଘୋଟି ଯାଇଥିଲା ବୋଲି ଯାହା କହିଛନ୍ତି ତାହା ଠିକ୍ ନୁହେଁ । କାରଣ ଅବତାରୀ ପୁରୁଷ ଶ୍ରୀକୃଷ୍ଣ ସେତେବେଳେ ଜନ୍ମ ହୋଇ ସାରିଥିଲେ ଓ ବିଧର୍ମୀ ରାକ୍ଷସମାନଙ୍କ ବିରୁଦ୍ଧରେ ବାଲ୍ୟକାଳରୁ ତାଙ୍କ ଅଦ୍ଭୁତ କ୍ରିୟା ଦେଖାଇ ଚାଲିଥିଲେ । ଶ୍ରୀକୃଷ୍ଣଙ୍କ ପୂର୍ବରୁ ଜନ୍ମ ହୋଇଥିଲେ ମହାପୁରୁଷ ଶ୍ରୀରାମଚନ୍ଦ୍ର । ତାଙ୍କର ସମଗ୍ର ଜୀବନ ତ୍ୟାଗ, ଆଦର୍ଶ ଓ ରାକ୍ଷସମାନଙ୍କ ଦମନରେ ପ୍ରାୟ ବିତିଗଲା । ଦେଶପାଇଁ ସେ ନିଜର ବ୍ୟକ୍ତିଗତ ପାରିବାରିକ ସୁଖକୁ ଜଳାଞ୍ଜଳି ଦେଇଥିଲେ । ତାଙ୍କର ସମଗ୍ର ଯୌବନକାଳ ମହାପ୍ରତାପୀ ରାକ୍ଷସରାଜ ରାବଣଙ୍କୁ ଦମନ କରିବାରେ ହିଁ ବିତିଥିଲା । ତେଣୁ ରାମାୟଣର ବାସ୍ତବ ନାୟକ ରାମ ନୁହନ୍ତି ଦଶରଥ ଏପରି କହିବା ତାତ୍ପର୍ଯ୍ୟହୀନ ବୋଲି ମନେହୁଏ । ପୁଣି ଡକ୍ଟର ମହାନ୍ତି ତାଙ୍କୁ ଅବତାର-ପୁରୁଷ ବୋଲି ସ୍ୱୀକାର କରିନାହାନ୍ତି । କହିଛନ୍ତି ସୀତା-ନିର୍ବାସନ ରାମଙ୍କୁ ଭଗବାନ କରିବା ଚେଷ୍ଟାରେ ତାଙ୍କୁ

ଜଣେ ଆତ୍ମ-ବିଶ୍ୱାସହୀନ ପୁରୁଷ ବୋଲି ଥୋଇଛି । ତେଣୁ ସମାଜ ଓ ବାସ୍ତବ ବଂଚିବା ଦୃଷ୍ଟିରୁ ରାମ ଏକ ଆତ୍ମ-ନିର୍ଲିପ୍ତ ପୁରୁଷ ହୋଇ ପଡ଼ିଛନ୍ତି । ସେ ନିଜକୁ ମଧ ଅବିଶ୍ୱାସ କରନ୍ତି, ତାଙ୍କର ପ୍ରଶାସନିକ ଯୋଗ୍ୟତା ସନ୍ଦେହଜନକ । ଅବତାର ପରିକଳ୍ପନା ତେଣୁ ଆଂଶିକ ଭାବେ ସଫଳ ।" ଏସବୁ କଠିନ ମନ୍ତବ୍ୟ ଭାରତୀୟ ବୈଦିକ ସଂସ୍କୃତି ଦୃଷ୍ଟିରୁ ମୋ ମତରେ ଅସମୀଚୀନ । ଭାରତୀୟ ବୈଦିକ ସଂସ୍କୃତି ତାଙ୍କ ପରି ଜଣେ ମହାନ୍ ପୁରୁଷଙ୍କୁ ଭଗବାନଙ୍କ ଅବତାର ଭାବେ ସ୍ୱୀକାର କରୁଥିଲାବେଳେ ଆମେ ଆଧୁନିକ ଚିନ୍ତା ଓ ଚେତନାର ବିଚାର ମାନଦଣ୍ଡରେ ଏସବୁ କଥାକୁ କଳନା କରି ପାରିବା ନାହିଁ । ଆମ ବିଚାରର ମାନଦଣ୍ଡ ଭ୍ରମ ବୋଲି ହିଁ ପ୍ରମାଣିତ ହେବ । ଏ ଯୁଗପୁରୁଷଙ୍କ ଠାରୁ ଭାରତୀୟ ସଂସ୍କୃତି କ'ଣ ପାଇଛି ତାହା ହିଁ ଆମ ବିଚାରର ପରିସର ହେବା କଥା ।

ସ୍ୱାଭାବିକ ଭାବେ ପରବର୍ତ୍ତୀ ପ୍ରବନ୍ଧରେ କୃଷ୍ଣଙ୍କ ବିଷୟରେ ଆଲୋଚନା କରାଯାଇଛି ଓ ଏ ଆଲୋଚନାଟି ସବୁଦିଗରୁ ମନୋଜ୍ଞ ଓ ପରିପୂର୍ଣ୍ଣ ମନେ ହେଉଛି । ଆଗରୁ ଲେଖକ ଯେଉଁ ଲୀଳା ସମ୍ପର୍କରେ ଉଲ୍ଲେଖ କରିଥିଲେ, 'ଭାରତୀୟ ବିଶ୍ୱାନୁଭୂତି: କୃଷ୍ଣ' ପ୍ରବନ୍ଧରେ ସେ ଲୀଳାର ମହିମା ଗାନରେ ଲେଖକ ମନ୍ତ୍ରମୁଗ୍ଧ ହୋଇଛନ୍ତି । ତାଙ୍କ ମତରେ କୃଷ୍ଣ "ମଣିଷର ଉଦାର ପ୍ରାଣକୁ ରସାନ୍ୱିତ କରେ । ମଣିଷକୁ ଓ ତାର ଉତ୍କର୍ଷକୁ ଭଲପାଇ ବିଶ୍ୱାନୁଭୂତିର ଅନନ୍ତ ରୂପ ସେ ବହନ କରେ । ମଣିଷର ଶିଶୁ, କିଶୋର, ଯୁବକ, ପ୍ରୌଢ଼ ଓ ବୃଦ୍ଧାବସ୍ଥା, ବଂଚିବାର ସବୁ ଉଚ୍ଛ୍ୱାସ ସବୁ ମୁଦ୍ରା, ସବୁ ସ୍ୱାଭିମାନ, ସବୁ ରହସ୍ୟ ବୃନ୍ଦର ପ୍ରାଣମୟ ପୂର୍ଣ୍ଣପ୍ରକାଶ ହେଉଛନ୍ତି ଶ୍ରୀକୃଷ୍ଣ ।" (ପୃ୬୫) । ଭଗବାନଙ୍କ ଯେଉଁ ଦଶାବତାର କଥା ହିନ୍ଦୁ ଶାସ୍ତ୍ରମାନଙ୍କରେ ପରିକଳ୍ପନା କରାଯାଇଛି ସେଥିରେ ବିବର୍ତ୍ତନବାଦ ଅପେକ୍ଷା ସଂସ୍କୃତି ଓ ସଭ୍ୟତାର କଥା ଅଧିକ କୁହାଯାଇଛି ବୋଲି ପ୍ରାବନ୍ଧିକ ସ୍ୱୀକାର କରନ୍ତି । ପୁଣି କହନ୍ତି - "ଏ ପୃଥିବୀରେ ମଣିଷର ସବୁ ଭଲ ଓ ମନ୍ଦବୁଦ୍ଧି, ସବୁ ଦୈହିକ ଓ ମାନସିକ ଶକ୍ତି, ସବୁ ଜ୍ଞାନ ଓ ବିଳାସର ସମ୍ଭାବ୍ୟ ମହତ ପୁରୁଷ ହେଉଛନ୍ତି କେବଳ କୃଷ୍ଣ ।" କୃଷ୍ଣ ଏକ ମହାବ୍ୟାପ୍ତ ଚେତନା । ସାମାଜିକ ଜୀବନକୁ ପ୍ରକୃତି ପରି ସ୍ୱୈର ସମୃଦ୍ଧିରେ ଗଢ଼ିବା ଥିଲା ତାଙ୍କର ଭାରତୀୟ ସଂସ୍କୃତିକୁ ମହାନ ଅବଦାନ । ବିଲକ୍ଷଣ, ବିଶୃଙ୍ଖଳା ଓ ସ୍ୱାଭାବିକ ବିକାଶର ବିଭିନ୍ନତାକୁ ଯୁକ୍ତି ଓ ଜ୍ଞାନର ବାସ୍ତବ ପ୍ରୟୋଗ ଦ୍ୱାରା ସଂସ୍ଥାପନ କରିବାରେ କୃଷ୍ଣ ଭାରତୀୟ ଅନୁଭୂତିର ଶ୍ରେଷ୍ଠତମ ଅବଦାନ ଥିଲେ । ଇନ୍ଦ୍ରିୟ, ମନ ଓ ଆତ୍ମାର ସ୍ୱଚ୍ଛଳ ବିକାଶରେ ବାଧା

ନଦେଇ ଭାରତୀୟ ଜୀବନଧାରାକୁ ନ୍ୟାୟ ସମ୍ବଳିତ ପରିଣତିରେ ସଂଗଠିତ କରିବା ଥିଲା ତାଙ୍କର ଆମ ସଂସ୍କୃତିକୁ ମହାନ ଅବଦାନ । କୃଷ୍ଣ ରସିକ, ଭଦ୍ର, କର୍ମଯୋଗୀ ଓ ଜ୍ଞାନୀ । ସେ ସତ୍ୟ ଓ ନ୍ୟାୟର ଉପାସକ ଓ ପ୍ରତିଷ୍ଠାତା । ସେ ମଧ୍ୟ ଜଣେ ଅନନ୍ୟ ଆଦର୍ଶ ବ୍ୟକ୍ତିତ୍ୱ ଯେ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ବିଶିଷ୍ଟ ଅତିଥିମାନଙ୍କ ପାଦ ଧୋଇଦେବାର ଦାୟିତ୍ୱ ନିଜେ ବହନ କରି ପାରନ୍ତି । ଅଥଚ ରାଜସୂୟ ଯଜ୍ଞକୁ ଭ୍ରଷ୍ଟ କରିବାକୁ ଆତ୍ମପ୍ରୌଢ଼ି ଦେଖାଇ ଆସିଥିବା ରାଜା ଶିଶୁପାଳକୁ ଅତିଥି ହେଲେ ବି ଚକ୍ର ପେଶି ହତ୍ୟା କରିପାରନ୍ତି । ରାଜନୀତି, କୂଟନୀତି, ଅଭ୍ୟର୍ଥନ, ସମ୍ବର୍ଦ୍ଧନା ସବୁରେ ସେ ପ୍ରଥମ ପୁରୁଷ । ପ୍ରେମିକ ଭାବରେତ ସମଗ୍ର ପୃଥିବୀରେ ସେ ଏକନମ୍ବର ସ୍ଥାନରେ ଅବସ୍ଥାନ କରିବେ । ଗୋପର ଆଭିରିନାରୀମାନଙ୍କ ସହିତ କୈଶୋରରୁ ଯୌବନ ଯାଏ କେତେ ରଙ୍ଗ ରସରେ ଜୀବନ ବିତାଇଥିବା ଏଇ ମହାନ୍ ପୁରୁଷ ମଥୁରାକୁ ଯାତ୍ରା କରିବା ମାତ୍ରେ ଏ ପ୍ରେମର ହୁଏତ ସମାପ୍ତି ଘଟେ, ସେଥିପାଇଁ ତାଙ୍କୁ ଭାଳେଣି ନଥାଏ । କାରଣ ଦୁଷ୍ଟ, କାମୁକ, ଲଂପଟ କଂସକୁ ବଧ କରିବା ଯେପରି ତାଙ୍କର ପରମ କର୍ତ୍ତବ୍ୟ - ମଥୁରାରେ ଶାନ୍ତି ପ୍ରତିଷ୍ଠା ମଧ୍ୟ ସେହିପରି ଚରମ ଦାୟିତ୍ୱ ବୋଲି ସେ ଭାବନ୍ତି । ତାଙ୍କୁ ଜନ୍ମ ଦେଇଥିବା ପିତାମାତାଙ୍କୁ ବନ୍ଦୀଶାଳାରେ ରଖି ଗୋଟିଏ ପରେ ଗୋଟିଏ ସେମାନଙ୍କ ସାତୋଟି ସନ୍ତାନଙ୍କୁ ଛେଚି ନିଜହାତରେ ହତ୍ୟା କରିଥିବା ଦୁଷ୍ଟ ରାଜାଙ୍କୁ ସେ କ'ଣ କ୍ଷମା ଦେଇପାରନ୍ତେ? ସମଗ୍ର ମଥୁରା ଭୟ ଓ ଆତଙ୍କରେ ଜଡ଼ସଡ଼ ହେଉଥିଲାବେଳେ, ସେ କେବେ ବି ଗୋପରେ ତାଙ୍କ ପ୍ରେମ-ଲୀଳା ମଧ୍ୟରେ ଛନ୍ଦିହୋଇ ରହିପାରନ୍ତେ ନାହିଁ । ସେହିପରି ମହାଭାରତ ଯୁଦ୍ଧ ଥିଲା ସମଗ୍ର ଭାରତ ପାଇଁ ଏକ ଆବଶ୍ୟକତା । ଦୁର୍ଯୋଧନର ଅହଂକାର ଓ ଶକୁନୀର ମନ୍ତ୍ରଣାରେ ମନ୍ତ୍ରସ୍ଥ ଭୀଷ୍ମ, ଦ୍ରୋଣ, କୃପ ଆଦି ମହାନ୍ ବ୍ୟକ୍ତିମାନଙ୍କୁ ତଥା ନ୍ୟାୟ ପକ୍ଷରେ ଆଜନ୍ମ ଠିଆ ହୋଇଥିବା ପାଣ୍ଡୁ-ସନ୍ତାନମାନଙ୍କୁ ନ୍ୟାୟଦାନରେ ସେ କେବେ ବି କାର୍ପଣ୍ୟ ଦେଖାଇ ପାରିନଥାନ୍ତେ । ସେ ହେଉଛନ୍ତି ପରଂବ୍ରହ୍ମ ବିଷ୍ଣୁ ଯେ ଅନନ୍ତ ଆକାଶ ଓ ସସାଗରା ଧରାର ପ୍ରତିଟି ଘଟଣାକୁ ନିଜ ପ୍ରାଣସତ୍ତାରେ ଭୋଗ କରି କଷ୍ଟ ସହୁଥିବା ଭଗବାନ - ଯେ ଶେଷକୁ ନିଜ ବିଧର୍ମୀ ସନ୍ତାନମାନଙ୍କୁ ମଧ୍ୟ ଧ୍ୱଂସ କରିଦେବାର ଅଙ୍ଗୀକାର ବହନ କରି ପାରିଥିଲେ । ତେଣୁ ନିଜ ବଂଶ ନିଜ ଆଖି ଆଗରେ ଧ୍ୱଂସ ହୋଇଯିବାର ଦେଖି ମଧ୍ୟ ସେ ବିଚଳିତ ହୋଇନଥିଲେ । ନିର୍ଲିପ୍ତ, ନିରାଧାର ପରମ ପୁରୁଷ - ଶେଷକୁ ନିଜେ ବି ଜଣେ ଶବରର ବାଣରେ ମୃତ୍ୟୁବରଣ କରିବସିଲେ । ସେପରି ମୃତ୍ୟୁକୁ ସେ

ନିଜେ ସ୍ୱାଗତ ମଧ୍ୟ କରିଥିଲେ । ଏ ଅସାଧାରଣ ଚରିତ୍ର ସମଗ୍ର ପୃଥିବୀର କାବ୍ୟକୋଷରେ ଆଉ କେଉଁଠି ପ୍ରକଟିତ ହୋଇଥିବାର ନଜିର ନାହିଁ । ସେ ଅଦ୍ୱିତୀୟ । ବିକଳ୍ପହୀନ ଓ ସ୍ୱୟଂସଂପୂର୍ଣ୍ଣ ସଂଜ୍ଞାଚ୍ୟୁତ ବ୍ୟକ୍ତିତ୍ୱ - ତାଙ୍କୁ କେବଳ ବ୍ୟାସଦେବଙ୍କ ପରି ମହାନ୍ କବି ହିଁ ସଠିକ୍ ଭାବରେ ଅଙ୍କନ କରିପାରିଥିଲେ । ଯୁଦ୍ଧକ୍ଷେତ୍ରରେ ମଧ୍ୟ ସେ ହୋଇପାରନ୍ତି ଅର୍ଜୁନଙ୍କ ସାରଥୀ - ଅର୍ଥାତ୍ ରଥବାହକ । ଯାହାର ଇଂଗିତରେ ଅନାୟାସରେ ଦୁର୍ଯ୍ୟୋଧନର ପକ୍ଷ ସମର୍ଥନ କରିଥିବା ରାଜା ଓ ବ୍ୟକ୍ତିମାନେ ନିହତ ହୋଇ ପାରିଥା'ନ୍ତେ ସେ କିନ୍ତୁ ବିଷାଦଗ୍ରସ୍ତ ପ୍ରିୟସାଥୀ ଅର୍ଜୁନଙ୍କୁ କର୍ତ୍ତବ୍ୟାକର୍ତ୍ତବ୍ୟର ବାଣୀ ଶୁଣାଇ [illegible] । ଏହି ଲୀଳାମୟ ପୁରୁଷର ପ୍ରତିଟି କାର୍ଯ୍ୟ ଓ ପ୍ରତିଟି କଥା ଆଜି ଭାରତୀୟ ସଂସ୍କୃତିର ନିଦର୍ଶନ ହୋଇ ରହିଛି । ଅର୍ଥାତ୍ ଧରଣୀ ପୃଷ୍ଠରେ ମଣିଷର ସବୁ ସମ୍ଭାବନାର ସେ ହେଉଛନ୍ତି ବିଶ୍ୱରୂପ । "ଦେହ ଓ ମନର ବିଭିନ୍ନ ଇଚ୍ଛା, ଲାଳସା, ଆଶା, ବୀରପଣ, ରାଜନୀତି, ଅର୍ଥନୀତି, କୂଟନୀତି, ଚାରୁକଳା ପ୍ରେମ, ଜ୍ଞାନ, ବିଚାର, ବୋଧି ଓ ବିଶ୍ୱାସର ସେ ହେଉଛନ୍ତି ମହାସତ୍ତା; ସବୁ ସମ୍ଭାବନାର ବିଶ୍ୱରୂପ - ଶ୍ରୀକୃଷ୍ଣ ।" (ପୃ୭୩) । ପ୍ରାବନ୍ଧିକଙ୍କ ଭାଷାରେ "ପୃଥିବୀର ସାଂସ୍କୃତିକ ଇତିହାସରେ କୌଣସି ଜାତିର ଇତିହାସ-ସାହିତ୍ୟରେ ଏପରି ଏକ ମହାଭୂମିକାର ପୁରୁଷ ରଚିତ ହୋଇନାହିଁ" (ପୃ୭୮) । କିନ୍ତୁ ଗୀତାକୁ ତାଙ୍କର ୯ମ ଓ ୧୦ମ ପ୍ରବନ୍ଧରେ ଲେଖକ ଅନାଟକୀୟ ବୋଲି ଉଲ୍ଲେଖ କରିଛନ୍ତି । ଗୀତାର ୧୧ଶ ଅଧ୍ୟାୟରେ ଭଗବାନ କୃଷ୍ଣଙ୍କର ଅର୍ଜୁନଙ୍କୁ ବିଶ୍ୱରୂପ ପ୍ରଦର୍ଶନ ତେବେ କ'ଣ ଅନାଟକୀୟ ? ଏହାର ପ୍ରତ୍ୟେକ ଶ୍ଳୋକ ପାଠକକୁ ରୋମାଞ୍ଚିତ କରେ । ଅର୍ଜୁନ ତ ସହଜରେ ଭୟଭୀତ ହୋଇ କୃଷ୍ଣଙ୍କର ଏ ବିଶ୍ୱରୂପକୁ ନିର୍ବାକ୍ ଭାବେ ନିରୀକ୍ଷଣ କରିଛନ୍ତି । ଆଉ କେଉଁ ନାଟକୀୟତା କଥା ପ୍ରାବନ୍ଧିକ କହୁଛନ୍ତି ? 'Understanding Poetry' ପୁସ୍ତକର କେତୋଟି ଧାଡ଼ିକୁ ଉଦ୍ଧାର କରିଛନ୍ତି ପ୍ରାବନ୍ଧିକ "As far as poetry is concerned, an idea is worthless unless it is dramatised in the poem, unless it seems to grow out of the poem." କିନ୍ତୁ ଏ ମନ୍ତବ୍ୟ ଗୀତାର ନାଟକୀୟତାକୁ ଆକ୍ଷେପ କରିଛି ବୋଲି ମନେ ହୁଏନାହିଁ । ଯୁଦ୍ଧକ୍ଷେତ୍ରରେ ଏତେ ସମୟ ଧରି ଏତେ ବିଶାଳ ତତ୍ତ୍ୱଜ୍ଞାନ ଯେ ବିତରଣ କରାଯାଇପାରେ 'ଗୀତା' ହିଁ ତାର ଭାବକଳ୍ପ । ଲେଖକ ଯଥାର୍ଥ କହିଛନ୍ତି, "ଗୀତାକୁ ଘେରି ରହିଛନ୍ତି ଭାରତୀୟ ମୂଲ୍ୟବୋଧ ଓ ପରଂପରାର ଇତିହାସ ଭୂଗୋଳର ଗୋଲକମାନେ ।" ଆମେ ଆମ ଜୀବନର ବିଷାଦତମ ମୁହୂର୍ତ୍ତରେ

ଏ ବହିଟିକୁ ପାଠ କଲେ ଯଦି ପ୍ରାଣପ୍ରାଚୁର୍ଯ୍ୟ ଅନୁଭବ କରୁଥାଏଁ ତେବେ ଏହାକୁ କେବେ ବି ଉପେକ୍ଷା କରିପାରିବାନି । ତେବେ ପ୍ରାବନ୍ଧିକ ତାଙ୍କ ବିଶାଳ ଇଂରେଜୀ ସାହିତ୍ୟ ଅଧ୍ୟୟନ ମଧ୍ୟରେ ଏ ପ୍ରବନ୍ଧମାନଙ୍କରେ ଯେଉଁ ମହାନ୍ ଲେଖକମାନଙ୍କ ଅମର ଉକ୍ତିସବୁକୁ ଉଦ୍ଧାର କରିଛନ୍ତି ଏହା ଜଣେ ସାଧାରଣ ପ୍ରାବନ୍ଧିକ ପାଇଁ ଏକାନ୍ତ ଦୁରୂହ ବ୍ୟାପାର ହୋଇଥାନ୍ତା । ତେଣୁ ଏ ପୁସ୍ତକ ଯଥାର୍ଥରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତିର ଯୋଗ୍ୟତା ରଖିଛି ।



# ପ୍ରତିକୂଳ ପରିସ୍ଥିତିର ଅନୁକୂଳ-ନାୟକ : କବି ପ୍ରଫେସର ମହାନ୍ତି

ପ୍ରଫେସର ବାଉରିବନ୍ଧୁ ସାହୁ

ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ସହ ମୋର ଦୀର୍ଘବର୍ଷର ସମ୍ପର୍କ। ବ୍ରହ୍ମପୁର ଖଲ୍ଲିକୋଟ କଲେଜରେ ମୋର ଉଣେଇଶ ବର୍ଷର ଅଧ୍ୟାପନା କାଳରେ ପ୍ରଫେସର ମହାନ୍ତି ମୋର ସହକର୍ମୀ ଥିଲେ।ସେ ଜଣେ ଦକ୍ଷ ପ୍ରଶାସକ, ପ୍ରଭାବଶାଳୀ ଶିକ୍ଷକ, ଛାତ୍ର-ବତ୍ସଳ ଅଧ୍ୟାପକ ଭାବେ ସୁପରିଚିତ। ଖଲ୍ଲିକୋଟ କଲେଜରେ ସ୍ନାତକୋତ୍ତର ଇଂରାଜୀ ବିଭାଗର ପ୍ରଫେସର ଓ ବିଭାଗ ମୁଖ୍ୟ, କଟକସ୍ଥ ରେଭେନ୍‌ସା ସ୍ୱୟଂଶାସିତ ମହାବିଦ୍ୟାଳୟର ଅଧ୍ୟକ୍ଷ ରୂପେ ଦାୟିତ୍ୱ ନିର୍ବାହ କରି ଯଶସ୍ୱୀ ପୁରୁଷ ରୂପେ ଅଶି ବର୍ଷ ବୟସରେ ଉପନୀତ ହେବା ଆମ ପାଇଁ ପରମ ସୌଭାଗ୍ୟ। ଭାଗ୍ୟରେ ଥିଲେ ତାଙ୍କ ଭଳି ଶିକ୍ଷକ ମିଳନ୍ତି। ଜଣେ ଓଜସ୍ୱିନୀ ବକ୍ତା। ଅଧ୍ୟୟନ, ଗବେଷଣା ଓ ସୃଜନକଳାର ଉପାସକ ତଥା ଇଂରାଜୀ ଓ ଓଡ଼ିଆ ଭାଷା ସାହିତ୍ୟର ନୀରବ ସାଧକ। ନାଟ୍ୟକାର, ନିର୍ଦ୍ଦେଶକ ଏବଂ ଅଭିନେତା। ସ୍ୱାଭିମାନୀ ଜୀବନଶିଳ୍ପୀ, ସୌନ୍ଦର୍ଯ୍ୟ ଓ ସତ୍ୟର ପ୍ରେମବିଳାସୀ ଆତ୍ମା। ଓଡ଼ିଆ ଗଦ୍ୟ ତଥା ସମାଲୋଚନା ସାହିତ୍ୟରେ ଗଭୀର ପ୍ରବେଶ। ସାମ୍ବାଦିକତା ତଥା ସମ୍ପାଦନାରେ ଦକ୍ଷତା। ସର୍ବୋପରି ବିଶାଳ ଜୀବନବୋଧର ନାୟକ। ଜନ୍ମ ୧୯୩୯। ଶିକ୍ଷା ଆହ୍ଲାବାଦ ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ। କେନ୍ଦ୍ର ସାହିତ୍ୟ ଏକାଡେମୀ, ମାନସିଂହ ସମ୍ମାନ, ଉପେନ୍ଦ୍ର ଭଞ୍ଜ ସମ୍ମାନ, ବିଶ୍ୱନାଥ ପଶାୟତ ସମ୍ମାନରେ ଭୂଷିତ, ପ୍ରେସ୍ କାଉନ୍‌ସିଲ୍ ଅଫ୍ ଇଣ୍ଡିଆ ସଦସ୍ୟ ପ୍ରଫେସର ମହାନ୍ତି ଓଡ଼ିଆରେ ସତରଟି ଏବଂ ଇଂରାଜୀରେ ତେରଟି ଗ୍ରନ୍ଥ ସୃଷ୍ଟି କରିଅଛନ୍ତି।

କବି ଶ୍ରୀ ମହାନ୍ତିଙ୍କ 'ଶୂନ୍ୟର ବ୍ୟାସ' କାଳଜୟୀ ପ୍ରତିଭାର ଜୀବନ୍ତ ଆଲେଖ୍ୟ ଲେଖକଙ୍କ ଅନ୍ୟାନ୍ୟ କୃତି ମଧ୍ୟରେ ନାଟକ, କଳାଜହ୍ନ, ମଲା ଆକାଶ, ସରାଗ

ସନ୍ନ୍ୟାସୀ, ଗଳ୍ପ - ଶେଷ ଅପେକ୍ଷା, ପ୍ରବନ୍ଧ ଓ ସମାଲୋଚନା - ବିରହ ଓ ଅନ୍ୟ ଵିଭବମାନେ, ଭାରତୀୟ ସଂସ୍କୃତି ଓ ଭଗବଦ୍‌ଗୀତା, କିଛି ଆକାଶ କିଛି ମାଟି ଅନ୍ୟତମ। ଅନୁବାଦ ସାହିତ୍ୟ ମଧ୍ୟରେ କନ୍ନଡ଼ ସାହିତ୍ୟର ଇତିହାସ (ସାହିତ୍ୟ ଏକାଡେମୀ, ଦିଲ୍ଲୀ), The Wooden Horse, ମନୋରଞ୍ଜନ ଦାସଙ୍କ କାଠଘୋଡ଼ାର ରୂପାନ୍ତର। ଇଂରାଜୀ ଭାଷାରେ Stories from Sarala's Mahabharat, Religion Democracy and Other Reflection, Thoughts and Impulses.

ବ୍ୟର୍ଥ କୋଳାହଳ / ଏକ ଗଭୀର ମର୍ମାନୁଭୂତିର ଆବେଗକୁ ଦିଏ ଅପରୂପ ସୌନ୍ଦର୍ଯ୍ୟ। ସୁନ୍ଦର ଚିତ୍ରକଳ୍ପଟିଏ ଦେଖନ୍ତୁ। ଅସମ୍ଭାଳି ପାରିବ ମୋତେ ? / ଖୁବ୍ ଭାରୀ ମୁ ? / ଗଭୀର ଓ ବ୍ୟାପ୍ତ ମୋର ପ୍ରେମ। ଅକ୍ଷୟ ଫେଣ ଚିରା ଆତ୍ମାର ସରାଗ", ଭୋଗ ସର୍ବସ୍ୱ ନୁହେଁ, ତ୍ୟାଗ ଓ ଅନୁରାଗର ସମନ୍ୱୟ ସମ୍ବୋଧନ।

'ପ୍ରେମଯୋଗ' କବିତାର ମର୍ମସ୍ପର୍ଶୀ ଭାଷା ସାଧନାର ଇଙ୍ଗିତ ଦିଏ। ମଣିଷକୁ କର୍ମଯୋଗୀ କରେ। "ମଣିଷର କର୍ମଫଳ କିଏ ଦିଏ କହ ସଖା ଭାଗ୍ୟ ନା ଈଶ୍ୱର ? / କର୍ମ ପାଇଁ ହାତୁଡ଼ି ପିଟିବା ପାଇଁ / କଲମ ଘୋରିବା ପାଇଁ କିଏ ଦିଏ ଆଦେଶ ? / ପ୍ରେମ ଯୋଗର ବିରହ ମୁଦ୍ରାରେ / ଶୀତଳ ଅଗ୍ନିର ଦହନରେ କେମିତି ପୋଡ଼ିଯାଏ / ଅସୂର୍ଯ୍ୟ ପଦ୍ମବନ ଯା' ଭିତରେ ମୁଦି ହୋଇ ପଡ଼ିଥାଏ / ଗାଣ୍ଡୀବ, ପାଶୁପତ ଓ ସହସ୍ରଶିର କମ୍ପ୍ୟୁଟରର ଅଲିଭା ଅକ୍ଷର।" ଭାଷା ଶକ୍ତିଶାଳୀ, ମୋହମୁଦ୍‌ଗର ଭାବ ଓ ସତ୍ୟ ପ୍ରତ୍ୟୟର ନିର୍ଭୀକ ସ୍ୱର। ସକଳ ଶକ୍ତିର ଉତ୍ସ ଓ ସମସ୍ତ ପ୍ରେରଣାର ଅନୁଭବ ହିଁ ପ୍ରେମ, କବିଙ୍କ ବଜ୍ରନିର୍ଘୋଷ ପ୍ରତିଧ୍ୱନି। ଧର୍ଷିତା 'ନିର୍ଭୟା' ପ୍ରସଙ୍ଗର ମୌନ ପ୍ରତିବାଦ ସାଂପ୍ରତିକ ସମାଜକୁ ଆକ୍ଷେପ। "ହଁ ଏୟାତ ଘଟିବ / ଆମ ନୀଚପଣର ନମୁନା ପରି / ତମେ ଦୁର୍ଗା ସାଜିଲେ କି କଲ୍‌କୀ ସାଜିଲେ / ତମ ତ୍ରିଶୂଳ ଖର୍ପର ଯେତେ ଚମକିଲେ / କିଛି କରି ପାରିବେନି ଏମିତି ଲୁହ ଢାଳିବା ଛଡ଼ା / ସମାଜଠୁଁ ଦୂରକୁ ଯିବା, ଏ ମାଟିକୁ ଭୁଲିଯିବା ଛଡ଼ା ଅନ୍ୟ ଗତି ନାହିଁ। "ମଣିଷର ଧର୍ଷଣରେ ମାଟି ଫାଟି ଆଁ କରିବ / ଅରଣ୍ୟ ନିଆଁରେ ପୋଡ଼ି ମନ୍ଦିର ଗୀର୍ଜାଘର / ହାଉ ଜାଉ ଆନନ୍ଦ ବଜାର।"

କବି ହେବା ବାସନା "ଗାଇବି ନିରୋଳ ଛନ୍ଦେ ଅକପଟ ନିର୍ମଳ ଭାଷାରେ / କିଏ ବୁଝୁ ନବୁଝୁ, ଶୁଣୁ ନଶୁଣୁ / ଛାଡ଼ିଯିବି ପବନରେ ଶବ୍ଦର ଅନୁରାଗ / ମିଳେଇ

ଯିବାଯାକେ ଶେଷ ନିଃଶ୍ୱାସରେ (ନିଷ୍କାମ କର୍ମ)।" ନିଜ ଜୀବନର ମାର୍ଗଦର୍ଶକ କବି ନିଜେ ଗାଇଅଛନ୍ତି, "ମୁହଁରୁ ନ ଲିଭୁ ହସ ପାଟିରୁ କବିତା / ଦିନ ଅନ୍ତେ ରାତ୍ରି ପ୍ରାନ୍ତେ ନ ଅଟକୁ ପାଦ ମୋର / ଛାତିରୁ କମିନଯାଉ ବିରହର ଗୀତା।" (ଚାଲିବି ମୁ? ଚାଲୁଥିବି)। ବିରହୀ କବିପ୍ରାଣ - "ପ୍ରିୟା ଗୋ / ତୁମ ଲମ୍ବା ଅଙ୍ଗୁଠି ନଖରେ / ଯଦି ଖୋଲି ଦିଅନ୍ତ ଆଖିଟିଏ / ମୋ ଛାତିରେ / ମୁଁ ଶିବଙ୍କୁ ଜାଳି ଦିଅନ୍ତି / ବିରହ ତାପରେ।" (ଯଦି ଦେଇଥାନ୍ତ)। ବିରହ ସନ୍ତୁଳିତ କବିପ୍ରାଣର ଅଶରୀରୀ ଆତ୍ମା ପ୍ରତି ଆକୁଳ ନିବେଦନ। ଅହଂକାରକୁ ଗିଳି ପକାଉଥିବା କରାଳ ସମୁଦ୍ରକୁ, ଭୋକ, ରୋଗ, ବାର୍ଦ୍ଧକ୍ୟର ନିବାରଣ ଇଚ୍ଛା ନେଇ ଗଭୀର ତପସ୍ୟା।" କବିଙ୍କ ଇଚ୍ଛା ପୂରଣ ହେଉ। ସାଧନା ଓ ସିଦ୍ଧି ପଥରେ ଆଗେଇ ଯା'ନ୍ତୁ। ନିଷ୍ଠା ହିଁ ପ୍ରତିଷ୍ଠା ଦିଏ।

'ଶୂନ୍ୟର ବ୍ୟାସ' କାବ୍ୟରେ କବିଙ୍କ ପ୍ରସଙ୍ଗୋଚିତ ଭାବ, ସର୍ବଜନବିଦ୍ୟ ବିଷୟବସ୍ତୁ, ସ୍ରଷ୍ଟାଙ୍କ ମାନସିକ ଅନୁଭୂତି ଯଥା ଶବ୍ଦାନୁଭୂତି, ଦର୍ଶନାନୁଭୂତି, ସ୍ପର୍ଶାନୁଭୂତି, ବାସନାନୁଭୂତି, ସ୍ୱାଦାନୁଭୂତିର ସ୍ୱାଦ, ଅନ୍ତଃସ୍ୱରର ମାଦକତା, ପ୍ରତୀକ, ରୂପକଳ୍ପ ପ୍ରଭୃତିର ପ୍ରୟୋଗ, ଛନ୍ଦ, କାବ୍ୟଭେଦ, ଜୀବନ ଦର୍ଶନ, କାବ୍ୟଶୈଳୀ ଭୁଲିବାର ନୁହେଁ।

ଟ୍ରାଇଡେଣ୍ଟ ଗାଲାକ୍ସି, କଳିଙ୍ଗ ନଗର,
ଭୁବନେଶ୍ୱର-୭୫୧୦୨୯
ମୋ: ୯୭୭୭୯୪୦୪୬୪
୮୮୯୫୬୬୪୪୦୩

# 'ନିଦାଘରେ କବି'
# ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି

ସଂଘମିତ୍ରା ମିଶ୍ର

ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ପାଇଁ ତାଙ୍କର ପରିବାର, ବନ୍ଧୁ, ହିତୈଷୀ ଓ ଅଗଣିତ ଛାତ୍ରଛାତ୍ରୀଙ୍କ ଆଗ୍ରହରେ ପ୍ରକାଶିତ ହେବାକୁ ଯାଉଛି ଏକ 'ଅଭିନନ୍ଦନିକା'। ଏଥିପାଇଁ ମୋତେ କିଛି ଲେଖିବାକୁ ହେବ। ଏହା ମୋ ପାଇଁ ଆନନ୍ଦର କଥା। 'ପ୍ରଫୁଲ୍ଲ ମହାନ୍ତି' ନାମଟି ହିଁ ତାଙ୍କର ପରିଚୟ ଦେବାକୁ ଯଥେଷ୍ଟ। ସେ ପ୍ରାବନ୍ଧିକ, ସମାଲୋଚକ, ନାଟ୍ୟକାର, ନିର୍ଦ୍ଦେଶକ, ଅଭିନେତା, ଗାୟକ ତଥା ଏକ ପ୍ରଭାବଶାଳୀ ବ୍ୟକ୍ତିତ୍ୱର ଅଧିକାରୀ। ତାଙ୍କପାଇଁ ପ୍ରସ୍ତୁତ ଏହି ଅଭିନନ୍ଦନିକାରେ ତାଙ୍କର ଗୁଣମୁଗ୍ଧ ବିଦ୍ୱାନ୍‌ମାନେ ସେସବୁ ବ୍ୟାପକ ଭାବରେ ଆଲୋଚନା କରିବେ। ମୁଁ ବ୍ୟକ୍ତିଗତ ସଂପର୍କରୁ ଆରମ୍ଭ କରେ। ସେ ବିଶିଷ୍ଟ ନାଟ୍ୟକାର ଲକ୍ଷ୍ମୀଧର ନାୟକଙ୍କ ଜ୍ୟେଷ୍ଠ ଜାମାତା। ଜଟଣୀର ଲକ୍ଷ୍ମୀ ଆର୍ଟ ପ୍ରେସ୍‌ରୁ ମୋ ନାନୀଘର ପାଦଚଲା ବାଟ। ସେଠି ମୁଁ ସାର୍‌ଙ୍କ କଥା ଶୁଣିଥିଲି ପ୍ରଥମେ ମୋ ବାନ୍ଧବୀ ଆହ୍ଲାଦିନୀ ଓ ଦୀପ୍ତୀଙ୍କ ଠାରୁ (ହାୟ, ଆହ୍ଲାଦିନୀ ଆଜି ଆମକୁ ଛାଡ଼ି ସେ ପୁରକୁ ବାହୁଡ଼ି ଗଲେଣି।) ପୂଜ୍ୟ ଲକ୍ଷ୍ମୀଧର ନାୟକଙ୍କୁ ଭେଟିଲି 'ମୂଲ୍ୟାୟନ'ର ସୁଯୋଗ୍ୟ ସଂପାଦକ ପ୍ରଫୁଲ୍ଲ ଜଗଦେବ ସାର୍‌ଙ୍କ ଘରେ। (ସେ ମଧ୍ୟ ଦିବଙ୍ଗତ)। ଆହ୍ଲାଦିନୀ ପ୍ରଫୁଲ୍ଲ ମହାନ୍ତି ସାର୍‌ଙ୍କ ମଧୁର ସଂପର୍କୀୟା। ଯେଉଁ କେତେ ଜଣ ମୋତେ ଏଭଳି ସଂପର୍କ ଯୋଡ଼ି ଆତ୍ମୀୟତା ଜାହିର କରନ୍ତି ସେମାନେ ହେଲେ ଆଚାର୍ଯ୍ୟ ଭାବାନନ୍ଦ ଓରଫ ଭାବଗ୍ରାହୀ ମିଶ୍ର, ରତ୍ନାକର ଚଇନି ଓ ପ୍ରଫୁଲ୍ଲ ମହାନ୍ତି। ସତ କହୁଛି ମୋତେ ଖୁବ୍ ଭଲ ଲାଗେ, କାରଣ ତ ଅନେକ, ତେବେ ସବୁଠାରୁ ବଡ଼ କାରଣ ହେଉଛି ଏଭଳି ଉଚ୍ଚତର ଓ ମହତ୍ତର ଜୀବନ ବଂଚୁଥିବା ଶିକ୍ଷାବିତ୍‌ମାନଙ୍କର ଆତ୍ମୀୟତା ଲାଭ।

ମୁଁ ପ୍ରଫେସର କୃଷ୍ଣଚରଣ ସାହୁଙ୍କ ପାଖରେ ମନୋରଂଜନ ଦାସଙ୍କ ନାଟକ ସଂପର୍କରେ ଗବେଷଣା କରିବା ସମୟରେ ତାଙ୍କର ପରମ ବଂଧୁ ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ ବାରମ୍ବାର ବିଭାଗକୁ ଆସୁଥିଲେ। ସେତେବେଳେ ସେ ଓ ପ୍ରଫୁଲ୍ଲ ସାର୍ ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦ (Council of Higher Secondary Education)ରେ ଏକାଠି ଅବସ୍ଥାପିତ ଥିଲେ। ରାଜେନ୍ଦ୍ର ସାର୍ ମୋତେ ଖୁବ୍ ଶ୍ରଦ୍ଧା କରୁଥିଲେ। ସେ ମୋତେ କହିଥିଲେ, "ତୁ ଚାଲ ଆ ଅଫିସ୍‌କୁ। ପ୍ରଫୁଲ୍ଲ ବାବୁ ତୋତେ ଖୁବ୍ ସାହାଯ୍ୟ କରିବେ। ଆଧୁନିକ ନାଟକର ସେ ଚିହ୍ନରା ଗ୍ରାହକ।" ସତକୁ ସତ ଦିନେ ମୁଁ ଓ ମୋ ସାଂଗ ବିଜୟଲକ୍ଷ୍ମୀ ଯାଇ କେଦାରଗୌରୀ ନିକଟରେ ଥିବା ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦର ଅଫିସ୍‌ରେ ପହଞ୍ଚିଲୁ। ପ୍ରଫୁଲ୍ଲ ସାର୍ ମୋତେ ନାଟକ ସମ୍ପର୍କରେ ବହୁ ତଥ୍ୟ ଦେବା ସହିତ George Steiner ଙ୍କର The Death of Tragedy ଓ ଅନ୍ୟ ୨/୩ଟି ବହି (ନାମ ମନେ ପଡୁନାହିଁ) ଦେଇଥିଲେ। ପ୍ରାୟ ୧୯୮୩-୮୪ ବେଳକୁ Tragedy ର ମୃତ୍ୟୁ ହୋଇଥିବାର ତଥ୍ୟ ସେଥିରେ ଥିଲା। ଯାହା ମୋତେ ସେତେବେଳେ ଖୁବ୍ ନୂଆକଥା ଭଳି ଲାଗିଥିଲା। ହଁ ବାଣୀବିହାରରେ ମୁଁ ଅଧ୍ୟାପିକା ହେବାପରେ ଦେଖିଛି ସାର୍ ମୋ ଉପରେ ଢେର ଆସ୍ଥା ପ୍ରକଟ କରୁଥିଲେ। ଦ୍ୱିତୀୟ ଥର ମୁଁ ବିଭାଗ ମୁଖ୍ୟ ହେବାବେଳେ ସେ ମୋତେ ଫୋନ୍ କରି କହିଥିଲେ ଯେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଠିକ୍ ଲୋକକୁ ଏ ଦାୟିତ୍ୱ ଦେଇଛନ୍ତି। ସାର୍‌ଙ୍କର ହୁଏତ ଏଭଳି ଛୋଟ ଛୋଟ କଥା ମନେନଥିବ, କିନ୍ତୁ ତାହା ମୋ ପାଇଁ ସଂଜୀବନୀ ସଦୃଶ ଥିଲା ଯାହା ମୋତେ ସେହି ନିଆଁର ସମୁଦ୍ର ପୁନର୍ବାର ଡେଇଁବାର ସାହସ ଦେଇଥିଲା।

ପଦ୍ମଶ୍ରୀ ପ୍ରତିଭା ରାୟ କେନ୍ଦ୍ର ସାହିତ୍ୟ ଏକାଡେମୀର ଓଡ଼ିଆ ଭାଷାର ଆବାହିକା ଥିବାବେଳେ ପ୍ରଫୁଲ୍ଲ ସାର୍ ଉପଦେଷ୍ଟା ମଣ୍ଡଳୀର ବରିଷ୍ଠ ସଦସ୍ୟ ଥିଲେ ଓ ଖୁବ୍ ପ୍ରଭାବଶାଳୀ ମଧ୍ୟ ଥିଲେ। ଆମେ କେତେଜଣ ଥାଉ ଉପଦେଷ୍ଟା କମିଟିର ସଦସ୍ୟ। ଏକାଠି ଟ୍ରେନ୍‌ରେ କଲିକତା ଯିବାବେଳେ ସାର୍ କେତେ ବଂଗଳା ଗୀତ ଆଉ ପୁରୁଣା ହିନ୍ଦୀ ସିନେମା ଗୀତ ଗାଆନ୍ତି ତାହା ସତରେ ଅପୂର୍ବ। ଶୁଣିଥିଲି ସାର୍‌ଙ୍କ ଭିତରେ କଳାପ୍ରାଣତା ଖୁବ୍ ବେଶି। ମାତ୍ର ସେଦିନ ତାର ପ୍ରତ୍ୟକ୍ଷ ପ୍ରମାଣ ପାଇଲି। ଶୁଣିଛି ରେଭେନ୍‌ସା କଲେଜ ଓ ବି.ଜେ.ବି. କଲେଜରେ ସେ ଖୁବ୍ ଛାତ୍ରବତ୍ସଳ ଅଧ୍ୟାପକ ଥିଲେ। ମୁଁ କେଉଁଠି ତାଙ୍କର ପ୍ରତ୍ୟକ୍ଷ ଛାତ୍ରୀ ହେବାର ସୌଭାଗ୍ୟ ପାଇନାହିଁ ମାତ୍ର ତାଙ୍କୁ ସାର୍ ଡାକି ଆନନ୍ଦ ପାଇଛି। ପୂଜ୍ୟ ନାଟ୍ୟକାର ମନୋରଂଜନ ଦାସଙ୍କ ଏକାଦଶାହ

ସ୍ମୃତିସଭାରେ ତାଙ୍କ ଭାବପ୍ରବଣ ଭାଷଣ ସତରେ ଚମତ୍କାର ଥିଲା । ବହୁ ସଭା ସମିତିରେ ସାର୍‌ଙ୍କୁ ଶୁଣିଛି । Refresher Course ରେ ସାର୍ ଆସି ପଢ଼ାଇଛନ୍ତି । ସାର୍‌ଙ୍କ ନିର୍ଦ୍ଦେଶରେ 'ଶୈଳବାଳା ରଚନା ସମ୍ଭାର' (ସାର୍‌ଙ୍କ ସମ୍ପୁଦୁଣୀ 'ଚୁମ୍ବକ'ର ସଂପାଦିକା ଶୈଳବାଳା ମହାନ୍ତି)ର ଉଦ୍‌ଘାଟନ ଉତ୍ସବରେ ମଞ୍ଚରେ ବସିବାର ସୌଭାଗ୍ୟ ପାଇଛି । ଏଭଳି ସୁଯୋଗ କେତେ ଜଣଙ୍କୁ ମିଳେ ?

ସାର୍‌ଙ୍କର 'ଭାରତୀୟ ସଂସ୍କୃତି ଓ ଭଗବଦ୍‌ଗୀତା" କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇବା ସମୟରେ ମୁଁ ସେ ପୁସ୍ତକ ଆଣି ପାଠ କରିଛି ଓ ସାର୍‌ଙ୍କର ପ୍ରାଚୀନରୁ ନୂତନ ତଥ୍ୟ ଉପସ୍ଥାପନା ଶୈଳୀ ଓ ଆଧୁନିକ ଜୀବନ ଜିଜ୍ଞାସାର ଭବ୍ୟ ରୂପ ଦେଖି ଚକିତ ହୋଇଛି । ମୋ ଥେସିସ୍‌ରେ ମୁଁ ନାଟ୍ୟକାର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ 'କଳାଜହ୍ନ'ର ଆଲୋଚନା କରିଛି ।

ତେବେ ଏହି କ୍ଷୁଦ୍ର ଆଲେଖ୍ୟରେ ମୁଁ 'ନିଦାଘରେ କବି' ଆଲୋଚନା କରିବି ବୋଲି ସ୍ଥିର କରିଛି । ଏ ଭିତରେ ପ୍ରଳୟଙ୍କରୀ ବାତ୍ୟା ଫନି ଆସି ଆମ ରାଜଧାନୀକୁ ଲଣ୍ଡଭଣ୍ଡ କରିଦେଇଛି । 'ନିଦାଘରେ କବି'ର ପ୍ରଥମ ବାକ୍ୟ ଏହିଭଳି - 'ନିଦାରୁଣ ନିଦାଘର ତାପଗ୍ରସ୍ତ ସବୁଜିମା ଯେମିତି ଜହ୍ନ ଦେହରେ ଅନ୍ଧାର ଆଉଜିଲା ଭଳି ଲାଖିଯାଏ ମାଟି ଉପରେ, ମନ ମଧ୍ୟ ସେମିତି ଝାଳେଇ ଯାଏ । କୋଇଲିର ଖରାବେଳିଆ କୁହୁ ଶୁଦ୍ଧିକ୍ରିୟାର ମନ୍ତ୍ରପାଠ ପରି ଲାଗେ । x x x ନିଦାଘ ସଂକୋଚନର ଋତୁ । ଝାଉଁଳା ଆତ୍ମପ୍ରତ୍ୟୟର ଋତୁ । ନଦୀ ନାଳ, ବନସ୍ପତି, ମାଟି ଆକାଶର ପାଣ୍ଡୁର ହତାଶ ଋତୁ । ମେଘ ଅପେକ୍ଷାର ଋତୁ । ସବୁ ଆହ୍ଲାଦ ଆବେଗର ଶ୍ୱାସରୁଦ୍ଧ ଋତୁ ।' ଏହି ବାକ୍ୟଗୁଡ଼ିକର ମର୍ମାନ୍ତିକ ଉପଲବ୍ଧି ଆଜି (ତା୭।୫।୧୯)ରେ ମୋତେ ସତରେ ଶ୍ୱାସରୁଦ୍ଧ କରୁଛି । ମୁଁ ଭାବୁଛି ଏହି ପୁସ୍ତକର କିଞ୍ଚିତ ଆଲୋଚନା ମାଧ୍ୟମରେ ମୁଁ ପ୍ରଫୁଲ୍ଲ ସାର୍‌ଙ୍କର ସମାଲୋଚନାର ଗଭୀରତା ଓ ବ୍ୟାପକତାକୁ ଛୁଇଁପାରିବି । ଦେଖାଯାଉ । ତେବେ ଏ ପୁସ୍ତକର ମୁଦ୍ରଣ କାଳ ୨୦୦୪ । ଏ ଭିତରେ ଏହା ଅଗଣିତ ସୁଧୀ ଜିଜ୍ଞାସୁ ପାଠକ ପାଠିକାଙ୍କୁ ଅବଶ୍ୟ ନୂତନ ଦିଗ୍‌ଦର୍ଶନ ଦେଇସାରିଥିବ ।

ନିଦାଘରେ କବି (ଆଦ୍ୟ କାଳ) ପରେ ସ୍ୱାଧୀନତାର ଏପାଖ ସେପାଖ, କିଛି ତତ୍ତ୍ୱ କିଛି ଧାରଣା, କାବ୍ୟ ବିଶ୍ୱ-ପରିଚୟ, ଚେତନାର ବିସ୍ଫୋରଣ ଓ ପରିପକ୍ୱତା ଭିତ୍ତିରେ ପ୍ରବନ୍ଧଗୁଡ଼ିକ ରଚିତ । ଶେଷ ଦୁଇଟି ଅଧ୍ୟାୟରେ ଉପନ୍ୟାସର ଆଲୋଚନା

କରାଯାଇ ଥିଲେ ହେଁ ଏଥିରେ 'କବିତ୍ୱ' ହିଁ ମୁଖ୍ୟ ପ୍ରେରକ ତତ୍ତ୍ୱ ବୋଲି ଜଣାଯାଏ। ଆଉ କୌଣସି ପ୍ରବନ୍ଧ ପୁସ୍ତକରେ ଏତାଦୃଶ ଉପଶୀର୍ଷକ (Sub-title) ମୁଁ ଦେଖିନାହିଁ। (ଅବଶ୍ୟ ମୋ ଦେଖିବା ଉପରେ ପ୍ରବନ୍ଧର ମାନ ନିର୍ଭର କରେ ନାହିଁ।)

ସ୍ୱାଧୀନତାର ଏପାଖ ସେପାଖ' ଦୀର୍ଘ ପ୍ରବନ୍ଧରେ ସେ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାର ଭାଷା ସଂପର୍କରେ ହିଁ ଆଲୋଚନା କରିଛନ୍ତି। ପ୍ରାଚୀନ ସାହିତ୍ୟରୁ କିଛି ଉଦାହରଣ ଦେଇ ୧୯୩୬ ପରେ ଆମ ଭାଷାରାଜ୍ୟରେ ଭାଷା ଓ ଶୈଳୀରେ ହୋଇଥିବା ବ୍ୟାପକ ପରିବର୍ତ୍ତନ ସଂପର୍କରେ ସେ ଆଲୋଚନା କରିଛନ୍ତି। ରାଧାନାଥଙ୍କ ସମୟରୁ 'ମୁଁ' ଏକ ସାର୍ବଜନୀନ ଚେତନାର ପ୍ରତିନିଧି ପରି ବିଶ୍ୱ ଓ ପ୍ରକୃତିକୁ ସ୍ରଷ୍ଟା ସହିତ ସଂଯୋଜିତ କରୁଥିଲା। କ୍ରମେ ବ୍ୟକ୍ତିଗତ ଅନୁଭବର ଚିତ୍ରକଳ୍ପ ପ୍ରକୃତି ଓ ପରିବେଶକୁ ନୂଆ ରୂପ ଦେବାପାଇଁ ପ୍ରକୃତିର ଶାସ୍ତ୍ରୀୟ ସଂଯୋଗମାନଙ୍କୁ ବିଛିନ୍ନ କରୁଛି। ବିନୋଦ ନାୟକ ଓ ବିଦ୍ୟୁତପ୍ରଭା ଦେବୀଙ୍କ କବିତାର ଉଲ୍ଲେଖ ପରେ ଗୁରୁପ୍ରସାଦ, ସଚ୍ଚି ରାଉତରାୟ, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ସୌଭାଗ୍ୟ କୁମାର ମିଶ୍ର ଓ ବେଣୁଧର ରାଉତଙ୍କୁ ସେ ଏକତ୍ର ଆଲୋଚନା କରିଛନ୍ତି। ଏଠାରେ ରାଜନୀତିର ପରିବର୍ତ୍ତିତ ପ୍ରେକ୍ଷାପଟର ସ୍ପଷ୍ଟ ଚିତ୍ର ମଧ୍ୟ ପ୍ରଦତ୍ତ ହୋଇଛି। ତାପରେ ଆସନ୍ତି ସୌରୀନ୍ଦ୍ର ବାରିକ, ଦୀପକ ମିଶ୍ର, ଶରତ ଚନ୍ଦ୍ର ପ୍ରଧାନ ପ୍ରଭୃତି। ଏହାପରେ ଆହୁରି ଆଧୁନିକ କବିମାନଙ୍କ କବିତା ଆଲୋଚନାର ପର୍ଯ୍ୟାୟଭୁକ୍ତ ହୋଇଛି। ଏହି ପ୍ରବନ୍ଧର ସ୍ୱାତନ୍ତ୍ର୍ୟ ହେଉଛି ଜେ.ଏମ୍.ସିନିକ୍, ପଲ୍ ଟିଲିଚ୍, ଆଲେକ୍‌ଜାଣ୍ଡର ପୋପ୍, ଡବ୍ଲୁ.ବି.ୟେଟ୍‌ସ୍ ପ୍ରଭୃତିଙ୍କ କୃତି ଓ ଦୃଷ୍ଟିକୁ ସମାନ୍ତରାଳ ଭାବେ ଗ୍ରହଣ କରିଛନ୍ତି। ଏଥି ସହିତ ମହାଭାରତ, ରାମାୟଣଠାରୁ ଗାନ୍ଧି, ନେହେରୁ, ପଟେଲ, ନାଗଭୂଷଣ, ମନମୋହନ ମିଶ୍ର ପ୍ରଭୃତିଙ୍କ ଜୀବନ ଦର୍ଶନ ଓ କାବ୍ୟଦର୍ଶନର ମଞ୍ଜକୁ ସେ ଆତ୍ମସ୍ଥ କରିଛନ୍ତି। ଏହା ତାଙ୍କର ବହୁପାଠିତା ଓ ପରିଚ୍ଛନ୍ନ ଚିନ୍ତାଧାରାର ପରିଚାୟକ। ଆଧୁନିକ ଓଡ଼ିଆ କବିତାର ବହୁତଳ ବିଶିଷ୍ଟ ସ୍ୱାତନ୍ତ୍ର୍ୟକୁ ବୁଝିବାକୁ ଏହି ଦୀର୍ଘ ପ୍ରବନ୍ଧ ଏକ ଚାବିକାଠି ସଦୃଶ। ସମାଲୋଚନାର ଶାଣିତ ଅସ୍ତ୍ରରେ ସେ ପ୍ରସିଦ୍ଧ କବିମାନଙ୍କର ଦୁର୍ବଳ ଭାଷା ପ୍ରୟୋଗକୁ ମଧ୍ୟ ଆଘାତ କରିଛନ୍ତି।

'କିଛି ତତ୍ତ୍ୱ କିଛି ଧାରଣା' ଆଧାରରେ 'ବେଦନା ଓ କାବ୍ୟିକ ଆନନ୍ଦ' ଓ 'କବିତାର ଇତିହାସ ଓ ଭଗ୍ନାଂଶ' ଶୀର୍ଷକ ଦୁଇଟି ଉପବିଭାଜକ ରଖିଛନ୍ତି। 'ବେଦନା

ଓ କାବ୍ୟିକ ଆନନ୍ଦ'ର ପ୍ରାରମ୍ଭରେ ମହାକାବ୍ୟ, ପୁରାଣ, ସାହିତ୍ୟ, ବେଦ ଉପନିଷଦ, ଭାଗବତ ପ୍ରଭୃତିରୁ ଉଦାହରଣ ଦେଇ ଏ ଜୀବନକୁ ଅନିତ୍ୟ ଓ ଦୁଃଖପୂର୍ଣ୍ଣ ବୋଲି କୁହନ୍ତି। ନାୟକପଣର ଗର୍ବ ଭିତରେ ସବୁ ସହିଯିବାର 'ଭୟଙ୍କର ଆନନ୍ଦ' ଥାଏ। ଯୀଶୁଙ୍କର କ୍ରୁଶବିଦ୍ଧ ହେବାର ଛବି ସହିବାପଣର ସର୍ବକାଳୀନ ପ୍ରତୀକ। ପ୍ରତିବାଦରେ ମଧ୍ୟ ନାୟକର ଉଜ୍ଜ୍ୱଳତା ବଢ଼ିଥାଏ। ବେଳେବେଳେ 'ନୈତିକ ପ୍ରତିଶୋଧ'ର ଆଭାସ ସାହିତ୍ୟକୁ ସ୍ୱତନ୍ତ୍ର ଦୀପ୍ତି ଦେଇଛି। ବେଦନାର ଅନୁଭୂତି ମଣିଷର ମହାନନ୍ଦ କାମନାର ଅଭିବ୍ୟକ୍ତି ବୋଲି ସମାଲୋଚକ ମହାଶୟ କୁହନ୍ତି। ସେଥିପାଇଁ ସେ ପାଣ୍ଡବମାନଙ୍କର ପ୍ରତିଶୋଧ ପ୍ରବଣତା ଠାରୁ 'ଛ ମାଣ ଆଠଗୁଣ୍ଠ'ର ସାରିଆର ମୃତ୍ୟୁ ଓ ଚମ୍ପାର ବିଭତ୍ସ ମୃତ୍ୟୁ ମଧ୍ୟରେ ଥିବା ପ୍ରଭେଦକୁ ଦର୍ଶାଇଛନ୍ତି। ପୁଣି ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଠାରୁ କୀଚକ ବଧର ପ୍ରସଂଗ ମଧ୍ୟ ଉତ୍ଥାପନ କରନ୍ତି। ନିତ୍ସେଙ୍କର Thus Spake Zarathrustra ର ଉଲ୍ଲେଖ ସହିତ ପ୍ରବନ୍ଧଟି ଶେଷ ହୁଏ।

'କବିତାର ଇତିହାସ ଓ ଭଗ୍ନାଂଶ'ରେ ସେ କୁହନ୍ତି ଯେ ଆଦି କାବ୍ୟ ଆଲୋଚନାର ଦିଗନ୍ତରେ ଅନେକ ପରିବର୍ତ୍ତନ ଆସିଛି। ବ୍ୟକ୍ତି ଓ ବିଶ୍ୱ ସଂପର୍କରେ ବ୍ୟକ୍ତିର ସ୍ୱତନ୍ତ୍ରତା ଭାରତୀୟ ପରଂପରାରେ ସ୍ୱୀକୃତ ନୁହେଁ। ସଂପୂର୍ଣ୍ଣ ବାସ୍ତବ କୌଣସି ଚେତନାରେ ସମ୍ଭବେ ନାହିଁ। ତେଣୁ ପୂର୍ଣ୍ଣବିଶ୍ୱ ମଣିଷ ପାଖରେ ଅବୁଝା ରହିଯାଏ, କବିର ବିଶ୍ୱ ବୈଜ୍ଞାନିକ ଓ ଦାର୍ଶନିକ ବିଶ୍ୱଠାରୁ ଭିନ୍ନ। ତେଣୁ ଆଧୁନିକ ଚେତନା ହେଉଛି ଏକ ଭଗ୍ନାଂଶର ଧାରଣା। ଏ ଭଗ୍ନାଂଶ ବିଶ୍ୱାନୁଭୂତିର ଭଗ୍ନାଂଶ, ଉତ୍ତର ଆଧୁନିକତା ଏହି ଭଗ୍ନାଂଶକୁ ଆହୁରି ବ୍ୟାପକ କରିଛି ଓ ପୂର୍ଣ୍ଣତାର ବିକେନ୍ଦ୍ରୀକରଣ ହୋଇଛି।

'କାବ୍ୟବିଶ୍ୱ ପରିଚୟ'ର ଦୁଇଟି ଉପଶୀର୍ଷକରେ 'ରମାକାନ୍ତୀୟ କାବ୍ୟଦର୍ଶନ' ଓ 'ସୀତାକାନ୍ତଙ୍କ ଜୀବନ ବିଶ୍ୱ' ରହିଛି। 'ରମାକାନ୍ତୀୟ କାବ୍ୟଦର୍ଶନ' ଆରମ୍ଭରେ ମହାଭାରତୀୟ କାବ୍ୟଦର୍ଶନ, ନଗର ଓ ସହର ସଭ୍ୟତା, ରାଜ ପରିବାର, ବିଭିନ୍ନ ଜାତିର ଦ୍ୱନ୍ଦ୍ୱ ଓ ସମନ୍ୱୟ ପ୍ରଭୃତିର ଉଲ୍ଲେଖ ରହିଛି। ଏହି ସମନ୍ୱୟ ପାଇଁ ଯୁଦ୍ଧ ହିଁ ଲୋଡ଼ା। ଯୁଦ୍ଧ ଜୀବନ ସଂଗ୍ରାମର ଉତ୍କୃଷ୍ଟ ପ୍ରତୀକ ଓ ମାନବୀୟ ଗୁଣର ସୁରକ୍ଷା ଲାଗି ଉଦ୍ଦିଷ୍ଟ। ରମାକାନ୍ତଙ୍କ କାବ୍ୟବିଶ୍ୱରେ 'ମୁଁ' ସଂପର୍କ ଓ ବୌଦ୍ଧିକତା ମଧ୍ୟରେ ଗତିଶୀଳ। ଏହି 'ମୁଁ' ସୀମାନ୍ତରେ ଯାଇ 'ତୁମ'କୁ ଭେଟେ। ତାଙ୍କ କବିତାରେ ପ୍ରେମ ଅଛି ଓ ବିରହର ମୁଖ୍ୟ ପ୍ରେରକ ଭାବେ ଗୃହୀତ ହୋଇଛି। ପ୍ରଫୁଲ୍ଲ ମହାନ୍ତିଙ୍କ ବିଚାରରେ

ରାଧା ମିଥ୍ ପ୍ରଯୁକ୍ତ କାବ୍ୟ ନୁହେଁ ବରଂ ମନର ଚିତ୍ରସମୂହ ଇନ୍ଦ୍ରିୟ, ସ୍ୱପ୍ନକଳ୍ପନା ଓ ଆତ୍ମାନୁଶୀଳନରୁ ଆହୃତ। 'ସୀମାନ୍ତବାସ' ସଂପର୍କରେ ଉଲ୍ଲେଖ କରି ସମାଲୋଚକ କୁହନ୍ତି ଏଥିରେ 'ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପ୍ରାୟ ଗୋଟିଏ ଗମ୍ଭୀର ଉଦାସ, ବୌଦ୍ଧିକତା ଅସ୍ୱୀକାରର ସ୍ୱରରେ ଶେଷୋତ୍ତର ଉପଲବ୍ଧି ପାଇବା ସମ୍ଭବ ନୁହେଁ। ସୀତାକାନ୍ତଙ୍କ ଜୀବନ-ବିଶ୍ୱରେ ଆମେ ଦେଖୁ ଚେତନାର ବିବିଧ ପ୍ରସ୍ତର ଉନ୍ମୋଚନ। ମଣିଷ ଋହିଁବା ବିଶ୍ୱ ଓ ଛୁଇଁବା ବିଶ୍ୱ ମଝିରେ ସାରା ଜୀବନ ବିଚରଣ କରୁଥାଏ। ହାତ ପାହାନ୍ତା ପୂର୍ଣ୍ଣତା ଓ ଅପହଞ୍ଚ ପୂର୍ଣ୍ଣତା ଉଭୟ ମିଶିଲେ ହିଁ ଦେହ ଆତ୍ମାର ଦ୍ୱୈତଜୀବନ ପୂର୍ଣ୍ଣ ହୁଏ। ସୀତାକାନ୍ତ ଋଗ୍‌ବେଦ, ପୁରାଣ, ଉପନିଷଦଠାରୁ ପାଶ୍ଚାତ୍ୟ ତତ୍ତ୍ୱମାନଙ୍କ ସହିତ ପରିଚିତ। ଏହି ପ୍ରବନ୍ଧ ମୁଖ୍ୟତ 'ସାରା ଜୀବନ ଲୋକଟା'କୁ ନେଇ ରଚିତ।

ଚେତନାର ବିଷ୍ଫୋରଣ ଆଧାରରେ 'ସୀମାନ୍ତ ଅନୁଭୂତି' ଓ 'ଆଦିଭୂମି ଏକ ସାଂସ୍କୃତିକ ଅନୁଶୀଳନ' ଉପଅଧ୍ୟାୟ ଦୁଇଟି ସଂଯୁକ୍ତ। 'ସୀମାନ୍ତ ଅନୁଭୂତି' ଭଳି ଅନୁଭବ ପ୍ରାୟ ସଚେତନ ସ୍ରଷ୍ଟାଙ୍କର ରହିଛି ମାତ୍ର ଏହାର ଏଭଳି ଅନୁଶୀଳନ ଖୁବ୍ ମର୍ମସ୍ପର୍ଶୀ। ଦର୍ଶନ ତଥା ତନ୍ତ୍ରରେ ଯେଉଁ ସୀମାନ୍ତ କଥା କୁହାଯାଏ ତାହା ଚେତନାର ଏକ ସୀମାନ୍ତ, ତାହା ଏକ ସିଦ୍ଧାନ୍ତ। ସାଧାରଣ ଜୀବନରେ ମୃତ୍ୟୁ ହିଁ ଶେଷ ସୀମାନ୍ତ। ମଣିଷର ସାମାଜିକ ଅନୁଭୂତିରେ ପ୍ରେମ ସୀମାନ୍ତର ଅବବୋଧ ସୃଷ୍ଟି କରେ। ଏହି ପ୍ରବନ୍ଧରେ ରୋଜର ପେନ୍‌ରୋଜ ଯୋଗ ସାଧନା, ତନ୍ତ୍ର ସାଧନା, ଯୀଶୁଖ୍ରୀଷ୍ଟ ମନୋବିଜ୍ଞାନୀ ଫ୍ରୟେଡ୍, ୟୁଙ୍ଗ୍‌ଙ୍କ ଠାରୁ ଅନେକ ଯୁଦ୍ଧ, ଉଦ୍ଭାବନ, ଆବିଷ୍କାର, ଗବେଷଣା ପ୍ରଭୃତିକୁ ସମାଲୋଚକ ଏକତ୍ର କରି ସୀମାନ୍ତ ଅନୁଭୂତିର ଗୁରୁତ୍ୱ ପ୍ରତିପାଦନ କରିଛନ୍ତି। ଏଠାରେ ରମାକାନ୍ତଙ୍କ 'ସୀମାନ୍ତବାସ'ର ଏକାଧିକ ଉଦାହରଣ ପ୍ରଦତ୍ତ।

'ଆଦିଭୂମି' ପ୍ରତିଭା ରାୟଙ୍କର ମହାନ ସୃଷ୍ଟି ଯେଉଁଠି ବଣ୍ଡା ଜାତିର ଜୀବନ ଜୀବିକା, ଦର୍ଶନ ତଥା ସ୍ୱାଭିମାନର ସ୍ୱର ଉଚ୍ଚାରିତ। ଗୋପୀନାଥଙ୍କ ଉତ୍ତରସୂରୀ ଭାବରେ ବଣ୍ଡା ପାହାଡ଼ରେ ବୁଲି ସେ ଯେଉଁ ତଥ୍ୟମାନ ପାଇଛନ୍ତି ତାହାକୁ 'ଆଦିଭୂମି'ରେ ପରଶି ଦେଇଛନ୍ତି। ଏହି ବଣ୍ଡା ପାହାଡ଼ରେ ସମସ୍ତେ ସମାନ। ସଲପ ଗଛ ସହିତ ଏମାନଙ୍କର ଜନ୍ମଜନ୍ମାନ୍ତର ସଂପର୍କ। ଏମାନେ କ୍ରୋଧୀ, ମାଂସଲୋଭୀ ସେ ପୁଣି ଅପରାଧ କରି ଦେଇଯାଏ। ଏହି ଉପନ୍ୟାସ ଏକ ଗବେଷଣାଧର୍ମୀ ଉପନ୍ୟାସ ଯାହାର ନାୟକ ସୋମା ମୁଦୁଲି। ବଣ୍ଡା ରାଜ୍ୟର ଆରମ୍ଭ, ସାଂସ୍କୃତିକ ପରିସୀମାର ଦିଗନ୍ତ, ଅବକ୍ଷୟ ଓ ସମୟଚକ୍ରରେ ଏକକ ପୂର୍ଣ୍ଣତାର ଧାରଣା ସହିତ ଚିରନ୍ତନ ମଣିଷର

ବିଗୋଭର ଯାତ୍ରାର ଆଭାସ ଦିଏ। 'ଆଦିଭୂମି' ସୁପରିକଳ୍ପିତ ଉପନ୍ୟାସ ଯହିଁରେ ସମୟ ପରିବର୍ତ୍ତନର ସ୍ୱର ବାରି ହୋଇପଡ଼େ। ଏହାର ଭାଷା କାବ୍ୟଧର୍ମୀ, ନାଟକୀୟ ଓ ବର୍ଣ୍ଣନାଶ୍ରୟୀ। ଏହି ଉପନ୍ୟାସର ଏଭଳି ମୂଲ୍ୟାୟନ ବୋଧହୁଏ ଆଉ ହୋଇନାହିଁ ବା ଅନ୍ୟଭାବରେ କହିଲେ, 'ଆଦିଭୂମି'ର ପରବର୍ତ୍ତୀ ଆଲୋଚନା ଅବଶ୍ୟ ଏହି ସାଂସ୍କୃତିକ ଅନୁଶୀଳନକୁ ଭିତ୍ତି କରି ହେବ।

'ପରିପକ୍ୱତା' ଶୀର୍ଷକରେ 'ଲୟବିଲୟ'ର କ୍ଷୁଦ୍ର ଆଲୋଚନା କରାଯାଇଛି। ଓଡ଼ିଆ ଆଧୁନିକ କଥାସାହିତ୍ୟର ପରିପକ୍ୱ ବ୍ୟକ୍ତିତ୍ୱ ଗୋପୀନାଥ ମହାନ୍ତି। ତାଙ୍କୁ ମୂଳରେ ରଖି ଯେଉଁମାନେ ସାହିତ୍ୟ ସାଧନା କରିଥିଲେ ସମସ୍ତେ ଖ୍ୟାତିର ଚରମସୀମା ଛୁଇଁଛନ୍ତି। 'ଲୟବିଲୟ' ତରୁଣ ରାୟଙ୍କ ପରିବାରର କାହାଣୀ ନୁହେଁ ବରଂ ଏହା ମଣିଷର ବିଶ୍ୱାନୁଭୂତିର ସର୍ବକାଳୀନ ଓ ସାର୍ବଜନୀନ ସ୍ଥିତିର ଦିବ୍ୟ ଚିତ୍ର। ତରୁଣ ରାୟ ଏ ଉପନ୍ୟାସରେ ନିଜକୁ ଚିହ୍ନିବା ସହିତ ବିଶ୍ୱାତ୍ମାର ପରିଚୟ ପାଇପାରିଛନ୍ତି। ଗୋପୀନାଥଙ୍କ ଭାଷା ସମ୍ପର୍କରେ ମଧ୍ୟ ପ୍ରାବନ୍ଧିକ ସୁଚିନ୍ତିତ ମତ ଦେଇଛନ୍ତି। ଏଠାରେ ଏହି କ୍ଷୁଦ୍ର ଆଲେଖ ଶେଷ କରିବାକୁ ହେବ। ତେବେ ପ୍ରାବନ୍ଧିକ ପ୍ରଫୁଲ୍ଲ କୁମାର ମହାନ୍ତିଙ୍କୁ ଆମେ ଏମିତି ବୁଝିବା -

କ) ସେ ବହୁପାଠୀ। ଓଡ଼ିଆ ଓ ଇଂରାଜୀ ସାହିତ୍ୟରେ ଅବଗାହୀ ଏହି ବ୍ୟକ୍ତିତ୍ୱ ବିଶ୍ୱଦୃଷ୍ଟିର ଅଧିକାରୀ।

ଖ) କବିତାର ଭାଷା ଓ ଭାବ ସଂପର୍କରେ ତାଙ୍କର ମତାମତ ସ୍ପଷ୍ଟ ଓ ଦୃଢ଼।

ଗ) ସୀମାନ୍ତ ଅନୁଭୂତିର ବିଶ୍ଳେଷଣ ଚମତ୍କାର।

ଘ) 'କବି' ଶୀର୍ଷକ ମଧ୍ୟରେ ସେ ସବୁ ସ୍ରଷ୍ଟାଙ୍କୁ ଏକୀଭୂତ କରିଛନ୍ତି।

ଙ) ଭାରତୀୟ ବେଦ ଉପନିଷ. ପୁରାଣ ଠାରୁ ପ୍ରାଚୀନ କାବ୍ୟ କବିତା ସଂପର୍କରେ ତାଙ୍କ ଅବଧାରଣା ସ୍ପଷ୍ଟ।

i) ତାଙ୍କର ଏହି ପୁସ୍ତକର ଅଧ୍ୟାୟ ବିଭାଜନ ତାଙ୍କର ସମାଲୋଚକୀୟ ଦୃଷ୍ଟିଭଙ୍ଗୀର ପରିଚାରକ।

ii) ନିଜର ଦୃଢ଼ ମତ ଉପସ୍ଥାପନ କରିବା ସମୟରେ ସେ ସ୍ୱତନ୍ତ୍ର।

iii) କବିର ବିଶ୍ୱଦୃଷ୍ଟି କିଭଳି ସମୟ ପରିବର୍ତ୍ତନରେ ବଦଳିଯାଏ ତାହା ସେ ସୂଚାଇଛନ୍ତି।

iv) ପରିବର୍ତ୍ତିତ ସମୟ, ରାଜନୀତି, ଶିକ୍ଷାୟନ, ପାରିବାରିକ ବିଘଟନ ଇତ୍ୟାଦିର ପ୍ରଭାବ ଯେ ସାହିତ୍ୟକୁ ପ୍ରଭାବିତ କରେ ତାହା ସେ ପ୍ରଦର୍ଶିତ କରିପାରିଛନ୍ତି ।

ଯେଉଁ କେତେଜଣ ଇଂରାଜୀ ସାହିତ୍ୟର ବିଦ୍ୱାନ ପ୍ରଫେସର ଓଡ଼ିଆ ସାହିତ୍ୟକୁ ଗୁଣ ଓ ପରିମାଣ ଦୃଷ୍ଟିରୁ ଖାଲି ସମୃଦ୍ଧ କରିନାହାନ୍ତି ବରଂ ନିଜକୁ ଓଡ଼ିଆ କହି ଗର୍ବ ଅନୁଭବ କରନ୍ତି, ସେମାନଙ୍କ ମଧ୍ୟରୁ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି ଅଗ୍ରଗଣ୍ୟ । ତାଙ୍କ ଉଦ୍ଦେଶ୍ୟରେ ପ୍ରକାଶିତ ହେଉଥିବା ଅଭିନନ୍ଦନିକା ପାଇଁ ମୋର ଏ କ୍ଷୁଦ୍ର ଆଲେଖ୍ୟଟି ତାଙ୍କର ପ୍ରତିଭା ପ୍ରତି ପୁଷ୍ପାଞ୍ଜଳି ମାତ୍ର । ସେ ସୁସ୍ଥ ଓ ସୁଖୀ ରହନ୍ତୁ ଏତିକି କାମନା ।

ଅବସରପ୍ରାପ୍ତ ପ୍ରଫେସର, ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ପ୍ଲଟ୍, ବି-୩୫, ଶହୀଦ ନଗର
ଭୁବନେଶ୍ୱର-୭୫୧୦୦୭

# ଯଶସ୍ୱୀ ଲେଖକ
# ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି

ପ୍ରଫେସର ବାଉରୀବନ୍ଧୁ କର

ଆମ ଶିକ୍ଷା ଜଗତରେ ଇଂରାଜୀ ବିଭାଗର ବିଶିଷ୍ଟ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ଖ୍ୟାତି ସୁବିଦିତ। ସେ ଜଣେ ବ୍ୟକ୍ତି ନୁହନ୍ତି, ଏକ ସ୍ୱୟଂସମୃଦ୍ଧ ଅନୁଷ୍ଠାନ। ଇଂରାଜୀ ବିଭାଗର କର୍ତ୍ତବ୍ୟନିଷ୍ଠ ଓ ଛାତ୍ରବତ୍ସଳ ଶିକ୍ଷକ ଭାବରେ, ଓଡ଼ିଆ ସାହିତ୍ୟର ସୁପରିଚିତ ଗଦ୍ୟଶିଳ୍ପୀ ଭାବରେ, ଓଡ଼ିଆ ନାଟ୍ୟ ସାହିତ୍ୟର ନାଟ୍ୟକାର ଓ ନାଟ୍ୟ ନିର୍ଦ୍ଦେଶକ ଭାବରେ, ଗଣମାଧ୍ୟମର ଅନ୍ୟତମ ସ୍ତମ୍ଭକାର ଭାବରେ, ଜଣେ ଖ୍ୟାତନାମା ବାଗ୍ମୀ ଭାବରେ, ମାନବିକ ମୂଲ୍ୟବୋଧରେ ଆସ୍ଥା ରଖିଥିବା ଜଣେ ସୁମଣିଷ ଭାବରେ ଓ ସର୍ବୋପରି ଜଣେ ରୋମାଣ୍ଟିକ୍ ପୁରୁଷ ଭାବରେ ସେ ଅଜସ୍ର ଯଶର ଅଧିକାରୀ। ସଦା ହସହସ, ଉତ୍ତମ ପୋଷାକପତ୍ର ପରିହିତ, ମାର୍ଜିତ ରୁଚିବନ୍ତ ବ୍ୟକ୍ତିତ୍ୱ ଏହି ପ୍ରଫେସର ଓଡ଼ିଶା କାହିଁକି ଓଡ଼ିଶା ବାହାରେ ମଧ୍ୟ ବିଶେଷ ନାଁ କରିଛନ୍ତି। ପିଲା ଠୁ ଆରମ୍ଭ କରି ବୟସ୍କ ପର୍ଯ୍ୟନ୍ତ, ସାଧାରଣ ମଣିଷ ଠାରୁ ଆରମ୍ଭ କରି ବୌଦ୍ଧିକ ମଣିଷ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ବେଶ୍ ଶ୍ରଦ୍ଧା କରନ୍ତି। ପ୍ରଫୁଲ୍ଲ ସାର୍‌ଙ୍କର ଏବେ ଅଶୀ ବର୍ଷ ଜୟନ୍ତୀ ପାଳନ କରାଯିବା ଆମପାଇଁ ଅତି ଆନନ୍ଦର ବିଷୟ। ମୁଁ ଏଇ ଅବସରରେ ମୋର ଭକ୍ତିପୂତ ଅଭିନନ୍ଦନ ସହ ତାଙ୍କର ଦୀର୍ଘ ନିରାମୟ ଜୀବନ କାମନା କରୁଅଛି।

ମୁଁ ପାଠ ପଢ଼ିବା ବେଳୁ ଏ ଯାବତ୍ ତାଙ୍କ ସହିତ ମୋର ସମ୍ପର୍କ ଅବ୍ୟାହତ ରହିଛି। ତାଙ୍କର ଧାରଣା ଅଧ୍ୟାପନା ରୀତି ଯେପରି ସ୍ୱତନ୍ତ୍ର ସେହିପରି ସେ ଛାତ୍ରମାନଙ୍କୁ ଉଚ୍ଚତର ଗବେଷଣା ପାଇଁ ଉତ୍ସାହ ଦେବାରେ ଜଣେ କୃତବିଦ୍ୟ ଶିକ୍ଷକ। ଯେଉଁ ସମୟରେ ଇଂରାଜୀ ସାହିତ୍ୟ ଗବେଷଣା ପାଇଁ ଓଡ଼ିଶାରେ ଭଲ ଗାଇଡ୍ ମିଳୁନଥିଲେ ସେ ସମୟରେ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି ତାଙ୍କ ଅଧୀନରେ ଗବେଷଣା ପାଇଁ

ଛାତ୍ରମାନଙ୍କୁ ଉତ୍ସାହିତ କରୁଥିଲେ। ପ୍ରଫେସର ମହାନ୍ତି କଲେଜ ଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ସବୁଠି ପାଠ ପଢ଼ାଇଛନ୍ତି। ସେ ହେଉଛନ୍ତି ପ୍ରସିଦ୍ଧ ରେଭେନ୍ସା କଲେଜ ଓ ଖଲ୍ଲିକୋଟ କଲେଜର ପ୍ରାକ୍ତନ ଅଧ୍ୟକ୍ଷ। ପୁଣି ଉଚ୍ଚଶିକ୍ଷା ବିଭାଗର ଉପନିର୍ଦ୍ଦେଶକ ଥିଲେ ସେ। ଶିକ୍ଷା-ପ୍ରଶାସନକୁ ଲୋକାଭିମୁଖୀ କରିବାରେ ତାହାଙ୍କ ନିଷ୍ଠା ପ୍ରଶଂସନୀୟ। କେବଳ ସେତିକି ନୁହେଁ, ସେ ମଧ୍ୟ ଦୈନିକ ଖବରକାଗଜ 'ସମୟ'ରେ କାର୍ଯ୍ୟ କରି ଆପଣାର କର୍ମ ଦକ୍ଷତାର ପରିଚୟ ଦେଇଛନ୍ତି। ସେ ସବୁବେଳେ କର୍ମ ଭିତରେ ଆନନ୍ଦ ଅନୁଭବ କରନ୍ତି। ତାଙ୍କ ଦୃଷ୍ଟିରେ ସତ୍କର୍ମର ପ୍ରଭାବ ମଣିଷ ମନରେ ଉନ୍ନତ ଜୀବନ ଯାପନ ପାଇଁ ପ୍ରେରଣା ପ୍ରଦାନ କରେ। ପୁଣି କର୍ମକୁ ମାନବ କଲ୍ୟାଣରେ ବିନିଯୋଗ କରିପାରିଲେ ସେଥିରୁ ନୂତନ ଜୀବନ ଆସ୍ୱାଦ ପାଇଁ ବହୁତ ସାନ୍ତ୍ୱନା ମିଳେ। ସେ ଶିକ୍ଷାଦାନ ସହିତ ସାରସ୍ୱତ ସେବାସତ୍ରରେ ଜୀବନ ଅତିବାହିତ କରିଛନ୍ତି। ମୋ ସହିତ ତାଙ୍କର ଯେତେଥର ଦେଖାସାକ୍ଷାତ୍ ହୋଇଛି, ସବୁବେଳେ ସେ ଆମ ସାଂସ୍କୃତିକ ଜଗତ ସମ୍ପର୍କରେ ଆଲୋଚନା କରନ୍ତି, ଯାହା ଅତ୍ୟନ୍ତ ଉପାଦେୟ।

ପ୍ରଫେସର ମହାନ୍ତିଙ୍କ ଗୁରୁଭକ୍ତି ଦେଖିଲେ ଗୁରୁଙ୍କୁ କିପରି ଉଚ୍ଚ ଆସନ ଦେବାକୁ ହୁଏ ସହଜରେ ବୁଝିହୁଏ। ମୁଁ ଏଠାରେ ତାଙ୍କର ଦୁଇଜଣ ଶିକ୍ଷକଙ୍କ କଥା କହିବି। ଜଣେ ହେଲେ ଚନ୍ଦ୍ରଶେଖର ରଥ ଓ ଅନ୍ୟଜଣେ ହେଲେ ବିୟୋତ୍କେଶ ତ୍ରିପାଠୀ। ମୁଁ ଦେଖିଛି ଅନେକ ସମୟରେ ଆଲୋଚନା ପ୍ରସଙ୍ଗରେ ଚନ୍ଦ୍ରଶେଖର ରଥ ମହାଶୟ ତାଙ୍କର ଶ୍ରଦ୍ଧେୟ ଛାତ୍ର ପ୍ରଫୁଲ୍ଲଙ୍କୁ ସ୍ମରଣ କରନ୍ତି। "କଥା କଥାକେ କହନ୍ତି, ପ୍ରଫୁଲ୍ଲ ପରି ପିଲାଙ୍କୁ ମନ୍ତ୍ରମୁଗ୍ଧ କରି ପଢ଼ାଉଥିବା ଇଂରାଜୀ ଶିକ୍ଷକ ବିରଳ। ସେ ଯାହା ପଢ଼ାଏ ସେ ସମ୍ପର୍କରେ କିଛି ନୂଆ କଥା କହେ। ତାଙ୍କର ପଢ଼ାଇବା ଶୈଳୀ, ଲେଖାଲେଖି, ବୋଧଶକ୍ତିକୁ ସେ ସବୁବେଳେ ପ୍ରଶଂସା କରନ୍ତି।" ପ୍ରଫୁଲ୍ଲ ସାର୍ ମଧ୍ୟ ତାଙ୍କ ତରୁଣ ବୟସରେ ସ୍ନାତକ ଶ୍ରେଣୀରେ ଚନ୍ଦ୍ରଶେଖର ରଥଙ୍କ ପରି ଶିକ୍ଷକଙ୍କ ପାଖରେ ପଢ଼ିଥିବାରୁ ନିଜକୁ ଧନ୍ୟ ମନେକରନ୍ତି। ସେ ପ୍ରଫେସର ବିୟୋତ୍କେଶ ତ୍ରିପାଠୀଙ୍କ ଅଧୀନରେ ଗବେଷଣା କରି ଡକ୍ଟରେଟ୍ ପାଇଥିଲେ। ତାଙ୍କ ପ୍ରତି ତାହାଙ୍କର ଭକ୍ତି ଓ ସମ୍ମାନବୋଧ ପ୍ରଚୁର ଥିଲା। ସେ ଆଜୀବନ ପ୍ରଫେସର ତ୍ରିପାଠୀଙ୍କ ସହିତ ଜଡ଼ିତ ହୋଇ ବିଭିନ୍ନ ସାରସ୍ୱତ କର୍ମରେ ପ୍ରବୃତ୍ତ ହୋଇଥିଲେ। ମୋର ମନେ ପଡୁଛି, ହୋଟେଲ ମାରିୟନ୍‌ରେ ଗୋବିନ୍ଦ ତ୍ରିପାଠୀ ସ୍ମାରକୀ ବକ୍ତୃତା ୨୦୦୭ ମସିହାରେ ଅନୁଷ୍ଠିତ

ହୋଇଥିଲା । ସେଥିରେ ମୁଁ ବକ୍ତା ଥାଏ । ମୋର ବକ୍ତୃତାର ଶୀର୍ଷକ ଥାଏ "ଗୋବିନ୍ଦ ତ୍ରିପାଠୀଙ୍କ ଦୃଷ୍ଟିରେ ଓଡ଼ିଶାର ସଂସ୍କୃତି ।" ବକ୍ତୃତା ସରିବା ପରେ ସେ ମୋତେ କୁଣ୍ଢାଇ ପକାଇଲେ ଓ କହିଲେ, "ଏଡ଼େ ପରିଚ୍ଛନ୍ନ ଭାବରେ ତମେ ଗୋବିନ୍ଦ ତ୍ରିପାଠୀଙ୍କ ପ୍ରବନ୍ଧକୁ ବୁଝିଛ, ସେଥିପାଇଁ ମୋତେ ଭାରି ଖୁସି ଲାଗିଲା ।" ଏହିପରି ଭାବରେ ତାଙ୍କ ସହିତ ବିଭିନ୍ନ ସାରସ୍ୱତ ଉତ୍ସବରେ ମୁଁ ବହୁବାର ଯୋଗ ଦେଇଛି । ସେ ନିକଟରେ ଚନ୍ଦ୍ରଶେଖର ରଥ ସ୍ମାରକୀ ବକ୍ତୃତା ଏତେ ଚମତ୍କାର ଭାବରେ ଦେଇଥିଲେ ଯେ ତାହା ସମସ୍ତଙ୍କ ମନ, ପ୍ରାଣ ଓ ଆତ୍ମାକୁ ଛୁଇଁଥିଲା । ତାଙ୍କର କହିବା ରୀତି ଏତେ ମାର୍ଜିତ ଓ ମନଛୁଆଁ ଯେ ତାହାକୁ ଥରେ ଶୁଣିଲେ ବାରମ୍ବାର ଶୁଣିବାକୁ ଇଚ୍ଛା ହୁଏ । ସେ ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ଖୁବ୍ ଭଲ ବକ୍ତୃତା ଦେଇପାରନ୍ତି ।

ସେ ବହୁବାର ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ରିଫ୍ରେସର କୋର୍ସକୁ ଅଧ୍ୟାପକମାନଙ୍କୁ ପଢ଼ାଇବାକୁ ଆସୁଥିଲେ । ସେ ଏତେ ଉତ୍ତମ ରୂପେ ଓ ପ୍ରାଞ୍ଜଳ ରୂପେ ପ୍ରଶିକ୍ଷକମାନଙ୍କୁ ପଢ଼ାନ୍ତି ଯେ ସେମାନେ ତାଙ୍କ ଶିକ୍ଷାଦାନରେ କୃତାର୍ଥ ହୋଇଥାନ୍ତି । ମୋର ମନେ ପଡୁଛି ସେ ଏମିତି ଢଙ୍ଗରେ ସେଠାରେ 'ଛ ମାଣ ଆଠଗୁଣ୍ଠ' ପଢ଼ାଇଥିଲେ ଯାହା ଶୁଣି ସମସ୍ତେ ଏହା ଫକୀର ମୋହନ ସାହିତ୍ୟର ଏକ ନୂତନ ଅଧ୍ୟୟନ ବୋଲି କହିଥିଲେ । ସେ ଆଉଥରେ ପ୍ରଶିକ୍ଷାର୍ଥୀମାନଙ୍କୁ ନାଟ୍ୟସାହିତ୍ୟର ଉପଯୋଗିତା ସମ୍ପର୍କରେ ଏକ ନୂତନ ଦୃଷ୍ଟିରୁ ପଢ଼ାଇଥିଲେ ।

ପ୍ରଫୁଲ୍ଲ ସାର୍ ଖୁବ୍ ସ୍ନେହୀ ମଣିଷ । ମୁଁ ତାଙ୍କ ଘରକୁ ଯେତେଥର ଯାଇଛି ଜଳଖିଆ ହେଉ ବା ଭୋଜନ ହେଉ ଖାଇକରି ଆସିଛି । ଆମେ ସରସ୍ୱତୀ ସମ୍ମାନ କମିଟିରେ ଥିଲାବେଳେ ମୁଁ ଥରେ ତାଙ୍କ ଘରକୁ ଯାଇଥିଲି ସେଦିନ କାମ ସରୁ ସରୁ ଟିକିଏ ବିଳମ୍ବ ହେଲା । ହଠାତ୍ ମ୍ୟାଡାମ୍ ବାହାରି ଆସି କହିଲେ, "ବାଉରୀବନ୍ଧୁ ବାବୁ, ଆପଣ ଆମ ଘରେ ଖାଇବେ ।" ମୁଁ ସେଦିନ ତାଙ୍କ ଘରେ ଯେଉଁ ନିରାମିଷ ଭୋଜନ ଖାଇଥିଲି, ତାହା ଯେପରି ସୁସ୍ୱାଦୁ ଥିଲା ସେହିପରି ଥିଲା ଦିବ୍ୟ ଭୋଜନ । ପୂଜନୀୟା ମ୍ୟାଡାମ୍ ହେଉଛନ୍ତି ଓଡ଼ିଆ ସାହିତ୍ୟର ବିଶିଷ୍ଟ ଔପନ୍ୟାସିକ ଲକ୍ଷ୍ମୀଧର ନାୟକଙ୍କର ସୁକନ୍ୟା । ପ୍ରଫୁଲ୍ଲ ସାର୍‌ଙ୍କ ସବୁକିଛି ଉନ୍ନତି ମୂଳରେ ମ୍ୟାଡାମ୍‌ଙ୍କ ଭୂମିକା କିଛି କମ୍ ନୁହେଁ ।

ପ୍ରଫୁଲ୍ଲ ସାର୍ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିବା ଜଣେ ବିଶିଷ୍ଟ ଲେଖକ । ତାଙ୍କର ଭାରତୀୟ ସଂସ୍କୃତି ସମ୍ପର୍କରେ ଅଗାଧ ଜ୍ଞାନ ରହିଛି ଓ ଏହାକୁ

ନୂତନ ଦୃଷ୍ଟିକୋଣରୁ ବିଶ୍ଳେଷଣ କରିବାର ଶକ୍ତି ରହିଛି । ସେ ଯେତେବେଳେ ଯାହା ଲେଖନ୍ତି ସବୁବେଳେ ଏକ ନୂତନ ଦୃଷ୍ଟିକୋଣ, ନୂତନ ରୁଚି ଓ ଉଦାର ମାନବିକ ଭାବନା ନେଇ ଲେଖନ୍ତି । ଏ ସକାଶେ ତାଙ୍କର ଲେଖା ପଢ଼ିବାକୁ ଅତ୍ୟନ୍ତ ପ୍ରୀତିକର ।

ପ୍ରଫୁଲ୍ଲ ସାର୍ ଅଶୀ ବର୍ଷରେ ଥିଲେ ସୁଦ୍ଧା ତାଙ୍କ ଭିତରେ ରହିଛି ଯୁବସୁଲଭ ଉଦ୍ଦାମତା । ଏବେ ବି ସେ ସୃଜନ କ୍ରିୟାରେ ନିଜକୁ ମନୋନିବେଶ କରିଛନ୍ତି । ଆଶା ତାଙ୍କ ଲେଖନୀରୁ ଆହୁରି ଉଚ୍ଚକୋଟୀର ଲେଖା ପ୍ରକାଶିତ ହେବ । ପୁନଶ୍ଚ ଆମେ ସମସ୍ତେ ଆଜି ଯେପରି ତାଙ୍କର ଅଶୀ ବର୍ଷର ଜନ୍ମଦିନ ପାଳନ କରୁଛୁ ଭବିଷ୍ୟତରେ ଶହେ ବର୍ଷର ଜୟନ୍ତୀ ପାଳନ କରିବୁ । ସେ ଆହୁରି ଯଶସ୍ୱୀ ହୁଅନ୍ତୁ, ଦୀର୍ଘଜୀବୀ ହୁଅନ୍ତୁ, ଈଶ୍ୱରଙ୍କ ସମସ୍ତ ଶୁଭେଚ୍ଛା ତାଙ୍କ ଉପରେ ଝରିପଡୁ ।

୩୪୮/୨୯୩୭, କପିଳପ୍ରସାଦ
ଭୁବନେଶ୍ୱର-୭୫୧୦୦୨

# ପ୍ରଣମ୍ୟ ପ୍ରଜ୍ଞାପୁରୁଷ : ପ୍ରଫୁଲ୍ଲ କୁମାର

ଇଂ ପ୍ରଭାକର ସ୍ୱାଇଁ

ସଂପ୍ରତି ଆମ ସମାଜରେ ପ୍ରତିଭା ପୂଜା ଅପେକ୍ଷା ପ୍ରତିମା ପୂଜାର ଅଧିକ ପ୍ରଚଳନ ପରିଲକ୍ଷିତ ହେଉଛି । ଭାଷା ସଂସ୍କୃତି ପାଇଁ ଅହରହ କାମ କରୁଥିବା, ଆମ ସାଥିରେ ସଦା ଚଳପ୍ରଚଳ ହେଉଥିବା ବ୍ୟକ୍ତି ବିଶେଷଙ୍କ ପାଇଁ ପୂଜନର ବ୍ୟବସ୍ଥା ଦୁର୍ଲଭ ହୋଇଛି । ଅଷ୍ଟାଦଶ ଶତାବ୍ଦୀର ପ୍ରଖ୍ୟାତ ସାହିତ୍ୟ ସମାଲୋଚକ ସାମୁଏଲ ଜନ୍‌ସନ୍ ବିଶ୍ୱପ୍ରସିଦ୍ଧ ନାଟ୍ୟକାର ୱିଲିୟମ ସେକ୍‌ସପିୟରଙ୍କ ଉପରେ ଆଲୋଚନା କରି ଉଲ୍ଲେଖ କରିଛନ୍ତି; ପୃଥିବୀର ପ୍ରାୟ ସବୁଲୋକ ବର୍ତ୍ତମାନ ଅପେକ୍ଷା ଅତୀତକୁ ଅଧିକ ସମ୍ମାନ ଦେଇଥାନ୍ତି, ପ୍ରତିଭା ସଂପନ୍ନ ଜୀବନ୍ତ ସାହିତ୍ୟିକଙ୍କ ଅପେକ୍ଷା ମୃତଙ୍କ ଉଦ୍ଦେଶ୍ୟରେ ବହୁଳ ପ୍ରଶଂସା ଓ ମାନ୍ୟତା ଜଣାଇଥା'ନ୍ତି । ସାମୁଏଲ୍‌ଙ୍କ ଭାଷାରେ – "While an author is yet living we estimate his powers by worst performance and when he is dead, we rate them by his best !" ମଣିଷର ଏହି ପ୍ରକାର ମାନସିକତାକୁ ସେ କୁସଂସ୍କାର ବୋଲି କହିଛନ୍ତି । ଆମ୍ଭେମାନେ 'Old is Gold' କହିବାରେ ଅଭ୍ୟସ୍ତ । କିନ୍ତୁ ବର୍ତ୍ତମାନକୁ ଛାଡ଼ିଦେବା ଉଚିତ ନୁହେଁ । ଅତୀତ ସହିତ ବର୍ତ୍ତମାନକୁ ଯୋଡ଼ିଲେ ତାହା ଜାତିପାଇଁ ମଙ୍ଗଳମୟ ହୁଏ । ତେଣୁ ଜଣକ ଜୀବଦ୍ଦଶାରେ ପ୍ରତ୍ୟକ୍ଷ ଅନୁଭବରୁ କିଛି କଥା ଲେଖି ସେହି ମହାନ ପୁରୁଷଙ୍କୁ ସର୍ବକାଳୀନ କରିବାର ପ୍ରୟାସ ବାଞ୍ଛନୀୟ ।

ଏତେ ଗୌରଚନ୍ଦ୍ରିକା ତାଙ୍କରି ପାଇଁ । ସେ ହେଉଛନ୍ତି ପ୍ରଥିତଯଶା ସାରସ୍ୱତ ସାଧକ, ପ୍ରବୀଣ ଶିକ୍ଷାବିତ୍, ପ୍ରଚଣ୍ଡ ବାଗ୍ମୀ ଓ ପ୍ରସିଦ୍ଧ ସଂପାଦକ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି । ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି ଭାରତୀୟ ସାହିତ୍ୟରେ ଏକ ଚର୍ଚ୍ଚିତ ଉଚ୍ଚାରଣ । ସେ ଓଡ଼ିଆ ଏବଂ ଇଂରାଜୀ ଉଭୟ ଭାଷା ସାହିତ୍ୟରେ ସାଧନା କରି

ସିଦ୍ଧିଲାଭ କରିଥିବା ସିଦ୍ଧ ସାଧକ। ତାଙ୍କର ସାଧନାର ଦୃଷ୍ଟି ଓ ଦିଗ୍‌ବଳୟ ସୁଦୂରପ୍ରସାରୀ। ସେ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଯଥା ପ୍ରବନ୍ଧ, ସମାଲୋଚନା, ଗଳ୍ପ, ନାଟକ, କବିତା ଓ ଅନୁବାଦ ପ୍ରଭୃତି କ୍ଷେତ୍ରରେ ଲେଖନୀ ଚାଳନା କରି ଅଜସ୍ର ପାଠକୀୟ ଆଦୃତି ଲାଭ କରିଛନ୍ତି। ସେହିଭଳି ଇଂରାଜୀ ସାହିତ୍ୟରେ ସେ ଗବେଷଣା କରି ବହୁ ଉଚ୍ଚାଙ୍ଗ ନିବନ୍ଧମାନ ରଚନା କରିବା ସହିତ ଅନେକ କବିତା ରଚନା କରି ବିଶ୍ୱ ପାଠକର ଦୃଷ୍ଟି ଆକର୍ଷଣ କରିପାରିଛନ୍ତି। ଓଡ଼ିଆ ସାହିତ୍ୟରେ ତାଙ୍କର ସୃଷ୍ଟି ସମ୍ଭାର ମଧ୍ୟରେ କବିତା ସଂକଳନ - ଶୂନ୍ୟର ବ୍ୟାସ, ଇଚ୍ଛାର ପୃଥିବୀ, ପ୍ରବନ୍ଧ ଓ ମସମାଲୋଚନା - ବିରହ ଓ ଅନ୍ୟ ବିଭାବମାନେ, ନିଦାଘରେ କବି, ସାହିତ୍ୟରେ ଜୀବନରାଗ, ଭାରତୀୟ ସଂସ୍କୃତି ଓ ଭଗବଦ୍‌ଗୀତା, କିଛି ଆକାଶ ଓ କିଛି ମାଟି, ଗଳ୍ପ - ଶେଷ ଅପେକ୍ଷା, ନାଟକ - କଳାଜହ୍ନ, ସରାଗ ସନ୍ନ୍ୟାସୀ, ଝରା କୁହେଳି ପ୍ରଭୃତି ଉଲ୍ଲେଖନୀୟ। ତାଙ୍କର ଇଂରାଜୀ କୃତି ମଧ୍ୟରେ Hundred Years of Odia Poetry, Luminous Illusions, Religion Democracy & Other Reflections, Thoughts & Impulses, Stories from Salara's Mahabharat, Festivals of Odisha ପ୍ରଭୃତି ଗ୍ରନ୍ଥ ତାଙ୍କ ସୃଜନ ପ୍ରତିଭାର ବଳିଷ୍ଠ ସ୍ୱାକ୍ଷର। ତାଙ୍କ କଥା ଓ କାହାଣୀଗୁଡ଼ିକ ମାଟି ଓ ମଣିଷକୁ ନେଇ ଆଧାରିତ। ଯେଉଁ ଚରିତ୍ର ଓ ଘଟଣାଗୁଡ଼ିକୁ ସେ ପାଖରେ ଦେଖିଛନ୍ତି ବା ଅଙ୍ଗେ ନିଭେଇଛନ୍ତି, ତାକୁ ହିଁ ସେ ତାଙ୍କ ଗଳ୍ପ ମାନସରେ ରୂପ ଦେଇଛନ୍ତି। ତାଙ୍କ ଗଳ୍ପରାଜିର ଭାଷା ସରଳ, ସାବଲୀଳ ଓ କଥାବସ୍ତୁ ହୃଦୟସ୍ପର୍ଶୀ। ତାଙ୍କ କବିତାର ଅଭିବ୍ୟକ୍ତି ମାର୍ମିକ ଓ ମାନବବାଦୀ। ପୁଣି ସେଗୁଡ଼ିକର ଭାଷାବିନ୍ୟାସ, ଉପମା ଓ ରୂପକଳ୍ପ ଉଚ୍ଚମାନର। କିନ୍ତୁ ପ୍ରାବନ୍ଧିକ ଓ ସାହିତ୍ୟ ସମାଲୋନାର ଭାଷା ସମ୍ଭ୍ରାନ୍ତ ଓ ଶାଣିତ ଏବଂ ବିଷୟବସ୍ତୁ ଭାବଦ୍ୟୋତକ। ଇଂରାଜୀ ଓ ଓଡ଼ିଆରେ ରଚିତ ତାଙ୍କ ପ୍ରବନ୍ଧ ଓ ସମାଲୋଚନା ବିଦ୍ୱାନମାନଙ୍କ ମଧ୍ୟରେ ବେଶ୍ ଆଦୃତ ଓ ପ୍ରଶଂସିତ।

ଶିକ୍ଷାବିତ୍ ପ୍ରଫୁଲ୍ଲ କୁମାର ଓଡ଼ିଶାର ବିଭିନ୍ନ ସମ୍ଭ୍ରାନ୍ତ ସରକାରୀ କଲେଜ ଓ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରି ଛାତ୍ରଛାତ୍ରୀମାନଙ୍କର ବିପୁଳ ଶ୍ରଦ୍ଧାଭାଜନ ହୋଇପାରିଥିଲେ। ୧୯୬୧ରେ ମେଧାବୀ ପ୍ରଫୁଲ୍ଲ ଇଂରାଜୀ ଭାଷା ସାହିତ୍ୟରେ କୃତିତ୍ୱର ସହ ଏମ୍.ଏ. ପାଶ୍ କରି ୧୯୬୨ରେ ଅଧ୍ୟାପନା ଜୀବନ ଆରମ୍ଭ କରିଥିଲେ। ପରେ ସେ ଇଂରାଜୀ ସାହିତ୍ୟରେ ଉଚ୍ଚାଙ୍ଗ ଗବେଷଣା କରି ପି.ଏଚ୍.ଡି ଡିଗ୍ରୀ ଲାଭ କରିଥିଲେ। ସେ ଅଧ୍ୟାପକ, ପ୍ରାଧ୍ୟାପକ, ପ୍ରଫେସର ଓ ଅଧ୍ୟକ୍ଷ ପଦରେ ଅଧିଷ୍ଠିତ ହୋଇ

ନିଜର ପାରଦର୍ଶିତା ପ୍ରଦର୍ଶନ କରିପାରିଥିଲେ। ସେ ଓଡ଼ିଶା ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦର ପ୍ରତିଷ୍ଠାତା ସଚୀବ, ଉପାଧ୍ୟକ୍ଷ, ପ୍ରାଚୀନ ଐତିହାସିକ ରେଭେନ୍‌ସା କଲେଜର ଅଧ୍ୟକ୍ଷ ଓ ଖଲ୍ଲିକୋଟ କଲେଜର ଅଧ୍ୟକ୍ଷ ପଦରେ ଅଧିଷ୍ଠିତ ହୋଇ ପ୍ରଶାସନିକ ଦକ୍ଷତାର ପରିଚୟ ଦେଇଥିଲେ। ରେଭେନ୍‌ସା କଲେଜର ଅଧ୍ୟକ୍ଷ ଭାବରେ ସେହି ମହାନ୍ ଶିକ୍ଷାନୁଷ୍ଠାନର ବିବିଧ ଉନ୍ନତି ସାଧନ କରିଥିଲେ। ତାଙ୍କର ଅଧ୍ୟକ୍ଷ କାଳ ରେଭେନ୍‌ସା କଲେଜ ଇତିହାସରେ ଏକ ସ୍ୱର୍ଣ୍ଣିମ ଅଧ୍ୟାୟ।

ପ୍ରଫେସର ମହାନ୍ତି ଜଣେ ସୁଯୋଗ୍ୟ ସଂପାଦକ ଓ ସୁଦକ୍ଷ ସଂଗଠକ। ସେ ବହୁ ସାରସ୍ୱତ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ସଂପୃକ୍ତ ରହି ତାର ବିକାଶ ପାଇଁ ସଦା ସୁଚିନ୍ତିତ ପରାମର୍ଶ ଦେଇଥାନ୍ତି। ଜଣେ ସୁଯୋଗ୍ୟ ସ୍ତମ୍ଭକାର ଓ ସଂପାଦକ ଭାବରେ ତାଙ୍କର ବିପୁଳ ଖ୍ୟାତି ରହିଛି। ଦୈନିକ ସମାଜ, ସମ୍ବାଦ, ସମୟ ଓ Sun Times ପ୍ରଭୃତି ଖବରକାଗଜ ପୃଷ୍ଠାରେ ତାଙ୍କର ସ୍ତମ୍ଭମାନ ପାଠକମାନଙ୍କୁ ଚମକିତ କରିଥାଏ। ସମ୍ଭ୍ରାନ୍ତ ସାପ୍ତାହିକ 'ସମୟ'ର ସଂପାଦକ ଏବଂ ଦୈନିକ 'ସମୟ'ର ସହଯୋଗୀ ସଂପାଦକ ଭାବରେ ସେ ନିଜର ପାରଦର୍ଶିତା ପ୍ରତିପାଦନ କରିପାରିଛନ୍ତି।

ପ୍ରଫୁଲ୍ଲ ସାର୍‌ଙ୍କ ସହିତ ମୋର ସମ୍ପର୍କ ୧୯୮୫ ମସିହାରୁ। ଆଦିକବି ସାରଳା ଦାସଙ୍କ ଅମର କୃତି ମହାଭାରତର କଥା କାହାଣୀକୁ ନେଇ ଇଂରାଜୀ ଭାଷାରେ ଅନୁବାଦ କରି ବିଶ୍ୱ ସମ୍ମୁଖରେ ପ୍ରତିଷ୍ଠା ଦେବା ପାଇଁ ମୁଁ ଜ୍ଞାନପୀଠ ବିଜୟିନୀ କଥାଶିଳ୍ପୀ ପଦ୍ମଶ୍ରୀ ପ୍ରତିଭା ରାୟଙ୍କ ସହିତ ତାଙ୍କ ପାଖରେ ପହଞ୍ଚିଥିଲି। ସେ ମୋର ଅନୁରୋଧ ରକ୍ଷାକରି ସାରଳାଙ୍କ ଅନନ୍ୟ କାହାଣୀଗୁଡ଼ିକୁ ଇଂରାଜୀରେ ଅନୁବାଦ କରିବା ସହିତ ସେହି ମହାକବିଙ୍କ ଅଲୌକିକ ସାରସ୍ୱତ ପ୍ରତିଭା ସଂପର୍କରେ ଏକ ଦୀର୍ଘ ମୁଖବନ୍ଧ ରଚନା କରିଥିଲେ। ସାରଳା ସାହିତ୍ୟ ସଂସଦର ଏହି ଗ୍ରନ୍ଥ ୧୯୮୭ରେ 'Stories from Sarala's Mahabharat' ଶୀର୍ଷକରେ ଦେଶର ତତ୍କାଳୀନ ବୃହତ୍ ପ୍ରକାଶନ ସଂସ୍ଥା ନୂଆଦିଲ୍ଲୀସ୍ଥିତ Vikas Publishing House ଦ୍ୱାରା ପ୍ରକାଶିତ ହୋଇ ବେଶ୍ ପାଠକୀୟ ସ୍ୱୀକୃତି ଲାଭ କରିଥିଲା। ଏହି ଗ୍ରନ୍ଥ ଦେଶର ବହୁ ବିଦ୍ୱାନ ଓ ମହାନ ସାରସ୍ୱତ ସ୍ରଷ୍ଟାଙ୍କ ଦୃଷ୍ଟି ଆକର୍ଷଣ କରି ଉଚ୍ଚ ପ୍ରଶଂସିତ ହୋଇଥିଲା। ଭାରତବର୍ଷର ତତ୍କାଳୀନ ବିଜ୍ଞ ରାଷ୍ଟ୍ରପତି ଡଃ ଶଙ୍କର ଦୟାଲ ଶର୍ମା ଗ୍ରନ୍ଥଟି ପାଠକରି ଗ୍ରନ୍ଥଟିର ଭୂୟସୀ ପ୍ରଶଂସା କରି ଏକ ଦୀର୍ଘ ପତ୍ର ଆମ ନିକଟକୁ ଲେଖିଥିଲେ। ଏଭଳି ସମ୍ମାନ କେବଳ ପ୍ରଫେସର ମହାନ୍ତିଙ୍କ ଯୋଗୁଁ ସମ୍ଭବ ହୋଇଥିଲା।

୧୯୯୧ରେ ସାରଳା ସାହିତ୍ୟ ସଂସଦର ଆବେଦନ କ୍ରମେ ସିମ୍‌ଲାସ୍ଥିତ ଦେଶର ବୃହତ୍ ସାହିତ୍ୟ ସଂସ୍କୃତି ଇତ୍ୟାଦି ସଂପର୍କିତ ଗବେଷଣା ପ୍ରତିଷ୍ଠାନ 'Indian Institute of Advance Studies' ମହାଭାରତ ଶୀର୍ଷକ ଆନ୍ତର୍ଜାତୀୟ ଆଲୋଚନା ଚକ୍ରର ଆୟୋଜନ କରିଥିଲେ। ସାରଳା ସାହିତ୍ୟ ସଂସଦ ପକ୍ଷରୁ ଏହି ଆଲୋଚନାଚକ୍ରରେ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି, ପ୍ରଫେସର ପଠାଣି ପଟ୍ଟନାୟକ, ଡଃ ଶଙ୍କରଲାଲ ପୁରୋହିତ ଏବଂ ମୁଁ (ଇ. ପ୍ରଭାକର ସ୍ୱାଇଁ) ଯୋଗଦେଇ ନିବନ୍ଧ ପାଠ କରିବା ସହିତ ଆଲୋଚନାରେ ଅଂଶଗ୍ରହଣ କରିଥିଲୁ। ଦେଶ ବିଦେଶର ବହୁ ଗବେଷକ ଓ ବିଦ୍ୱାନମାନଙ୍କ ଉପସ୍ଥିତିରେ ପ୍ରଫେସର ମହାନ୍ତିଙ୍କ ବଳିଷ୍ଠ ଆଲୋଚନା ଓ ବିଦ୍‌ବତ୍ତାପୂର୍ଣ୍ଣ ଯୁକ୍ତି ବଳରେ ସାରଳା ଦାସଙ୍କ ମହାଭାରତ ଭାରତୀୟ ଆଞ୍ଚଳିକ ଭାଷାରେ ପ୍ରଥମ ସମ୍ପୂର୍ଣ୍ଣ ମହାଭାରତ ବୋଲି ପ୍ରମାଣିତ ହୋଇଥିଲା। ଏହା ଓଡ଼ିଆ ଜାତି ଏବଂ ଭାଷା ପାଇଁ ଗୌରବର ଗାଥା। ଏହି ଅବସରରେ ବିଶ୍ୱଭାରତୀ (ଶାନ୍ତି ନିକେତନ)ଠାରେ ସାରଳା ମହାଭାରତ ସମ୍ପର୍କିତ ଆଉ ଏକ ଜାତୀୟ ଆଲୋଚନା ଚକ୍ରରେ ପ୍ରଫେସର ମହାନ୍ତିଙ୍କ ଯୋଗଦାନ ଓ ଭିତ୍ତିନିବନ୍ଧ ଉପସ୍ଥାପନ ପ୍ରସଙ୍ଗ ମୋର ସ୍ମରଣକୁ ଆସୁଛି। ପ୍ରଫୁଲ୍ଲ ସାର୍‌ଙ୍କ ନିବନ୍ଧର ବିଷୟବସ୍ତୁ ଓ ଉପସ୍ଥାପନା ଶୈଳୀରେ ବିମୁଗ୍ଧ ହୋଇ ବିଶ୍ୱଭାରତୀର ତତ୍କାଳୀନ କୁଳପତିଙ୍କ ସମେତ ଉପସ୍ଥିତ ବହୁ ଗବେଷକ ଓ ଆଲୋଚକ ତାଙ୍କୁ ଉଚ୍ଛ୍ୱସିତ ସମ୍ଭାଷଣ ଜ୍ଞାପନ କରିଥିଲେ। ଏହା ମୋର ପ୍ରତ୍ୟକ୍ଷ ଅନୁଭୂତିର କଥା। ଏହିଭଳି ଅନେକ ଜାତୀୟ ଓ ଅନ୍ତର୍ଜାତୀୟ ଆଲୋଚନ ଚକ୍ରରେ ଯୋଗଦେଇ ପ୍ରଫେସର ମହାନ୍ତି ନିଜର ପାଣ୍ଡିତ୍ୟପୂର୍ଣ୍ଣ ବକ୍ତବ୍ୟ ଓ ପ୍ରବନ୍ଧ ପାଇଁ ଉଚ୍ଚ ପ୍ରଶଂସା ଲାଭ କରିଛନ୍ତି। ତାଙ୍କର ଅମୂଲ୍ୟ କୃତି 'ଭାରତୀୟ ସଂସ୍କୃତି ଓ ଭଗବତ୍‌ଗୀତା' ପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି। ତାଙ୍କର ଅନବଦ୍ୟ ନାଟ୍ୟକୃତି ପାଇଁ ସେ ଓଡ଼ିଶା ସଂଗୀତ ନାଟକ ଏକାଡେମୀ ଦ୍ୱାରା ଶ୍ରେଷ୍ଠ ନାଟ୍ୟକାର ସମ୍ମାନରେ ବିମଣ୍ଡିତ ହୋଇଛନ୍ତି। ସେ ମଧ୍ୟ ମାନସିଂହ ସମ୍ମାନ ଏବଂ ଉପେନ୍ଦ୍ର ଭଞ୍ଜ ସମ୍ମାନରେ ସମ୍ବର୍ଦ୍ଧିତ ହୋଇଛନ୍ତି। ସାରଳା ସାହିତ୍ୟ ସଂସଦ ଏଭଳି ଜ୍ଞାନୀ, ଗୁଣୀ ସ୍ରଷ୍ଟାଙ୍କୁ ୨୦୧୮ରେ ମର୍ଯ୍ୟାଦାବନ୍ତ 'ବିଶ୍ୱନାଥ ପଶାୟତ ସମ୍ମାନ'ରେ ବିଭୂଷିତ କରି ଧନ୍ୟ ହୋଇଛି।

ମୋ ପ୍ରତିଷ୍ଠିତ ସାରଳା ସାହିତ୍ୟ ସଂସଦ ସହିତ ପ୍ରଫେସର ମହାନ୍ତିଙ୍କର ନିବିଡ଼ ସମ୍ପର୍କ। ସଂସଦର ବହୁ ଉତ୍ସବରେ ଅତିଥି, ମୁଖ୍ୟ ଅତିଥି, ମୁଖ୍ୟବକ୍ତା ଏବଂ ଶ୍ରୋତା

ଭାବେ ସେ ଯୋଗ ଦିଅନ୍ତି । ସେ ସାରଳା ସାହିତ୍ୟ ସଂସଦର ଓ ମୋର ପରମ ଶୁଭାକାଙ୍‌କ୍ଷୀ । ସେ ବହୁ ସମୟରେ ମୋତେ ସଂସଦର ଉନ୍ନତି କଳ୍ପେ ବହୁ ପରାମର୍ଶ ଦିଅନ୍ତି । ପ୍ରଫୁଲ୍ଲ ସାର୍ ଏବଂ ତାଙ୍କର ସହଧର୍ମିଣୀ ଉଭୟ ଅତ୍ୟନ୍ତ ଶ୍ରଦ୍ଧାଶୀଳ, ସ୍ନେହୀ ଓ ଦରଦୀ ମଣିଷ । ତାଙ୍କ ପରିବାରର ସମସ୍ତଙ୍କୁ ମୁଁ ଘନିଷ୍ଠ ଭାବେ ଜାଣିଛି । ତାଙ୍କର ଏକମାତ୍ର ପୁତ୍ର ଏବଂ ପୁତ୍ରବଧୂ, ଦୁଇ କନ୍ୟା ଏବଂ ଦୁଇ ଜାମାତା ସମସ୍ତେ ଉଚ୍ଚ ପଦରେ ଅଧିଷ୍ଠିତ ଓ ହୃଦୟବତ୍ତାରେ ମଧ୍ୟ ଶ୍ରେଷ୍ଠ ।

ମୁଁ ଅତ୍ୟନ୍ତ ଆନନ୍ଦିତ ଆଗାମୀ ଜୁଲାଇ ୨୩ ତାରିଖରେ ପ୍ରଫେସର ମହାନ୍ତି ଜୀବନର ୮୦ଟି ଶୀତବସନ୍ତ ଅତିବାହିତ କରି ୮୧ ବର୍ଷରେ ପଦାର୍ପଣ କରଛନ୍ତି । ଏହି ଅବକାଶରେ ତାଙ୍କ ପରମ ଶୁଭେଚ୍ଛୁମାନଙ୍କ ପ୍ରଚେଷ୍ଟାରେ ଏକ ଅଭିନନ୍ଦନିକା ପ୍ରକାଶ ପାଉଛି । ଆଜି ତାଙ୍କର ପୁଣ୍ୟ ୮୦ତମ ଜୟନ୍ତୀ ଅବସରରେ ମୁଁ ବାଗ୍‌ଦେବୀ ଶାରଳାଙ୍କ ପାଦପଦ୍ମରେ ଏତିକି ମିନତି କରୁଛି; ପ୍ରଫୁଲ୍ଲ ସାର୍ ସଦା ପ୍ରଫୁଲ୍ଲ ଏବଂ ଚଳଚଞ୍ଚଳ ରହି ଶତାୟୁ ହୁଅନ୍ତୁ ଏବଂ ଆମ ଭାଷା ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରନ୍ତୁ ।

ଶେଷରେ ସେହି ପ୍ରଜ୍ଞାପୁରୁଷ ମୋର ପରମପୂଜ୍ୟ ପ୍ରଫୁଲ୍ଲ ସାର୍‌ଙ୍କ ପଦପଙ୍କଜରେ ଶତଶତ ପ୍ରଣାମ ଜଣାଉଛି ।

ପ୍ରତିଷ୍ଠାତା ଓ ସଭାପତି
ସାରଳା ସାହିତ୍ୟ ସଂସଦ
ସାରଳା ଭବନ,
କଟକ-୭୫୩୦୦୮

# ଓଡ଼ିଆ ସାହିତ୍ୟ ଜଗତର ଅନନ୍ୟ ପ୍ରତିଭା ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି

ଡ. ପ୍ରଦୀପ କୁମାର ଚୌଧୁରୀ

ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି ଉଭୟ ଓଡ଼ିଆ ଓ ଇଂରାଜୀ ସାହିତ୍ୟ ଜଗତର ବେଶ୍ ପରିଚିତ ନାମ। ଅଧ୍ୟାପନା ନିଜର ବୃତ୍ତି ହେଲେ ମଧ୍ୟ ତାଙ୍କ ସାହିତ୍ୟ କୃତି ସୁଦୂରପ୍ରସାରୀ। ଜଣେ ସଫଳ ନାଟ୍ୟକାର, କବି, ପ୍ରାବନ୍ଧିକ, ଗାଳ୍ପିକ ଭାବରେ ସେ ଯେତିକି ଜଣାଶୁଣା ତା'ଠାରୁ ଅଧିକ ବିଶିଷ୍ଟ ସାହିତ୍ୟ ସମାଲୋଚକ ଭାବରେ ଖୁବ୍ ଆଦୃତ। ଭାଷା ସାହିତ୍ୟର ସେ ଜଣେ କୁଶଳୀ ଶିଳ୍ପୀ। ତାଙ୍କ ଲେଖାରେ ସାବଲୀଳ ଭାଷାର ଶବ୍ଦ ସଂଯୋଜନା ଓ ଗଭୀର ଦାର୍ଶନିକ ଚେତନା ପ୍ରସ୍ଫୁଟିତ। ସେ କେବଳ ଜଣେ ବିଶିଷ୍ଟ ଲେଖକ, ସମାଲୋଚକ ଭାବରେ ନୁହେଁ, ଜଣେ ବିଚକ୍ଷଣ ବାଗ୍ମୀ ଭାବରେ ବହୁ ଜନାଦୃତ। ତାଙ୍କ ଓଜସ୍ୱିନୀ ଚମକ୍ରୃତ ବକ୍ତୃତା ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରିଦିଏ। ଗଭୀର ଅଧ୍ୟୟନ ଏବଂ ସବୁ ଶାସ୍ତ୍ରରେ ପ୍ରବେଶ ତା'ଙ୍କୁ କେବଳ ଜଣେ ଦକ୍ଷ ସାହିତ୍ୟିକ ଭାବରେ ନୁହେଁ, ଜଣେ ଆଦର୍ଶ ଚିନ୍ତକ, ସମାଜର ପଥ ପ୍ରଦର୍ଶକ ଏବଂ ଉପଦେଷ୍ଟା ଭାବରେ ପରିଚୟ ଆଣି ଦେଇଛି। ଆଧ୍ୟାତ୍ମିକ, ଧର୍ମ ଓ ଦର୍ଶନ ଶାସ୍ତ୍ରଠାରୁ ଆରମ୍ଭ କରି ଜ୍ୟୋତିଷ, ବିଜ୍ଞାନ ସବୁଥିରେ ତାଙ୍କର ପ୍ରବେଶ ଅଛି। ତାଙ୍କର ବକ୍ତୃତା ପିଲାଠାରୁ ଆରମ୍ଭ କରି ବୃଦ୍ଧ ପର୍ଯ୍ୟନ୍ତ ସମସ୍ତଙ୍କ ମନ କିଣିନିଏ ଏବଂ ସମସ୍ତଙ୍କ ମନରେ ଗଭୀର ରେଖାପାତ କରେ। ସେ ଜଣେ ଆଦର୍ଶ ଶିକ୍ଷକ ଭାବରେ ସମସ୍ତ ଛାତ୍ରଙ୍କର ଅତି ପ୍ରିୟ ଏବଂ ଆପଣାର। ତାଙ୍କ ପ୍ରଶାସନିକ ଦକ୍ଷତା ତା'ଙ୍କୁ ଅନେକ ପ୍ରଶାସନିକ ପଦବୀରେ ଅଭିଷିକ୍ତ କରିଥିଲେ ମଧ୍ୟ ସେ ଜଣେ ଛାତ୍ରବତ୍ସଳ ଶିକ୍ଷକ ଭାବରେ ସର୍ବଜନବିଦିତ।

ତାଙ୍କର ସାହିତ୍ୟକୃତି କେବଳ ଓଡ଼ିଶା କିମ୍ବା ଓଡ଼ିଆ ସାହିତ୍ୟରେ ସୀମିତ ନୁହେଁ। ସେ ମଧ୍ୟ ଇଂରାଜୀ ସାହିତ୍ୟର ଜଣେ କୁଶଳୀ ବିନ୍ଧାଣି। ଜଣେ ଦକ୍ଷ ଓ ପ୍ରତିଷ୍ଠିତ ଇଂରାଜୀ

ସାହିତ୍ୟିକ ଭାବରେ ତାଙ୍କର ସୁନାମ ରହିଛି । ଇଂରାଜୀ ଭାଷାରେ ଦକ୍ଷତା ଓ ଗଭୀର ପ୍ରବେଶ ତାଙ୍କୁ ଆଣିଦେଇଛି ଆନ୍ତର୍ଜାତିକ ସ୍ତରର ସାହିତ୍ୟିକର ମାନ୍ୟତା । ଓଡ଼ିଆ ଓ ଇଂରାଜୀ ଭାଷାରେ ଦକ୍ଷତା ଥିବା ଅନନ୍ୟ ଓଡ଼ିଶାର ବିରଳ ସାହିତ୍ୟିକ ହେଉଛନ୍ତି ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି । ତାଙ୍କର ମୁଖମଣ୍ଡଳରେ ଗଭୀର ଗାମ୍ଭୀର୍ଯ୍ୟ ପରିଲକ୍ଷିତ ହେଉଥିଲେ ମଧ୍ୟ ସେ ମାନସିକ ଚେତନାରେ ସର୍ବଦା ପ୍ରଫୁଲ୍ଲ ରହିଥାନ୍ତି । ଏହିଭଳି ସ୍ୱନାମଧନ୍ୟ ସାହିତ୍ୟିକ, ଆଦର୍ଶ ଶିକ୍ଷକ, ସର୍ବୋପରି ବିଶାଳ ହୃଦୟର ବିରଳ ବ୍ୟକ୍ତିତ୍ୱଙ୍କ ସହ ଘନିଷ୍ଠତା ମୋର ପରମ ସୌଭାଗ୍ୟ ।  ମୋର ଏକ ବିଶେଷ ଆଦୃତ ଜ୍ୟୋତିଷ ପୁସ୍ତକ 'ଶନି ମହାଗ୍ରହ ପ୍ରଭାବ ଓ ପ୍ରତିକାର' ପୁସ୍ତକର ଆଦ୍ୟ କଥନରେ ପୁସ୍ତକ ଓ ଶନି ମହାଗ୍ରହଙ୍କ ସଂପର୍କରେ ସେ ଯେଉଁ ଆଲୋଚନା ରଖିଛନ୍ତି ଏହା ଥରେ ପାଠକ ପଢ଼ିଲା ପରେ ତାଙ୍କର ପୌରାଣିକ, ବୈଜ୍ଞାନିକ, ଦାର୍ଶନିକ ଓ ଜ୍ୟୋତିଷ ଶାସ୍ତ୍ରର ପାରଦର୍ଶିତା ଏବଂ ଅକାଟ୍ୟ ଯୁକ୍ତିକୁ ଜଣେ ସ୍ୱୀକାର କରିବାକୁ ବାଧ୍ୟ ହେବ ଏଥିରେ ଦ୍ୱିମତ ନାହିଁ । ମୋର ଏକ ଅନନ୍ୟ ଆଧ୍ୟାତ୍ମିକ ଜ୍ୟୋତିଷ ସମ୍ବଳିତ ଗ୍ରନ୍ଥ 'ସଦ୍‌ଗୁରୁ ଶିରିଡ଼ି ସାଇବାବା ପୂଜା ଓ ନବଗ୍ରହ ଶାନ୍ତି ବିଧାନ' ଗ୍ରନ୍ଥର ଉନ୍ମୋଚନ ଅବସରରେ ଅତିଥି ଭାବରେ ତାଙ୍କର ବକ୍ତୃତା ସମସ୍ତ ବିଜ୍ଞ ଅତିଥି ଏବଂ ସାଇଭକ୍ତଙ୍କୁ ଆଧ୍ୟାତ୍ମିକ ଚେତନାରେ ଉଦ୍‌ବୁଦ୍ଧ କରିଥିବା କଥା ଏବେବି ଆଧ୍ୟାତ୍ମିକ ପିପାସୁ ସାଇଭକ୍ତ ଏବଂ ସାହିତ୍ୟିକମାନେ ମନେ ରଖିଛନ୍ତି ।

ମୋର ଅନ୍ୟ ଏକ ଯୁଗଳ ପୁସ୍ତକ 'ମୋ ସାଇ ମୋ ପୃଥିବୀ' ଏବଂ 'ଶ୍ରୀକୃଷ୍ଣ ଉପାସନା ଓ ନବଗ୍ରହ ଶାନ୍ତିବିଧାନ'ର ଉନ୍ମୋଚନ ଉତ୍ସବରେ ଅଧ୍ୟକ୍ଷତା କରି ସେ ଯେଉଁ ଓଜସ୍ୱିନୀ ବକ୍ତୃତା ପ୍ରଦାନ କରିଥିଲେ ତାହା ସମସ୍ତ ଶ୍ରୋତାଙ୍କ ମନରେ ଗଭୀର ରେଖାପାତ କରିବା ସଙ୍ଗେସଙ୍ଗେ ଦାର୍ଶନିକ ଚିନ୍ତନର ପରିପ୍ରକାଶ କରି ସବୁ ଶାସ୍ତ୍ରର ସବୁଦିଗକୁ ଛୁଇଁଥିଲା । ମହାଭାରତ ଠାରୁ ଆରମ୍ଭକରି ମହାଜାଗତିକ ବିପ୍ଳବ ଏବଂ ରାମାୟଣଠାରୁ ଆରମ୍ଭ କରି ରସାୟନ ବିଜ୍ଞାନ ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ତାଙ୍କରି ପାରଦର୍ଶିତା ତାଙ୍କୁ କେବଳ ସାହିତ୍ୟିକ ଭାବରେ ମାନ୍ୟତା ପ୍ରଦାନ କରେ ନାହିଁ, ଜଣେ ଦାର୍ଶନିକ, ସମାଜର ଶୁଭଚିନ୍ତକ ଏବଂ ଜଣେ ସକାରାତ୍ମକ ଦିଗ୍‌ଦର୍ଶକ ଭାବରେ ମଧ୍ୟ ସମ୍ମାନ ପ୍ରଦାନ କରେ । ତାଙ୍କର ସମାଲୋଚନା ସାହିତ୍ୟ ମଧ୍ୟ ସକାରାତ୍ମକ ଦିଗକୁ ଆଲୋକ ପ୍ରଦାନ କରେ । ଏଥିରୁ ଅନୁମେୟ, ସେ ଜଣେ ସାହିତ୍ୟ ଓ ସମାଜର ଶୁଭଚିନ୍ତକ ଓ ଦିଗ୍‌ଦର୍ଶକ । ମୋ ଚେତନାରେ ଅଧ୍ୟାପକ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି ସମୁଦ୍ର ଭଳି । ବେଳାଭୂମିରେ ସମୁଦ୍ର ଖୁବ୍

ଅଶାନ୍ତ କିନ୍ତୁ ଭିତରେ ଗଭୀର, ଶାନ୍ତ ଓ ସ୍ଥିର। ଠିକ୍ ସେହିପରି ପ୍ରଫେସର ପ୍ରଫୁଲ୍ଲ ମହାନ୍ତି ବାହାରୁ ଗୁରୁ ଗମ୍ଭୀର ଦେଖାଯାଉଥିଲେ ମଧ୍ୟ ଭିତରେ ସେ ଖୁବ୍ ପ୍ରଫୁଲ୍ଲ । ଏଥିରୁ ତାଙ୍କ ନାମର ଯଥାର୍ଥତା ପ୍ରତିପାଦିତ ହୁଏ।

ସେ ଜଣେ ସଫଳ ସାରସ୍ୱତ ସାଧକ ଓ ମାତା ସରସ୍ୱତୀଙ୍କର ବରପୁତ୍ର। ତାଙ୍କୁ ପୁରସ୍କାର ଓ ସମ୍ମାନର ମୋହମାୟା କେବେ ଗ୍ରାସ କରନିାହିଁ। ସେ ଆଜିକାଲିର ପୁରସ୍କାର ସମ୍ମାନ ପିପାସୁ ସାହିତି୍ୟକଙ୍କ ଗଣଦୌଡ଼ରେ ନାହାନ୍ତି। ତାଙ୍କ ସାହିତ୍ୟ କୃତି ପୁରସ୍କାର ଓ ସମ୍ମାନ ଠାରୁ ବହୁ ଊର୍ଦ୍ଧ୍ୱରେ ଏଥିରେ ଲେଶମାତ୍ର ସନ୍ଦେହ ନାହିଁ।

ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି ଏବେ ଅଶୀ ବର୍ଷରେ ପଦାର୍ପଣ କରିଛନ୍ତି। ଏହା ବଡ଼କଥା ନୁହେଁ । କିନ୍ତୁ ଏହି ଅଶୀ ବର୍ଷର ଚଲାପଥରେ ସେ ଯେଉଁ ଅନନ୍ୟ ସାହିତ୍ୟକୃତି ଭେଟି ଦେଇଛନ୍ତି ତାହା ଉଭୟ ଓଡ଼ିଆ ଓ ଇଂରାଜୀ ସାହିତ୍ୟକୁ ଏକ ନୂତନ ଦିଗ ଦେଇଛି ଏବଂ ସମାଜକୁ ଏକ ସକାରାତ୍ମକ ଆଲୋକ ଓ ଉତ୍ସାହ ପ୍ରଦାନ କରିଛି, ଏହାକୁ କେହି ଅସ୍ୱୀକାର କରିପାରିବେ ନାହିଁ। ଅଧ୍ୟାପକ ପ୍ରଫୁଲ୍ଲ ମହାନ୍ତି ସଦା ପ୍ରଫୁଲ୍ଲ। ତାଙ୍କୁ କେବେ ଗ୍ଲାନି ଗ୍ରାସ କରିନାହିଁ କି ଆଗକୁ କରିବାର ଅବକାଶ ନାହିଁ। ତାଙ୍କର ଚିତ୍ତ ସଦା ପ୍ରଫୁଲ୍ଲିତ। ସେ ଦୀର୍ଘାୟୁ ହୁଅନ୍ତୁ, ଯଶସ୍ୱୀ ହୁଅନ୍ତୁ ଏବଂ ଏହିପରି ଅନେକ ସାହିତ୍ୟ କୃତି ଆଗକୁ ଦେଇ ଉଭୟ ସମାଜ ଓ ସାହିତ୍ୟକୁ ରୁଚିମନ୍ତ ଓ ଋଦ୍ଧିମନ୍ତ କରୁଥାନ୍ତୁ ଏହାହିଁ ସେହି ନିରାକାର ଅନନ୍ତ ଈଶ୍ୱରଙ୍କ ଠାରେ ମୋର ପ୍ରାର୍ଥନା।

ଭିଏ ୩୪/୪, ୟୁନିଟ୍-୨, ଭୁବନେଶ୍ୱର
ମୋ: ୯୪୩୭୨୮୪୨୧୧

# ପ୍ରଫୁଲ୍ଲ ମହାନ୍ତିଙ୍କ ନାଟ୍ୟସ୍ୱର

**ପ୍ରଫେସର ନାରାୟଣ ସାହୁ**

ଓଡ଼ିଆ ସାହିତ୍ୟର ଜଣେ ଚର୍ଚ୍ଚିତ ପୁରୁଷ ହେଉଛନ୍ତି ପ୍ରଫୁଲ କୁମାର ମହାନ୍ତି। ସେ ହେଉଛନ୍ତି ଏକାଧାରରେ ଜଣେ ପ୍ରାବନ୍ଧିକ, ସମାଲୋଚକ, ଅନୁବାଦକ, ଅଭିନେତା, ନିର୍ଦ୍ଦେଶକ ଓ ନାଟ୍ୟକାର। 'ଭାରତୀୟ ସଂସ୍କୃତି ଓ ଭଗବତ୍‌ଗୀତା' ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିବା ଏଇ ସମାଲୋଚକ ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରେ ଅନେକ ପୁସ୍ତକ ରଚନା କରିଛନ୍ତି। ବିରହ ଓ ଅନ୍ୟ ବିଭବମାନେ, କିଛି ଆକାଶ କିଛି ମାଟି, ନିଦାଘରେ କବି, ସାହିତ୍ୟରେ ଜୀବନରଥ ଇତ୍ୟାଦି ହେଉଛି ତାଙ୍କର ଉଲ୍ଲେଖଯୋଗ୍ୟ ସଂକଳନ। ତାଙ୍କ ଆବୃତ୍ତି, ଆଲୋଚନା ଏବଂ ଭାଷଣ ସବୁଠି ପରିଲକ୍ଷିତ ହୁଏ ଏକ ଅଦ୍ଭୁତ କାବ୍ୟିକତା।

ଏଇ ବ୍ୟକ୍ତିତ୍ୱଙ୍କ ସମ୍ପର୍କରେ ଅନେକ ଅକୁହାକଥା ରହିଛି, ଯାହା ଉପସ୍ଥାପନା ପାଇଁ ଉଚିତ ମଣୁଛି। ସାଧାରଣତଃ ନାଟ, ତାମ୍‌ସା ପ୍ରତି ପ୍ରତିଷ୍ଠିତ ପରିବାରର ଲୋକମାନଙ୍କର ଆଦୌ ଭଲ ଧାରଣା ନଥିଲା। ପିଲାଦିନରୁ ପ୍ରଫୁଲ୍ଲ ନାଟ୍ୟଜଗତ ପ୍ରତି ଆକର୍ଷିତ ହୋଇଥିଲେ। ଘରୁ ଲୁଚିକରି ପରିବାର ଲୋକଙ୍କୁ ଜଣାଇ ରାଧା ପ୍ରେମଲୀଳା, ଦଣ୍ଡନାଟ, ପ୍ରହ୍ଲାଦ ନାଟ ଦେଖି ଚମତ୍କୃତ ହେଉଥିବା ଏଇ ମଣିଷଟିର ବାଲ୍ୟକାଳରେ ହିଁ ମଞ୍ଚପ୍ରବେଶ ହୋଇଥିଲା। ମାତ୍ର ନ'ବର୍ଷ ବୟସରେ ସେ 'ରଘୁ ଅରକ୍ଷିତ' ନାଟକରେ ଅଭିନୟ କରିବାର ସୁଯୋଗ ପାଇଥିଲେ।

ଖଲ୍ଲିକୋଟ କଲିଜିଏଟ ହାଇସ୍କୁଲ ହିଁ ତାଙ୍କ ଜୀବନର ମୋଡ଼ ସୃଷ୍ଟି କରିଥିଲା। ଇଂରାଜୀ ଓ ଓଡ଼ିଆ ଡିବେଟ୍‌ରେ ରୁଚି ରଖି ବାରମ୍ବାର ପୁରସ୍କୃତ ହେଉଥିବା ଏଇ ଛାତ୍ରଟି ବିଦ୍ୟାଳୟରେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା। ବିଦ୍ୟାଳୟର ପ୍ରଧାନ ଶିକ୍ଷକ ରାମଚନ୍ଦ୍ର ପଟ୍ଟନାୟକ ତାଙ୍କୁ ନାଟକରେ ମିଶିବା ପାଇଁ ପ୍ରେରଣା ଦେଇଥିଲେ।

ଏଠାରେ ସେ ପ୍ରଥମକରି ଇଂରାଜୀ ନାଟକ Uncle Bodger Harys a Pictureରେ ୧୯୫୪ ମସିହାରେ ଅଭିନୟ କରିଥିଲେ। ୧୯୫୫ରେ ସେ ଖଲ୍ଲିକୋଟ କଲିଜିଏଟ ହାଇସ୍କୁଲରୁ ମାଟ୍ରିକ୍ ପାଶ୍ କରିଥିଲେ ଏବଂ ପରବର୍ତ୍ତୀ କାଳରେ କଲେଜରେ ପଢୁଥିବାବେଳେ ମଧ୍ୟ ସେ ନାଟକ ସହିତ ଜଡ଼ିତ ହେଉଥିଲେ।

୧୯୬୨ରେ ସେ ରେଭେନ୍ସା କଲେଜରେ ଇଂରାଜୀ ଅଧ୍ୟାପକ ଭାବେ ଯୋଗ ଦିଅନ୍ତି। କଟକ ସହର ଥିଲା ସେ ସମୟରେ ନାଟକର ପ୍ରାଣକେନ୍ଦ୍ର। ତେଣୁ ଆଉ ପାଦେ ଆଗେଇବାକୁ ଏଠାରେ ତାଙ୍କୁ ସୁଯୋଗ ମିଳେ। ଅବଶ୍ୟ ଏହା ପଛରେ ଥିଲା ଅଧ୍ୟାପକ ଦେବେନ୍ଦ୍ର ନାଥ ମିଶ୍ରଙ୍କ ପ୍ରଚ୍ଛନ୍ନ ଆଶୀର୍ବାଦ। ରେଭେନ୍ସା କଲେଜରେ ଏକ ନାଟ୍ୟ ପାଣିପାଗ ସୃଷ୍ଟି କରିବାରେ ଆଗେଇ ଯାଆନ୍ତି ପ୍ରଫୁଲ୍ଲ ମହାନ୍ତି।

ସେ ନାଟକକୁ ନେଇ ନାନା ପରୀକ୍ଷା ନିରୀକ୍ଷା ଆରମ୍ଭ କରନ୍ତି। ରେଭେନ୍ସା କଲେଜରେ ସେ ରମେଶ ପାଣିଗ୍ରାହୀଙ୍କ ପ୍ରଥମ ନାଟକ 'ନିଶିଥ ସୂର୍ଯ୍ୟ'କୁ ମଞ୍ଚସ୍ଥ କରାନ୍ତି। ନିର୍ଦ୍ଦେଶନା ଦେବା ସହିତ ଅଭିନୟ ମଧ୍ୟ କରନ୍ତି। ଏଇ ନାଟକଟି ଏ ଯାବତ୍ ପ୍ରକାଶିତ ହୋଇପାରି ନାହିଁ। ଏ ନାଟକରେ ତିନୋଟି ମଞ୍ଚ ପ୍ରଦର୍ଶିତ ହୋଇଥିଲା। ଆଲୋକ ସଂପାତରେ ସେ ନୂତନତା ପ୍ରଦର୍ଶନ ସହ ଅଭିନୟ ବେଳେ ଆଦୌ ଡପ୍ ନ ପକାଇ ନାଟକଟିକୁ ମଞ୍ଚସ୍ଥ କରାଇଥିଲେ। ଏଇ କଲେଜରେ ସେ ବିଜୟ ମିଶ୍ରଙ୍କ 'ଶବବାହକମାନେ'କୁ ନିର୍ଦ୍ଦେଶନା ଦେଇଥିଲେ। ସେ ସମୟରେ ଷ୍ଟେଜ୍‌ରେ ସେ ଦୁଇମହଲା ଘର ଦେଖାଇଥିଲେ।

ଉତ୍ତରପୁରୁଷ, ବେଲୁନ, ପକ୍ଷୀ ଆଦି ତେରଗୋଟି ଏକାଂକିକା ସେ ରଚନା କରିଛନ୍ତି, ଯେଉଁଥିରୁ ଅଧିକାଂଶ ରେଭେନ୍ସା କଲେଜରେ ଅଭିନୀତ ହୋଇଛି। ତାଙ୍କ ନିର୍ଦ୍ଦେଶିତ ନାଟକରେ ମହମ୍ମଦ ମହସିନ୍ ଏବଂ ପ୍ରଶାନ୍ତ ନନ୍ଦ ମଧ୍ୟ ଅଭିନୟ କରିଛନ୍ତି।

୧୯୬୭ରେ ମଞ୍ଚସ୍ଥ ହୁଏ ନିଜ ନିର୍ଦ୍ଦେଶନାରେ 'ଝରା କୁହେଳି'। ଏଥିରେ ପ୍ରଶାନ୍ତ ନନ୍ଦ ଅଭିନୟ କରିଥିଲେ। ଏଇଟି ଥିଲା ପ୍ରଫୁଲ୍ଲ ମହାନ୍ତିଙ୍କ ରଚିତ ପ୍ରଥମ ନାଟକ। ୧୯୬୮ ବେଳକୁ ଓଡ଼ିଶାରେ ତଥାକଥିତ ଉଦ୍ଭଟ ନାଟକର ପାଣିପାଗ ସୃଷ୍ଟି ହୋଇଥିଲା। ମନୋରଂଜନ, ବିଶ୍ୱଜିତ୍, ବିଜୟ ଆଗଧାଡ଼ିର ନାଟ୍ୟକାରଗଣ ଏଥିପାଇଁ ଅଣ୍ଟାଭିଡ଼ି ବାହାରିଥାନ୍ତି। ଏଇ ସମୟରେ ସେ ୧୯୬୮ ମସିହାରେ ଏଡୱାର୍ଡ଼ ଆଲ୍‌ବିଙ୍କ ରଚିତ Zoo Story ନାଟକରେ ଅଭିନୟ ସହ ନିର୍ଦ୍ଦେଶନା ମଧ୍ୟ ଦିଅନ୍ତି।

୧୯୭୨ ମସିହା ବେଳକୁ ସେ ବ୍ରହ୍ମପୁର ଖଲ୍ଲିକୋଟ କଲେଜକୁ ବଦଳି ହୁଅନ୍ତି। ଏଠାରେ ସେ ଗଂଜାମ କଳା ପରିଷଦ ସହ ଜଡ଼ିତ ହୁଅନ୍ତି। ୧୯୭୪ରେ ସେ ରଚନା କରନ୍ତି 'କଳାଜହ୍ନ' ନାଟକ ଏବଂ ଏହି ବର୍ଷ ଗଂଜାମ କଳା ପରିଷଦରେ ଅଭିନୀତ ହୁଏ। ତାଙ୍କ ନିର୍ଦ୍ଦେଶିତ ଏହି ନାଟକରେ ବସନ୍ତ ପାଣିଗ୍ରାହୀ ମଧ୍ୟ ଅଭିନୟ କରିଛନ୍ତି। ଏ ନାଟକଟି ନନ୍ଦିନୀ ଶତପଥୀଙ୍କ ନିମନ୍ତ୍ରଣ କ୍ରମେ ରବୀନ୍ଦ୍ର ମଣ୍ଡପରେ ମଧ୍ୟ ଅଭିନୀତ ହୁଏ। ବିଜେବି କଲେଜ, ବିକ୍ରମଦେବ କଲେଜ ଆଦିରେ ମଧ୍ୟ ଏହା ଅଭିନୀତ ହୋଇଛି। 'କଳାଜହ୍ନ' ନାଟକରେ ସେ ନିଜେ ମଧ୍ୟ ଅଭିନୟ କରିଛନ୍ତି।

୧୯୭୬ ମସିହାରେ ସେ ରଚନା କରନ୍ତି 'ମଳା ଆକାଶ'। କୋରାପୁଟଠାରେ ଅନୁଷ୍ଠିତ ନାଟକ ପ୍ରତିଯୋଗିତାରେ ଏ ନାଟକଟି ପ୍ରଥମ ପୁରସ୍କାର ପାଏ। ଏହି ପ୍ରତିଯୋଗିତାରେ ସେତେବେଳେ ଅନ୍ୟତମ ବିଚାରକ ଥିଲେ ବରିଷ୍ଠ ନାଟ୍ୟକାର ଗୋପାଳ ଛୋଟରାୟ। ୧୯୭୭ରେ ରଚନା କରନ୍ତି 'ସରାଗ ସନ୍ନ୍ୟାସୀ'। ଏହାର ପ୍ରଥମ ଅଭିନୟ ସମ୍ବଲପୁରଠାରେ ହୁଏ। ପରେ ପରେ ଏହି ନାଟକ ବରଗଡ଼, ରାଉରକେଲା, ବ୍ରହ୍ମପୁର, ଜୟପୁର ଆଦି ସହରରେ ଅଭିନୀତ ହୋଇଛି।

୧୯୭୮ ମସିହାରେ ସେ ଏଲିଅଟଙ୍କ 'ୱେଷ୍ଟଲ୍ୟାଣ୍ଡ'କୁ ନାଟ୍ୟରୂପ ଦେଇ ଅଭିନୟ କରାନ୍ତି ଇଂରାଜୀ ଭାଷାରେ। ଗଂଜାମ କଳା ପରିଷଦରେ ମଞ୍ଚସ୍ଥ ଏଇ ନାଟକରେ ଅଭିନୟ ସହିତ ନିର୍ଦ୍ଦେଶନା ମଧ୍ୟ ଦିଅନ୍ତି। ୧୯୭୮ ଏବଂ ୧୯୭୯ରେ ସେକ୍ସପିଅରଙ୍କ 'ଅଥେଲୋ'କୁ ପ୍ରାୟ ପାଞ୍ଚବାର ମଞ୍ଚସ୍ଥ କରାଇଛନ୍ତି। ବ୍ରହ୍ମପୁର ମହିଳା କଲେଜରେ ମଧ୍ୟ ଏ ନାଟକ ପ୍ରଦର୍ଶିତ ହୋଇଛି। ଖାଲି ସେତିକି ନୁହେଁ, 'ଅଥେଲୋ'ର ସେତେବେଳେ ଅର୍ଥାତ୍ ୧୯୮୭ରେ ମଧ୍ୟ ଟିକେଟେଡ୍ ସୋ ହୋଇଛି। ଗଂଜାମ କଳା ପରିଷଦରେ ସେ ମଧ୍ୟ ଆଇନେସ୍କୋଙ୍କ The Lessionକୁ ମଞ୍ଚସ୍ଥ କରାଇଛନ୍ତି। ଏ ନାଟକରେ ସେ ଅଭିନୟ ସହ ନିର୍ଦ୍ଦେଶନା ଦେଇଛନ୍ତି।

୧୯୮୭ରେ ସେ ଇଂରାଜୀ ଭାଷା ସାହିତ୍ୟର ପ୍ରଫେସର ପଦବୀରେ ନିଯୁକ୍ତ ହୁଅନ୍ତି। ୧୯୯୨ରେ ତାଙ୍କ ନିର୍ଦ୍ଦେଶରେ ରେଭେନ୍ସାରେ ମଞ୍ଚସ୍ଥ ହୁଏ All My Sons। ଏହାଛଡ଼ା ଏଠାରେ ସେ ଇବ୍ସେନ୍ଙ୍କ The Wild Duck ନାଟକ ମଧ୍ୟ ମଞ୍ଚସ୍ଥ କରାନ୍ତି। ଏଇ ସମୟରେ ସେ ପ୍ରସିଦ୍ଧ ନାଟ୍ୟକାର ମନୋରଞ୍ଜନ ଦାସଙ୍କ 'କାଠଘୋଡ଼ା' ନାଟକକୁ ଇଂରାଜୀ ଅନୁବାଦ କରି The Wooden Horseକୁ ମଞ୍ଚସ୍ଥ କରାନ୍ତି।

୧୯୯୩ରେ ସେ ରେଭେନ୍‌ସାର ପ୍ରିନ୍‌ସପାଲ ହୁଅନ୍ତି। ଏଠାରେ ତାଙ୍କ ନିର୍ଦ୍ଦେଶରେ ମଞ୍ଚସ୍ଥ ହୁଏ 'ଚଣ୍ଡାଳିକା'ର ଇଂରାଜୀ ଅନୁବାଦ। ୧୯୯୪ରେ ସେ ମଞ୍ଚସ୍ଥ କରାନ୍ତି 'କାଳିଜାଈ'ର ନାଟ୍ୟରୂପ। ରେଭେନ୍‌ସା କଲେଜରେ ସେତେବେଳେ ଏକ ନାଟ୍ୟ ପାଣିପାଗ ସୃଷ୍ଟି କରିବାରେ ପ୍ରଫେସର ମହାନ୍ତିଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ।

ଅବସର ଗ୍ରହଣ ପରେ ମଧ୍ୟ ସେ ଥକି ପଡ଼ିନାହାନ୍ତି। କୋଣାର୍କ ଫେଷ୍ଟିଭାଲ୍‌ରେ ସେ ସେକ୍‌ସପିଅରଙ୍କ King Learକୁ ନୃତ୍ୟନାଟିକା ଶୈଳୀରେ ନିର୍ଦ୍ଦେଶନା ଦେଇ ମଞ୍ଚସ୍ଥ କରାଇଛନ୍ତି। ଏଥିରେ ବିଖ୍ୟାତ ଓଡ଼ିଶୀ ନୃତ୍ୟାଙ୍ଗନା କୁମ୍‌କୁମ୍ ମହାନ୍ତି ମଧ୍ୟ ଅଭିନୟ କରିଛନ୍ତି। ନାଟ୍ୟକ୍ଷେତ୍ରରୁ ସିନେକ୍ଷେତ୍ରକୁ ମଧ୍ୟ ତାଙ୍କ ଦୁନିଆ ପ୍ରସାରିତ ହୋଇଛି। ୨୦୦୬ ମସିହାରେ ମନୋଜ ଦାସଙ୍କ 'ଆରଣ୍ୟକ' ନାଟ୍ୟରୂପ ଦୂରଦର୍ଶନ ପାଇଁ ପ୍ରସ୍ତୁତ କରନ୍ତି, ଯାହା ତାଙ୍କ ପାଇଁ ଅଜସ୍ର ପ୍ରଶଂସା ଆଣେ। ଏହାପରେ ୨୦୦୮ରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପାଇଁ ପ୍ରସ୍ତୁତ କରନ୍ତି ମନୋଜ ଦାସଙ୍କ Bio-Pic। ଅନେକ ଡକୁମେଣ୍ଟାରିରେ ମଧ୍ୟ ସେ ହସ୍ତଚାଳନା କରିଛନ୍ତି। ସବୁଠି ରହିଛି ପ୍ରବୀଣ ନାଟୁଆର ନିଛକ ଅନୁଭୂତି।

ପ୍ରଫୁଲ୍ଲ ମହାନ୍ତିଙ୍କ ରଚିତ ଚାରୋଟି ଯାକ ନାଟକ ଝରା କୁହେଳି, କଳାଜହ୍ନ, ମଳା ଆକାଶ, ସରାଗ ସନ୍ନ୍ୟାସୀ ନିଜ ନିଜର ଗୁଣରେ ବେଶ୍ ମହୀୟାନ୍। ସମୟର ପ୍ରାଣସ୍ପନ୍ଦନକୁ ଚାରୋଟି ଯାକ ନାଟକ ମର୍ମରିତ କରିବାରେ ଉଭୟ ଦିଗରେ ନାଟ୍ୟକାର କିଛି ନା କିଛି ପରୀକ୍ଷା ନିରୀକ୍ଷା ଛିଟ ଛାଡ଼ି ଯାଇଛନ୍ତି। ପ୍ରତ୍ୟେକ ନାଟକର ଅନ୍ତଃସ୍ୱର ତତ୍କାଳୀନ ସାମାଜିକ ପାଣିପାଗ ଉପରେ ଆଧାରିତ।

"ମୋ ପାଇଁ ଦିନ ଆଳସ ରାତିପରି ଏବଂ ରାତି ହୁଏ ଭୟାନକ ଦୁଃସ୍ୱପ୍ନ" - ଏହା ହେଉଛି ମୁଖାପିନ୍ଧା ମଣିଷର ସଂଳାପ। ଥରେ ମୁଖା ଖୋଲିଗଲେ ନିଜକୁ ନିଜେ ମଧ୍ୟ ସେ ଚିହ୍ନିପାରେନି। ଏ ପ୍ରକାର ଉଦ୍‌ଘୋଷଣ କେବଳ କଳାଜହ୍ନ ହିଁ କରିପାରେ। ଅଭିବ୍ୟଞ୍ଜନାବାଦୀ ଶୈଳୀର ଅନୁସରଣ କରିଥିବା ଏହା ଏକ ପ୍ରତୀକାତ୍ମକ ନାଟକ। ଏଥିରେ ନାଟ୍ୟକାର Flash Back ମାଧ୍ୟମରେ ସ୍ୱପ୍ନ ଓ ଅତୀତର ସ୍ମୃତିଚାରଣ କରିଛନ୍ତି। ବ୍ୟାକ୍ ଗ୍ରାଉଣ୍ଡରୁ ରେକଡ଼ର ସାହାଯ୍ୟରେ ଧର୍ମଘଟର ବାତାବରଣକୁ ସୂଚିତ କରୁଛି। ଚକଲଗା ଚୌକି ଏବଂ କଳାଜହ୍ନର ଛବି ମାଧ୍ୟମରେ ନାଟ୍ୟକାର ଆଧୁନିକ ମଣିଷର ଅସହାୟତାକୁ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି।

ନାଟକରେ ନାୟକ ବିକାଶ ଚୌଧୁରୀ ନିଜର କଳା ସାଧନାରେ ବ୍ୟସ୍ତ ରହି ପ୍ରେମିକା ସୁଧା ପ୍ରତି ଅନାଦର ପ୍ରଦର୍ଶନ କରିଛନ୍ତି। ସୁଧା ଚାହେଁ ବିକାଶଙ୍କ ସାନ୍ନିଧ୍ୟ, କିନ୍ତୁ ବିକାଶ ଚାହାଁନ୍ତି ସୁଧା କେବଳ ତାଙ୍କ କଳାର ପୂଜାରିଣୀ ହୋଇରହୁ। ଚିହିଁକି ଉଠିଛି ସୁଧାର ନାରୀତ୍ୱ। ଦୂରେଇ ଯାଇଛି ସୁଧା। ଅରୁଣା ନାମରେ ନିଜର ନୂଆ ପରିଚୟ ସୃଷ୍ଟି କରି ବ୍ୟବସାୟୀ ଆଲୋକ ମହାପାତ୍ରଙ୍କୁ ବିବାହ କରେ। ନାୟିକା ବିହୁନେ ବିକାଶଙ୍କ ଜୀବନ ପାଲଟିଯାଏ ମରୁପ୍ରାନ୍ତର। ବିବ୍ରତ ଅବସ୍ଥାରେ ଘୂରି ବୁଲୁଥିବା ବେଳେ ବିକାଶ ନନ୍ଦନକାନନର ଜଙ୍ଗଲରୁ ଧର୍ଷିତା ରେଖାକୁ ଉଦ୍ଧାର କରିଛି ଓ ପରବର୍ତ୍ତୀ କାଳରେ ତାକୁ ବିବାହ କରିଛି।

ରେଖା ଏବଂ ବିକାଶଙ୍କ ବୈବାହିକ ଜୀବନକୁ ସୁଖମୟ କରିବା ପାଇଁ ରେଖାର ପିତା ଷାଠିଏ ଲକ୍ଷ ଟଙ୍କାର କାରଖାନା ଓ ସବୁ ଧନସମ୍ପଦ ବିକାଶଙ୍କ ନାମରେ ଉଇଲ କରିଦିଅନ୍ତି। ବଦଳିଯାଏ ଅଧ୍ୟାପକ ବିକାଶ ଚୌଧୁରୀଙ୍କ ଜୀବନ। ଅକସ୍ମାତ୍ ଦୁର୍ଘଟଣାର ଶିକାର ହୋଇ ଅଥର୍ବ ପଙ୍ଗୁ ପଲଟି ଯାଆନ୍ତି ରେଖା। ଚକଲଗା ଚୌକିଟି ହୁଏ ତାଙ୍କର ନିତିଦିନର ସାଥୀ। କଳାକାରରୁ ଶିଳ୍ପପତି ପାଲଟିଥିବା ବିକାଶ ଭାଂଗିପଡ଼ନ୍ତି। ନିଜକୁ ଭୁଲିବା ପାଇଁ ମଦର ଆଶ୍ରୟ ନିଅନ୍ତି। ଇନ୍‌କମ୍ ଟ୍ୟାକ୍‌ସ ଦେଇ ନପାରିବାରୁ କାରଖାନା ନିଲାମ ହୁଏ। ଅଯାଚିତ ଭାବେ ଆସିଥିବା ପୂର୍ବତନ ପ୍ରେମିକା ସୁଧାର ସାହାଯ୍ୟକୁ ପ୍ରତ୍ୟାଖ୍ୟାନ କରନ୍ତି ବିକାଶ। ମାତ୍ର ସୁଧାର ଅପୂର୍ଣ୍ଣ ଛବିକୁ ପୂର୍ଣ୍ଣ କରିବାକୁ ଚେଷ୍ଟା କରି ତାକୁ ହୁଇଲ୍ ଚେୟାରରେ ବସାଇ ଦିଅନ୍ତି। ଏହି ପଙ୍ଗୁ ଚିତ୍ରକୁ ଦେଖି ସୁଧା ବିରକ୍ତ ହୋଇ ଛବିର ମୁହଁରେ ଛକି ଟାଣିଦିଏ।

ସମସ୍ତଙ୍କ ଅଜାଣତରେ ପ୍ରତିଯୋଗିତାକୁ ଏଇ କଳଂକିତ ଛବିଟିକୁ ରେଖା ପଠାଇ ଦିଅନ୍ତି ଓ ଛବିଟିର ଟାଇଟଲ ରଖନ୍ତି କଳାଜହ୍ନ। ଛବିଟି ପୁରସ୍କୃତ ହୋଇ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରେ। କାରଖାନାକୁ ବଞ୍ଚାଇବାକୁ ଯାଇ ରେଖା ନିଜର ସୁନା ଅଳଂକାର ବିକିବାକୁ କିମ୍ବା ସୁଧାର ସାହାଯ୍ୟ ନେବାପାଇଁ ବିକାଶକୁ ଅନୁରୋଧ କରିଛି। ହେଲେ ବିକାଶ ପ୍ରତ୍ୟାଖ୍ୟାନ କରିଛି। ଦୁଃଖରେ ରେଖାଙ୍କ ମୃତ୍ୟୁ ଘଟିଛି। ସୁଧା କାରଖାନାକୁ ନିଲାମ ଧରିଥିଲେ ମଧ୍ୟ ବିକାଶ ସବୁଦିନ ପାଇଁ ଘର ଛାଡ଼ି ଚାଲିଯାଇଛି ଲକ୍ଷ୍ୟହୀନ ପଥରେ। ନାଟକରେ ବିକାଶ, ସୁଧା କିମ୍ବା ରେଖା କେହି ଶାନ୍ତି ପାଇପାରି ନାହାନ୍ତି। ଆଧୁନିକ ମଣିଷର ଅସହାୟତାକୁ ନାଟ୍ୟକାର ଚମତ୍କାର ଢଙ୍ଗରେ ଉପସ୍ଥାପନ କରିଛନ୍ତି।

'ନିମ୍ବ ଗଛରେ ମଳୟ ଲାଗିଲେ ଚନ୍ଦନ ହୁଏ, ଗୋପା। ସମ୍ବାଳୁଆ ହୁଏ ପ୍ରଜାପତି। ମହାସ୍ରୋତର ପବିତ୍ରତାରେ ଯାହାର ବିଶ୍ୱାସ ଗୋଳିଆ ପାଣିକି ସେ ଡରେ କାହିଁକି ? - ଏହା ଥିଲା ମଲାଆକାଶର କାବ୍ୟିକ ସଂଳାପ। ୧୯୭୬ ମସିହାରେ ଜୟପୁରଠାରେ ପ୍ରଥମେ ଏଇ ନାଟକଟି ମଞ୍ଚସ୍ଥ ହୋଇଥିଲା। ଅଙ୍କଦୃଶ୍ୟବିହୀନ ଏ ନାଟକ ତତ୍କାଳୀନ ଆବହାଓ୍ୱାରେ ଗଢ଼ି ଉଠିଥିଲା। ପୁରୁଣା ମୂଲ୍ୟବୋଧ, ଅତୀତର ଶଗଡ଼ଗୁଳାକୁ ଭାଂଗି ନୂଆ କିଛି କରିବାର ସ୍ୱପ୍ନ ନେଇ ଆଗେଇଛନ୍ତି ନାଟ୍ୟକାର। ତେଣୁ ସେଇଭଳି ଏକ ବିଷୟବସ୍ତୁ ଚୟନ କରିଛନ୍ତି ସେ।

ପୁରୁଷ ପୁରୁଷ ଧରି ନାରୀଧର୍ଷଣ, ଲୁଣ୍ଠନ, ହତ୍ୟା ଆଦି ଚଳାଇ ଆସିଥିବା ରାୟବଂଶର ଆଭିଜାତ୍ୟକୁ ଭାଂଗି ପୁଣିଥରେ ନୂଆକରି ଘର ଗଢ଼ିବାକୁ ଆଗେଇଛନ୍ତି କାଶୀ ବିଦ୍ୟାପୀଠର ଦର୍ଶନଛାତ୍ର ପ୍ରକାଶକ ଅମର ରାୟ। ନିଜ ବାପାଙ୍କ ପାପକୁ ସହି ନପାରି ସେ ତାଙ୍କୁ ଜେଲ୍ ପଠାଇ ମାତୃରୋଷର ଶିକାର ହୋଇଛନ୍ତି। ତଥାପି ସେ ନିର୍ବିକାର। ଘରର ଚାକରାଣୀର ଝିଅ ଗୋପାକୁ ସେ ଭଲ ପାଇ ବିବାହ କରିବାକୁ ଜିଦ୍‌ଧରି ବସିଛନ୍ତି। ଏଥିରେ ତାଂକ ବଂଶର ଦାୟାଦମାନଙ୍କର ଅନୁମତି ନାହିଁ। ତଥାପି ସେ ଚାହାଁନ୍ତି ଗୋଟିଏ ଦିନରେ ଦୁଇଟା ବଡ଼କାମ କରିବାକୁ ଅର୍ଥାତ୍ ପୁରୁଣା କୋଠା ଭଂଗା ହେବ ଏବଂ ସାଥେ ସାଥେ ତାଙ୍କ ବିବାହର ଶୁଭଶଂଖ ବାଜିବ।

ପୁରୁଣା ଘରେ ଡିନାମାଇଟ୍ ଲଗାଯାଇଛି। ବିବାହ ମଧ୍ୟ ରେଡ଼ି। ଏହି କାମର ପ୍ରତିରୋଧ କରିଛନ୍ତି ଭଉଣୀ, ଭିଣୋଇ, ଦାଦା, ଏପରିକି ବିବାହ କରିବାକୁ ଯାଉଥିବା ଗୋପା। ସେହିଦିନ ମଧ୍ୟ ଅମରଙ୍କ ପିତା ଜେଲ୍‌ରୁ ମୁକୁଳିଛନ୍ତି। ତଥାପି ନିଜ ପୁଅକୁ ଆଶୀର୍ବାଦ ଦେଇଛନ୍ତି ପିତା ଅଜୟ ରାୟ। ମାତ୍ର ଗୋପାକୁ ଆଶୀର୍ବାଦ କରିପାରି ନାହାନ୍ତି ଅଜୟ। ଗୋପା ଚିତ୍କାର କରି ଅମରଙ୍କୁ କହିଛି - 'ମୁଁ ଚାହେଁ ଏ ଘରଟା ରହୁ, ଏ ଘରର ଧ୍ୱଂସ ନୁହେଁ। ମୋର ପରକାଳଟା ବି ନଷ୍ଟ କରିବାକୁ ମୁଁ ଚାହେଁନା।' ହେଲେ ଅଜୟଙ୍କ ରୋକ୍‌ଠୋକ୍ ଜବାବ୍ - 'ଏ ଘର ଭାଙ୍ଗିଗଲେ ମୋର ଦୁଃଖ ନାହିଁ, ପୁରୁଣା ଘରଟା - ପଡ଼ିଯାଇଥାନ୍ତା ଆଉ କେତେବର୍ଷ ପରେ - କିନ୍ତୁ ଏ ବାହାଘର ହୋଇପାରିବ ନାହିଁ।' ମାତ୍ର ଅମର ତାଙ୍କ ନିଷ୍ପତ୍ତିରେ ଦୃଢ଼। ଏକା ସାଙ୍ଗରେ ଘର ଭଙ୍ଗାଯିବ ଆଉ ବିବାହ ମଧ୍ୟ ହେବ।

ଗୋପା ନିଜ ମା'ଦ୍ୱାରା ପୂଜିତ ଶିବଲିଙ୍ଗକୁ ରକ୍ଷା କରିବା ପାଇଁ ସେଇ ପୁରୁଣା କୋଠା ଭିତରକୁ ଦଉଡ଼ି ଯାଇଛି। ଡିନାମାଇଟ୍‌ର ସମୟ ହୋଇଯାଇଛି। ଅମରର

କୌଣସି ବାଧା ଗୋପାଙ୍କୁ ଅଟକାଇ ପାରିନି। ଭୀଷଣ ରଡ଼ିଦେଇ ପୁରୁଣା କୋଠାଟି ଭାଙ୍ଗିପଡ଼ିଛି। 'ଗୋପା, ଗୋପା' ଚିତ୍କାର କରି ଅମର ମଧ ଦଉଡ଼ି ଯାଇଛନ୍ତି ସେହି ଧ୍ୱଂସସ୍ତୂପ ଭିତରକୁ। ସବୁକିଛି ନିରବ ହୋଇଗଲା ପରେ ମଞ୍ଚରେ କେବଳ ଦୋଳିଟି ଦୋହଲୁଥିବା ଦେଖିବାକୁ ମିଳିଛି। 'ଦୋଳି' ଏଠାରେ ଏକ ପ୍ରତୀକ। ନାଟକର ଆରମ୍ଭରେ ମଧ ଏଇ ଦୋଳିଟି ଥିଲା।

'କଳାଜହ୍ନ' ଭଳି 'ମଳାଆକାଶ' ମଧ ସମୟର କଥା କହିବାକୁ ପଶ୍ଚାତ୍‌ପଦ ହୋଇନାହିଁ। ଉଭୟ ନାଟକରେ ଜଣେ ଆଧୁନିକ ପ୍ରୟୋଗବାଦୀ ନାଟ୍ୟକାରଙ୍କୁ ପରଖି ହୁଏ। କେବଳ କଥାବସ୍ତୁରେ ନୁହେଁ, ମଞ୍ଚାୟନରେ ମଧ ନୂତନ ଦୃଷ୍ଟିଭଙ୍ଗୀ ତାଙ୍କ ନାଟକକୁ ଏକ ବୌଦ୍ଧିକ ଆସ୍ତରଣ ଭିତରକୁ ନେଇଯାଏ। ନାଟ୍ୟକାର ମହାନ୍ତିଙ୍କର କାବ୍ୟିକ ସଂଳାପ ଦର୍ଶକଙ୍କୁ ମୁଗ୍ଧ ଏବଂ ଚକିତ କରିଥାଏ। ତାଙ୍କ ନାଟକରେ ଚରିତ୍ରର ଘନଘଟା ନାହିଁ, ମଞ୍ଚସଜ୍ଜାର ଆଟୋପ ନାହିଁ, କିନ୍ତୁ ରହିଛି ସମାଜ ଆଉ ମଣିଷ ପ୍ରତି ଏକ ଗଭୀର ସଂବେଦନା।

ଅଭିନେତା, ନିର୍ଦ୍ଦେଶକ ଆଉ ନାଟ୍ୟକାର ପ୍ରଫୁଲ୍ଲ ମହାନ୍ତିଙ୍କୁ ତଉଲିବା ବଡ଼ କଠିନ। ପରଂପରା ସହ ଆଧୁନିକତାର ସାଲିସ୍ ତାଙ୍କ ସୃଷ୍ଟିର ସ୍ୱର। ସେ କବି। ପ୍ରତିଟି ସଂଳାପରେ ରହିଛି ଏକ ସ୍ୱତନ୍ତ୍ର କାବ୍ୟିକତାର ସ୍ଫୁରଣ, ଯାହା ଦର୍ଶକ ଓ ପାଠକଙ୍କୁ ବିମୋହିତ କରେ। ଅଧିକ ସଂଖ୍ୟାରେ ନାଟକ ସେ ଲେଖିନାହାନ୍ତି। ତେବେ ତାଙ୍କ ସୃଷ୍ଟିକୁ ମାପିବାକୁ ହେଲେ କେବଳ 'କଳାଜହ୍ନ' ହିଁ ଯଥେଷ୍ଟ।

୫୮, ମୈତ୍ରୀଜନପଦ,
ରୁଦ୍ରପୁର, ନହରକଣ୍ଟା,
ଭୁବନେଶ୍ୱର

# ବହୁମୁଖୀ ପ୍ରତିଭାର ଅନନ୍ୟ ବ୍ୟକ୍ତିତ୍ୱ

ଡ. ହରିଶ୍ଚନ୍ଦ୍ର ବେହେରା

ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି ଏକାଧାରରେ ଜଣେ ସଫଳ ପ୍ରଶାସକ, ଅଧ୍ୟାପକ, ସମାଲୋଚକ, ନାଟ୍ୟକାର, ନାଟ୍ୟ ନିର୍ଦ୍ଦେଶକ, ଅଭିନେତା, ଅନୁବାଦକ, କବି, ଗାଳ୍ପିକ, ସମ୍ପାଦକ ତଥା ଅସାଧାରଣ ବାଗ୍ମୀ । ଇଂରାଜୀ ଭାଷା ସାହିତ୍ୟର ଜଣେ କୃତି ଛାତ୍ର ଓ ଯଶସ୍ୱୀ ଅଧ୍ୟାପକ ଭାବରେ ତାଙ୍କର ସୁନାମ ସୁଦୂରପ୍ରସାରୀ ।

ପ୍ରଫେସର ମହାନ୍ତି ଗଂଜାମ ଜିଲ୍ଲା ବ୍ରହ୍ମପୁରରେ ଜନ୍ମଲାଭ କରିଥିଲେ । ଅବଶ୍ୟ ତାଙ୍କର ପୈତୃକ ଗ୍ରାମ ଥିଲା ପୁରୀ ଜିଲ୍ଲାର ଦାଣ୍ଡମୁକୁନ୍ଦପୁର । ପ୍ରଫେସର ମହାନ୍ତି ଏହ୍ଲାବାଦରୁ ଇଂରାଜୀ ଭାଷା ସାହିତ୍ୟରେ ସ୍ନାତକୋତ୍ତର ଉପାଧି ଲାଭ କରିବା ପରେ ୧୯୬୨ ମସିହାରେ ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟାପକ ଭାବରେ ଯୋଗଦାନ କରିଥିଲେ । ପରେ ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା, ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦର ସଚିବ, ଉପସଭାପତି, ଉଚ୍ଚଶିକ୍ଷା ବିଭାଗର ଉପନିର୍ଦ୍ଦେଶକ, ଖଲ୍ଲିକୋଟ କଲେଜରେ ପ୍ରଫେସର । ଖଲ୍ଲିକୋଟ କଲେଜର ପ୍ରଫେସର ଏବଂ ଶେଷରେ ରେଭେନ୍ସା କଲେଜରେ ପ୍ରଫେସର ଏବଂ ଅଧ୍ୟକ୍ଷ ଭାବରେ କାର୍ଯ୍ୟନିର୍ବାହ କରି ଏଠାରୁ ୧୯୯୭ରେ ସ୍ୱେଚ୍ଛାକୃତ ଅବସର ନେଇଥିଲେ ।

ବ୍ରହ୍ମପୁରରେ ଅଧ୍ୟାପକ ଭାବେ ଯୋଗଦାନ କରିବା ପରେ ପ୍ରଫେସର ବ୍ୟୋମକେଶ ତ୍ରିପାଠୀଙ୍କ ଅଧୀନରେ ନାଟ୍ୟକାର ଆର୍ଥର ମିଲରଙ୍କ ଉପରେ ଗବେଷଣା କରି ପିଏଚ୍.ଡି. ଉପାଧି ପ୍ରାପ୍ତ କରିଥିଲେ । ଜଣେ ଦକ୍ଷ ଅଧ୍ୟାପକ ବା ପ୍ରଶାସକ ଭାବରେ ଓ ସାରସ୍ୱତ ସାଧକ ଭାବରେ ତାଙ୍କର ଓଡ଼ିଶା ଓ ଓଡ଼ିଶା ବାହାରେ ମଧ୍ୟ ସୁନାମ ଅଛି । ଇଂରାଜୀ ଭାଷାରେ ତାଙ୍କର ଏଯାବତ୍ ପ୍ରାୟ ୧୨ ଖଣ୍ଡି ପୁସ୍ତକ ପ୍ରକାଶ ପାଇଛି । Reality

revisted, Reflections, Realism, Democracy and other Essays, Luminous illusion (Poetry) ପ୍ରଭୃତି ପୁସ୍ତକ ଇଂରାଜୀ ସାହିତ୍ୟରେ ସ୍ୱତନ୍ତ୍ର ପରିଚୟ ଆଣିଦେଇଛି ।

ଓଡ଼ିଆ ବାଣୀଭଣ୍ଡାରକୁ ତାଙ୍କର ଅବଦାନ ମଧ୍ୟ କମ୍ ନୁହେଁ । 'ଭାରତୀୟ ସଂସ୍କୃତି ଓ ଭଗବତ୍ ଗୀତା' ପୁସ୍ତକ ଲାଗି ପ୍ରଫେସର ମହାନ୍ତି କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରନ୍ତି ୨୦୦୪ ମସିହାରେ । ପ୍ରକୃତରେ ଏ ପୁସ୍ତକଟି ଭାରତୀୟ ଆଧ୍ୟାତ୍ମିକ ସଂସ୍କୃତି ଉପରେ ଏକ ଉପାଦେୟ ମୂଲ୍ୟବାନ ପୁସ୍ତକ । ତାଙ୍କର ଅନ୍ୟ ଏକ ମୌଳିକ ପ୍ରବନ୍ଧ ପୁସ୍ତକ 'କିଛି ଆକାଶ, କିଛି ମାଟି' ଅସଂଖ୍ୟ ପାଠକୀୟତା ଲାଭ କରିଛି । 'ସାହିତ୍ୟରେ ଜୀବନରାଗ', 'ବିରହ ଓ ଅନ୍ୟାନ୍ୟ ବିଭବମାନେ', 'ନିଦାଘରେ କବି', 'ଇଚ୍ଛାର ପୃଥିବୀ' ପ୍ରଭୃତି ସମାଲୋଚନା ପୁସ୍ତକ ତାଙ୍କର ମନନଶୀଳ ପ୍ରଜ୍ଞା ଓ ଗଭୀର ଅଭିନିବେଶର ଗୋଟିଏ ଗୋଟିଏ ସମର୍ଥ ପ୍ରତିଶ୍ରୁତି । ସବନମ୍ ପ୍ରକାଶନୀ ପ୍ରକାଶିତ 'ଇଚ୍ଛାର ପୃଥିବୀ' ଏକ ଉଚ୍ଚକୋଟିର ପ୍ରବନ୍ଧ ପୁସ୍ତକ । ତାଙ୍କର ପ୍ରବନ୍ଧ ଗୁଡ଼ିକର ପ୍ରଜ୍ଞାଶୀଳ ଅଭିନିବେଶ ପାଠକଙ୍କୁ ଉତ୍ତରିତ ଚେତନା ସ୍ତରକୁ ଉତ୍ତୀର୍ଣ୍ଣ କରାଏ । ପ୍ରବନ୍ଧ ଗୁଡ଼ିକର ଆତ୍ମିକ ଅନୁଶୀଳନ ଓ ମୌଳିକ ବିନ୍ୟାସ କେତେ ସମୃଦ୍ଧ ଓ ପରିପକ୍ୱ ତା'ର ଏକ ଦୃଷ୍ଟାନ୍ତ ଏଠାରେ ପ୍ରଦାନ କରାଯାଇପାରେ - "ସ୍ୱାଧୀନୋତ୍ତର ଓଡ଼ିଆ କବିତାର ପ୍ରଥମ ପର୍ଯ୍ୟାୟରେ ଅମାନବିକତା ଓ ଅପାରଗତାରୁ ମୁକୁଳିବାର ସାହସ ଓ ପ୍ରତିରୋଧ, ନୈରାଶ୍ୟକୁ ସ୍ୱାଭିମାନ ଭାବେ ଗ୍ରହଣ କରି କିମ୍ବା ଆତ୍ମ ପ୍ରତ୍ୟୟର ନୂତନ ଗାମ୍ଭୀର୍ଯ୍ୟ ସୃଷ୍ଟି କରି ଏକ ଭିନ୍ନ ସ୍ଥିତିବାଦୀ ନୈତିକତା ସୃଷ୍ଟି କରିବାରେ ନିହିତ ନୁହେଁ । ଦୋଷୀଭାବ ଓ ନିରାକରଣର ସାହସ ଅପେକ୍ଷା ଅପାରଗତାର ସ୍ୱୀକାରୋକ୍ତି ଏହି କବିତାରେ ବେଶୀ ଦେଖାଯାଏ । ଅସହାୟତା, ଭୟ, ପାପବୋଧ ଯେହେତୁ ପାଶ୍ଚାତ୍ୟ ସଭ୍ୟତାର ବସ୍ତୁବାଦୀ ଉଚ୍ଚାରଣ, ପୁଂଜିବାଦୀ ଆଭିମୁଖ୍ୟ ଏବଂ ବହୁତ ଉତ୍ପାଦନର ପ୍ରତିକ୍ରିୟା ଭାବେ ଏହି କବିତାରେ ପ୍ରବେଶ କରିନଥିଲେ, ତଥାପି ଏଥିରେ ଏକ ଅତିଶୟୋକ୍ତି ଦେଖାଯାଏ । କାରଣ ଏହି ଅନାସ୍ଥା ଭାବ, ଭୟ, ପାପ, ଶୂନ୍ୟତାବୋଧ ଏବଂ ପ୍ରତ୍ୟୟହୀନତା ଅବଚେତନରେ ଭାରତର ବୁଦ୍ଧୋତ୍ତର ଅତୀତ ସହିତ ଯୋଡ଼ି ହୋଇଯାଏ । ଅର୍ଥାତ୍ ଓଡ଼ିଆଙ୍କ ପାଇଁ ଭାଗବତୀୟ ଶୂନ୍ୟଚେତନା ବାସ୍ତବରେ ପୁଣି ଥରେ ଆତ୍ମିକ ଅନୁଭୂତି ହୋଇଯାଏ । ସ୍ୱାଧୀନୋତ୍ତର ସମୟରେ ଟି.ଏସ୍. ଇଲିୟଟ୍ ସବୁ ଇଂରେଜୀ ପଢୁଆ ସାହିତ୍ୟିକଙ୍କୁ ପ୍ରଭାବିତ କରିଥିଲେ ଏବଂ ସ୍ୱାଧୀନତାର ପ୍ରଥମ ଦଶ ପନ୍ଦର ବର୍ଷ ମଧ୍ୟରେ ଯେଉଁମାନେ କବିତା ଲେଖୁଥିଲେ, ସେମାନେ ଇଂରାଜୀରେ ସ୍ନାତକୋତ୍ତର ଉପାଧି ପାଇଥିଲେ କିମ୍ବା ଅନ୍ୟ ବିଷୟ ପଢ଼ିଥିଲେ ମଧ୍ୟ ଇଂରାଜୀ କବିତା ଓ ଟି.ଏସ୍. ଇଲିୟଟ୍‌ଙ୍କ ବିଶ୍ୱପ୍ରତିଷ୍ଠା ଦ୍ୱାରା ପ୍ରଭାବିତ ହୋଇଥିଲେ । କିନ୍ତୁ ଏଲିୟଟ୍ ଯେଉଁ ବିଶ୍ୱାନୁଭୂତିରେ ମଣିଷକୁ

'ଅପରାହ୍ନ', 'ପାଳଭୂତ' ଏବଂ 'ଅମୋକ୍ଷ' କହିଥିଲେ । ସେଇ ଅନୁଭୂତି ଓଡ଼ିଆ କବିର ନଥିଲା । ଅବଚେତନର ଐତିହାସିକ ଶୂନ୍ୟତାବୋଧ ସହିତ ସଂଯୋଗ ଓଡ଼ିଆ କବି ପାଇଁ ଏକ ଅନୁପ୍ରେରିତ ଅନୁଭୂତି ଥିଲା । ନୂଆ ସ୍ୱାଧୀନତା ପାଇଁ ସମାଜ ଗଠନ, ପ୍ରଶାସନିକ ବ୍ୟବସ୍ଥା ଦୃଢ଼ୀକରଣ ଏବଂ ନିର୍ମାଣ ଉପାଦାନର ରାଜନୀତିକ ପ୍ରଚେଷ୍ଟାରେ ବୁଦ୍ଧିଜୀବୀ ଗୋଷ୍ଠୀ ଭାଗ ନନେଇ ବୌଦ୍ଧିକ ଉନ୍ମାଦନା ପାଇଁ ପାଶ୍ଚାତ୍ୟ ସଭ୍ୟତା ଓ ସାହିତ୍ୟର ଅଧ୍ୟୟନ – ଅଧ୍ୟାପନା କଲେ ଏବଂ କବିମାନେ ଏଲିୟଟ୍‌ଙ୍କ ପରି ଲେଖିବା ଉଦ୍ଦେଶ୍ୟରେ ଐତିହାସିକ ଅବଚେତନର ମୂଲ୍ୟବୋଧକୁ ନୂଆ ପରିସ୍ଥିତିରେ ପ୍ରତିଫଳିତ କରି ଓଡ଼ିଆ କବିତାର ଭାଷା, ଛନ୍ଦ, ଚିତ୍ରକଳ୍ପ ଓ ଉପମା ପ୍ରଭୃତିକୁ ଏକ ନୂଆ ସଂବେଦନା, ସଂଭାବନା ଓ ଗତିଶୀଳତା ଦେଲେ ।" (ସ୍ୱାଧୀନୋତ୍ତର ଓଡ଼ିଆ କବିତାର ଭାଷା)

ତାଙ୍କର ପ୍ରବନ୍ଧ ଗୁଡ଼ିକର ଭାଷା, ଦାର୍ଶନିକତା, ବୌଦ୍ଧିକତା ତଥା ମୌଳିକ ଦୃଷ୍ଟିଭଂଗୀ ପାଠକଙ୍କୁ ନୂଆ କିଛି ଚିନ୍ତା କରିବାର ଖୋରାକ୍ ଯୋଗାଏ । ଜଣେ ମୌଳିକ ନାଟ୍ୟକାର, ନାଟ୍ୟ ନିର୍ଦ୍ଦେଶକ ଓ ମଂଚ ଅଭିନେତା ଭାବରେ ତାଙ୍କର ସୁନାମ ଅଛି । ଜଣେ ପ୍ରୟୋଗବାଦୀ ନାଟ୍ୟକାର ଭାବରେ ତାଙ୍କର 'ମଲାଆକାଶ', 'କଳାଜହ୍ନ', 'ସରଗ ସନ୍ନ୍ୟାସୀ', 'ଝରା କୁହେଳି' ପ୍ରଭୃତି ନାଟକ ବିଭିନ୍ନ ସ୍ଥାନରେ ମଂଚସ୍ଥ ହୋଇ ବେଶ୍ ପ୍ରଶଂସିତ । ପ୍ରୟୋଗବାଦୀ ପରୀକ୍ଷାଧର୍ମୀ ନାଟକ ଭାବରେ ଏସବୁ ନାଟକର ସ୍ୱତନ୍ତ୍ର ମୂଲ୍ୟ ଅଛି । ବିଜୟ ମିଶ୍ରଙ୍କ 'ଶବ ବାହକମାନେ' ଏବଂ ରମେଶ ପାଣିଗ୍ରାହୀଙ୍କ କେତୋଟି ନାଟକରେ ନିର୍ଦ୍ଦେଶନା ଦେଇ ମଂଚସ୍ଥ କରେଇବାରେ ସଫଳତା ଅର୍ଜନ କରିଛନ୍ତି । ବେକେଟଙ୍କ କେତୋଟି ନାଟକକୁ ନିର୍ଦ୍ଦେଶନା ଦେଇ ମଧ୍ୟ ସଫଳତା ଲାଭ କରିଛନ୍ତି । ସେକ୍‌ସପିୟରଙ୍କ 'ଅଥେଲୋ' ନାଟକରେ ନିର୍ଦ୍ଦେଶନା ଦେବା ତଥା ନିଜେ ଅଥେଲୋ ଭୂମିକାରେ ଅଭିନୟ କରି ଦର୍ଶକଙ୍କୁ ମନୋମୁଗ୍ଧ କରିପାରିଛନ୍ତି । ଅନ୍ୟାନ୍ୟ କେତେକ ନାଟକରେ ମଧ୍ୟ ସେ ଅଭିନୟ କରିଛନ୍ତି । ମୌଳିକ ନାଟକ ସାଙ୍ଗକୁ ସେ ମଧ୍ୟ ପ୍ରାୟ ତେର ଗୋଟି ଏକାଙ୍କିକା ରଚନା କରିଛନ୍ତି ।

ଜଣେ ଅନୁବାଦକ ଭାବେ ତାଙ୍କର ମଧ୍ୟ ସୁନାମ ଅଛି । ଗଙ୍ଗାଧର ମେହେରଙ୍କ 'କୀଚକବଧ' କାବ୍ୟ, ମନୋରଂଜନ ଦାସଙ୍କ 'କାଠଘୋଡ଼ା' ନାଟକ, ପ୍ରତିଭା ରାୟଙ୍କ 'ମଗ୍ନମାଟି' ଉପନ୍ୟାସ, ଦୀନନାଥ ପାଠୀଙ୍କ 'ପୁନର୍ନବା' ଉପନ୍ୟାସ, ମାଟିର ମହାକବି ସାରଳା ଦାସଙ୍କ କାହାଣୀକୁ ନେଇ 'Stories from Sarala Mahabharat' ନାମରେ ଅନୁବାଦ କରିଛନ୍ତି । ସାରଳାଙ୍କ ମହାଭାରତର ମୌଳିକତାକୁ ନେଇ ପ୍ରଫେସର ମହାନ୍ତି ଚମତ୍କାର ପୁସ୍ତବନ୍ଧଟିଏ ଏଥିରେ ଦେଇଛନ୍ତି ।

ମନୋଜ ଦାସଙ୍କ ଜୀବନୀ ଓ ସାହିତ୍ୟକୁ ଆଧାର କରି ସେ ଏକ ଚମତ୍କାର ବାଇଓପିକ୍ ରଚନା କରିଛନ୍ତି । ତାଙ୍କର ବାଗ୍ମୀତା ସଂପର୍କରେ ଯେଉଁମାନେ ତାଙ୍କୁ ଶୁଣିଛନ୍ତି, ସେମାନେ ନିଶ୍ଚୟ ସ୍ୱୀକାର କରିବେ । ଡ. ଫନୀ ମହାନ୍ତିଙ୍କ ତତ୍ତ୍ୱାବଧାନ ତଥା ଅନୁପ୍ରେରଣାରେ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଆୟୋଜିତ 'କବିତାୟନ' କାର୍ଯ୍ୟକ୍ରମରେ ପ୍ରଫେସର ମହାନ୍ତିଙ୍କ ଭାଷଣ ଶୁଣିବାର ସୌଭାଗ୍ୟ ଲାଭ କରିଛି । ସୁଦୂର ଦାରିଙ୍ଗିବାଡ଼ି, ଭଂଜନଗର, ଫୁଲବାଣୀ, ରାଉରକେଲା, ଅନୁଗୋଳ, ମୟୂରଭଂଜ, ବାଲେଶ୍ୱରରେ ଆୟୋଜିତ 'କବିତାୟନ' କାର୍ଯ୍ୟକ୍ରମରେ କେତେବେଳେ ଉଦ୍‌ଘାଟକ ତ କେତେବେଳେ ମୁଖ୍ୟବକ୍ତା ଭାବରେ ଉଚ୍ଚକୋଟୀର ଭାଷଣ ପ୍ରଦାନ କରିଛନ୍ତି ଭିନ୍ନ ଦୃଷ୍ଟିଭଂଗୀ ନେଇ । ବାଲେଶ୍ୱରରେ ଆୟୋଜିତ କେତୋଟି ସାହିତ୍ୟ କାର୍ଯ୍ୟକ୍ରମକୁ ମଧ୍ୟ ସେ ଆସିଛନ୍ତି । ୨୦୧୩ ଜାନୁୟାରୀ ୧୪ ତାରିଖ ମକର ସଂକ୍ରାନ୍ତିରେ ଫକୀରମୋହନଙ୍କ ଜୟନ୍ତୀ ପାଳନ ଅବକାଶରେ ଶାନ୍ତିକାନନକୁ ଆସିଛନ୍ତି । ତାଙ୍କ ସହ ଆସିଥିଲେ ଜ୍ଞାନପୀଠ ପୁରସ୍କାର ବିଜୟିନୀ ପ୍ରତିଭାରାୟ ଓ ଲେଖିକା ନିବେଦିତା ମହାନ୍ତି । ପ୍ରଫୁଲ୍ଲ ବାବୁ ଓଡ଼ିଆ ଉପନ୍ୟାସରେ ମାଟି ସଂପ୍ରୀତି ପରିପ୍ରେକ୍ଷୀରେ ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ ଏଇ ମାଟି ପାଇଁ ଯାହା ସବୁ ଘଟିଗଲା, ସେ ସଂପର୍କରେ ଚମତ୍କାର ବକ୍ତବ୍ୟ ରଖିଥିଲେ ।

୨୦୧୬ ମସିହା ଡିସେମ୍ବର ୨୮ ତାରିଖରେ କବି ଶ୍ରୀଦେବଙ୍କ ଆୟୋଜିତ ଚନ୍ଦ୍ରଭାଗାର ବାର୍ଷିକ ଉତ୍ସବକୁ ପ୍ରଫେସର ମହାନ୍ତି ଆମନ୍ତ୍ରିତ ହୋଇ ଆସିଥିଲେ । ଗାନ୍ଧିସ୍ମୃତି ଭବନରେ ଆୟୋଜିତ ଏହି ସମାରୋହରେ ପ୍ରଫେସର ମହାନ୍ତି 'ସମାକାଳୀନ ଓଡ଼ିଆ କବିତା' ଶୀର୍ଷକ ସାରଗର୍ଭକ ବକ୍ତୃତା ପ୍ରଦାନ କରିଥିଲେ ।

୨୦୧୪ ମସିହା ଫେବୃୟାରୀ ମାସରେ 'ଇଂରାଜୀ ଗବେଷଣା ପରିଷଦ' ଆନୁକୂଲ୍ୟରେ ଆୟୋଜିତ ଆଲୋଚନାଚକ୍ରକୁ ମୁଖ୍ୟ ଆଲୋଚକ ଭାବେ ଆମନ୍ତ୍ରିତ ହୋଇ ବାଲେଶ୍ୱର ଆସିଥିଲେ । ତାଙ୍କ ଆଲୋଚନାର ଶୀର୍ଷକ ଥିଲା - 'Shakespeare and his vision' । ଏଥିରେ ସେ ସେକ୍ସପିୟରଙ୍କ କମେଡ଼ିରେ ପୁରୁଷ ଓ ନାରୀ ଚରିତ୍ର ପରସ୍ପର ପରିପୂରକ ବୋଲି କହିବା ବେଳେ ତାଙ୍କର ଟ୍ରାଜେଡ଼ିରେ ଏ ଦୁଇ ଚରିତ୍ରର ବିରୋଧାଭାସକୁ ଦେଖେଇଥିଲେ । ଟ୍ରାଜେଡ଼ିରେ ନାୟକ ଓ ନାୟିକାର ବିଭିନ୍ନ ପ୍ରକାର ଟ୍ରାଜିକ୍‌ଫଲ୍, ଅସହାୟତା, ନିଃସଙ୍ଗତାକୁ ଖୁବ୍ ଚମତ୍କାର ଭାବେ ବର୍ଣ୍ଣନା କରିଥିଲେ ।

ଅନୁରୂପ ୨୦୧୬ ମସିହା ନଭେମ୍ବର ମାସରେ ସେଇ ଇଂରାଜୀ ଗବେଷଣା ପରିଷଦ ଆନୁକୂଲ୍ୟରେ ଆୟୋଜିତ ଆଲୋଚନାଚକ୍ରକୁ ଆମନ୍ତ୍ରିତ ହୋଇ ବାଲେଶ୍ୱର ଆସିଥିଲେ ।

'ବିନିର୍ମାଣବାଦୀ ଚିନ୍ତନରେ ମହାଭାରତ' (Deconstructing the Mohabharat)କୁ ନୂଆ ଦୃଷ୍ଟିକୋଣରୁ ଆଲୋଚନା କରିଥିଲେ । ସେ ଶ୍ରୀକୃଷ୍ଣଙ୍କୁ ସଂଘୀୟ ରାଷ୍ଟ୍ରଶାସକ (Federalism)ର ପ୍ରତିନିଧି ଏବଂ ଦୁର୍ଯ୍ୟୋଧନକୁ ରାଜତନ୍ତ୍ର (Monarchy)ର ପ୍ରତିନିଧି ଭାବରେ ତର୍କଣା କରି ବକ୍ତବ୍ୟ ରଖିଥିଲେ । ଏଇ ଦୁଇ ବ୍ୟବସ୍ଥାର ଦ୍ୱନ୍ଦ୍ୱ ଏବଂ ସଂଘାତକୁ ସେ ଚମତ୍କାର ଭାବେ ଦର୍ଶାଇଥିଲେ । ଉଭୟ ଇଂରାଜୀ ତଥା ଓଡ଼ିଆ ଭାଷାରେ ଗଭୀର ଅଭିନିବେଶ ଥିବାରୁ ତାଙ୍କ ଆଲୋଚନା ଗୁଡ଼ିକ ନୂତନ ଦିଗ୍‌ଦର୍ଶନ ଦେଇଥାଏ ।

ପ୍ରଫେସର ମହାନ୍ତି ଉଭୟ କବିତା ଓ ଗଳ୍ପ ରଚନାରେ ହାତ ଦେଇ ସଫଳତା ଅର୍ଜନ କରିଛନ୍ତି । ଗଳ୍ପ ସଂକଳନ 'ଶେଷ ଅପେକ୍ଷା' ଓ କବିତା ପୁସ୍ତକ 'ଶୂନ୍ୟର ବାସ' ବେଶ୍ ପାଠକ ପ୍ରିୟତା ଲାଭ କରିଛି । ଜଣେ ସଂପାଦକ ଭାବେ ସାହିତ୍ୟ ପତ୍ରିକା 'ଏକବିଂଶ ଶତାବ୍ଦୀ' ଓ ଇଂରାଜୀ ପତ୍ରିକା 'ରେଭେନ୍‌ସା ଜର୍ଣ୍ଣାଲ୍ ଅଫ୍ ଇଂଲିଶ ଷ୍ଟଡ଼ିଜ୍'ର ସଂପାଦନା କରିଥିଲେ । 'Hundred years of Odia Poetry' ତାଙ୍କ ସଂପାଦନାରେ ଅନ୍ୟ ଏକ ସଫଳ କୃତିତ୍ୱ । ଶହେ ବର୍ଷର ଓଡ଼ିଆ କବିତାକୁ କବି ପ୍ରଫେସର ମହାନ୍ତି, ଚିତ୍ତରଂଜନ ଭୋଇ ତଥା କବି ଫନୀ ମହାନ୍ତି ଇଂରାଜୀରେ ଅନୁବାଦ କରି ନିକଟରେ ପ୍ରକାଶ କରେଇଛନ୍ତି ।

ବିଭିନ୍ନ ଦୃଷ୍ଟିକୋଣରୁ ବିଚାର କଲେ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି ଜଣେ ସମର୍ଥ ସାରସ୍ୱତ ସାଧକ ଏବଂ ସଂପାଦକ, ଏଥିରେ ସନ୍ଦେହ ନାହିଁ । ୧୯୩୯ ମସିହାରେ ଜନ୍ମଲାଭ କରିଥିବା ଏହି ସଫଳ ସାଧକ ଆଜି ୮୦ ବର୍ଷ ବୟସରେ ପଦାର୍ପଣ କରୁଛନ୍ତି । ମୁଁ ତାଙ୍କର ଦୀର୍ଘ ନିରାମୟ ଜୀବନ କାମନା କରୁଛି । ଈଶ୍ୱର ତାଙ୍କୁ ଶତାୟୁ କରନ୍ତୁ ।

କଲ୍ୟାଣନଗର, ଅଙ୍ଗାରଗାଡ଼ିଆ, ବାଲେଶ୍ୱର-୦୧
ମୋ: ୯୪୩୭୮୧୩୭୦୮

# ଅଧ୍ୟାପନା ଓ ସୃଜନର ପ୍ରଶସ୍ତ ପ୍ରକାଶ

ଡ. ମୃତ୍ୟୁଞ୍ଜୟ ରଥ

ଭାଷା-ସାହିତ୍ୟ-ସଂସ୍କୃତି ସରୋବରରେ ସେ ଭିନ୍ନ ଏକ ରାଜହଂସ । ସର୍ଜନଶୀଳତାର ସୁଦୃଶ୍ୟ ନଭମଣ୍ଡଳର ସେ ଏକ ଉଜ୍ଜ୍ୱଳ ନକ୍ଷତ୍ର । ଅବନୀର ବୁକୁ ପରେ ସେ ବି ଫଗୁଣର ପରଶ । ସେ କେବଳ ଏକ ବ୍ୟକ୍ତି ବିଶେଷ ନୁହଁନ୍ତି, ପ୍ରତିଟି ପ୍ରାଣତନ୍ତ୍ରୀର ସେ ଏକ ଲଳିତ ମୂର୍ଚ୍ଛନା । ସାରସ୍ୱତ ପରିମଣ୍ଡଳକୁ ନିଜ ସୃଜନୀରେ ପରିପୁଷ୍ଟ କରିଥିବା ସେହି ଶାଳପ୍ରାଂଶୁ ସାଧକ-ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ଛାତ୍ର ହେବାର ଗୌରବ ମୋ ପରି ଅନେକ ବିଦ୍ୟାର୍ଥୀଙ୍କୁ ସର୍ବଦା ଗୌରବାନ୍ୱିତ କରିଆସିଛି । ସ୍ମୃତିର ରାଜପଥ ଦେଇ ଅତୀତକୁ ଚାଲିଗଲେ ମନରେ ସୃଷ୍ଟି ହୁଏ ଏକ ଅପୂର୍ବ ଶିହରଣ । ରେଭେନ୍‌ସା ମହାବିଦ୍ୟାଳୟରେ ୧୯୯୪ ମସିହାରେ ମୁଁ ସ୍ନାତକୋତର ଶ୍ରେଣୀରେ ପ୍ରଥମ ବର୍ଷର ଛାତ୍ର । ମହାବିଦ୍ୟାଳୟର ଅଧ୍ୟକ୍ଷ ଭାବେ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କୁ ନେଇ ବହୁତ କଥା ଆମେ ବଡ ଭାଇମାନଙ୍କ ଠାରୁ ଶୁଣୁଥାଉ । ଇଂରାଜୀ ଭାଷା ସାହିତ୍ୟରେ ପ୍ରଫେସର ମହାନ୍ତିଙ୍କ ଦକ୍ଷତା ଓ ପ୍ରଶାସନିକ ସଂସ୍କାର ଆଦିକୁ ନେଇ ଚର୍ଚ୍ଚା ଆମ୍ଭମାନଙ୍କୁ ଉତ୍ସାହିତ କରୁଥାଏ । ପ୍ରଫେସର୍ ମହାନ୍ତିଙ୍କୁ ଦେଖିବା ପୂର୍ବରୁ ତାଙ୍କ ପ୍ରତି ଆମ ଭିତରେ ଶ୍ରଦ୍ଧା ଓ ସମ୍ମାନ ସୃଷ୍ଟି ହୋଇ ସାରିଥାଏ । ଯେଉଁଦିନ ପ୍ରଫେସର୍ ମହାନ୍ତିଙ୍କୁ ପ୍ରଥମେ ଦେଖିଲି, ମହାବିଦ୍ୟାଳୟର ଅଧ୍ୟାପକ - ଅଧ୍ୟାପିକାଙ୍କ ସଂକୁଚିତ ସ୍ୱରୂପ ଓ ସଂଭ୍ରମ ପ୍ରତିବେଦନ ତାଙ୍କ ବ୍ୟକ୍ତିତ୍ୱର ବିଶାଳତାକୁ ବ୍ୟକ୍ତ କରୁଥିଲା ।

ଏହାପରେ ଆମ ବିଭାଗରେ ସେକ୍ସପିୟରଙ୍କ ହାମ୍‌ଲେଟ୍ ନାଟକ ଉପରେ ଏକ ଆଲୋଚନାଚକ୍ରର ଆୟୋଜନ ହୋଇଥାଏ । ପ୍ରଫେସର୍ ମହାନ୍ତିଙ୍କୁ ଶୁଣିବା ପାଇଁ ଛାତ୍ରଛାତ୍ରୀଙ୍କ ଭିତରେ ଯେତିକି ଆଗ୍ରହ ରହିଥିଲା, ବିଭାଗର ଅଧ୍ୟାପନା ମଣ୍ଡଳୀଙ୍କ

ଉତ୍ସୁକତା ବି କିଛି କମ୍ ନ ଥିଲା । ପ୍ରାୟ ସମସ୍ତ ଅଧ୍ୟାପକ - ଅଧ୍ୟାପିକା କାଗଜ କଲମ ଧରି ନିଜକୁ ପ୍ରସ୍ତୁତ କରିଥାନ୍ତି । ଜଣେ ଦୁଇଜଣ ମଧ୍ୟ ବକ୍ତବ୍ୟର ରେକର୍ଡିଂ ପାଇଁ ବ୍ୟବସ୍ଥା କରିଥାନ୍ତି । ପ୍ରାରମ୍ଭିକ ଔପଚାରିକତା ପରେ ଯେତେବେଳେ ପ୍ରଫେସର୍ ମହାନ୍ତି ହାମ୍‌ଲେଟ୍ ନାଟକ ଉପରେ ତାଙ୍କର ଆଲୋଚନା ରଖିଲେ, ଆମେ ଅନୁଭବ କଲୁ ସତେ ଯେପରି ହାମ୍‌ଲେଟ୍ ନାଟକଟି ମଂଚସ୍ଥ ହେଉଛି । ଏକ ଘଂଟାରୁ ଅଧିକ ସମୟ ଧରି କେବଳ ହାମ୍‌ଲେଟ୍ ନୁହେଁ, ସେକ୍ସପିୟରଙ୍କ 'ଅଥେଲୋ', 'କିଙ୍ଗ୍‌ଲିୟର୍' 'ମାକ୍‌ବେଥ୍' ନାଟକର ସଂଳାପ ଉଦ୍ଧୃତି ସହ ଭାବପୂର୍ଣ୍ଣ ସମୀକ୍ଷା ଆମ ସମସ୍ତଙ୍କୁ ଅଭିଭୂତ କରିଦେଲା ।

ଏହାର କିଛି ଦିନ ପରେ ଆମ ବିଭାଗରେ ଇଂରାଜୀ ରୋମାଂଟିକ୍ କବି ଜନ୍ କିଟ୍‌ସ୍‌ଙ୍କ ଜନ୍ମଦିନ ଅବସରରେ ଗୋଟିଏ ଛୋଟିଆ ସଭାର ଆୟୋଜନ ହୋଇଥାଏ । ଅଧ୍ୟକ୍ଷ ଭାବରେ ପ୍ରଶାସନିକ କାର୍ଯ୍ୟରେ ବ୍ୟସ୍ତ ରହି ପ୍ରଫେସର୍ ମହାନ୍ତି ଉକ୍ତ ସଭାରେ ଉପସ୍ଥିତ ହୋଇପାରିବେ ନାହିଁ ବୋଲି ଜାଣିବା ପରେ ପ୍ରାୟ ସମସ୍ତେ ଦୁଃଖିତ ହୋଇଗଲେ । ତେବେ, ସଭାକାର୍ଯ୍ୟ ଓ ଆଲୋଚନା ଯଥାରୀତି ଚାଲିଲା, କିନ୍ତୁ ତାହା ଆଶାନୁରୂପ ହେଲା ନାହିଁ । ଠିକ୍ ପ୍ରାୟ ଏକ ଘଂଟା ପରେ ହଠାତ୍ ପ୍ରକୋଷ୍ଠ ଭିତରେ ପ୍ରବେଶ କଲେ ପ୍ରଫେସର୍ ମହାନ୍ତି । ଆନନ୍ଦର ଏକ ହିଲ୍ଲୋଳ ଖେଳିଗଲା । ସେହି ସମୟରେ କିଟ୍‌ସ୍‌ଙ୍କ କବିତା ଉପରେ ଆଲୋଚନା ରଖୁଥିବା ଅଧ୍ୟାପକ ଆଉ କିଛି ନ କହି ପ୍ରଫେସର୍ ଙ୍କୁ ଆଲୋକପାତ କରିବା ପାଇଁ ନିବେଦନ କଲେ । କବି କିଟ୍‌ସ୍ ଙ୍କ ପ୍ରାୟ ସମସ୍ତ 'ଓଡ୍'ର ପଦପଂକ୍ତିକୁ ଉଦ୍ଧାର କରି ସାବଲୀଳ ଢଙ୍ଗରେ କବି ଓ କବିତା ଉପରେ ଓଜସ୍ୱୀ ସମୀକ୍ଷା ରଖିଥିଲେ ପ୍ରଫେସର୍ ମହାନ୍ତି । ଅତି ଚମତ୍କାର ଭାବେ କିଟ୍‌ସ୍ ଙ୍କ କବିତାଗୁଡ଼ିକୁ ଆବୃତି କରୁଥିବା ପ୍ରଫେସର୍ ମହାନ୍ତିଙ୍କ ପ୍ରଚଣ୍ଡ ଧୀଶକ୍ତି, ଅବିଶ୍ୱସନୀୟ ଅନୁଶୀଳନ ଓ ବାଗ୍ମିତାର ପ୍ରକାଶରେ ଆମେ ସ୍ତବ୍ଧ ହୋଇଯାଥିଲୁ । ଏବେ ବି ସ୍ମୃତିପଟ୍ଟରେ ସେ ଅନୁଭବ ସତେଜ ହୋଇ ରହିଛି ।

ଏହାର କିଛି ଦିନ ପରେ ଅଧ୍ୟାପିକା ଡ. ପ୍ରତିଭା ରାୟଙ୍କୁ ଜାତୀୟ ସ୍ତରରେ ମିଳିଥିବା ସାରସ୍ୱତ ସମ୍ମାନ ପାଇଁ ରେଭେନ୍‌ସା ପରିସରରେ ଆୟୋଜିତ ହୋଇଥିଲା ଏକ ଅଭିନନ୍ଦନ ସଭା । ଉକ୍ତ ସମାବେଶରେ ଡ. ପ୍ରତିଭା ରାୟଙ୍କ ସାମଗ୍ରିକ କୃତିକୁ ନେଇ ଗଳ୍ପ ଓ ଉପନ୍ୟାସ ଗୁଡ଼ିକର କଥାବସ୍ତୁ, ଚରିତ୍ର ଓ ଅବତାରଣା ଶୈଳୀ ଉପରେ

ପ୍ରଫେସର୍ ମହାନ୍ତିଙ୍କ ବକ୍ତବ୍ୟ ଥିଲା ଯେତିକି ହୃଦୟ ଛୁଆଁ, ସେତିକି ଭାବ ସଂଚାରୀ। ଇଂରାଜୀ ଭାଷାରେ ସେହି ପ୍ରଗଳ୍ଭ ମଣିଷଟି ଓଡିଆ ଭାଷାରେ ଯେ ଏତେ ପ୍ରାଞ୍ଜଳ ହୋଇପାରନ୍ତି; ଆଉ ବି କାବ୍ୟିକ ଓ ନାଟକୀୟ ଉପସ୍ଥାପନାରେ ସାହିତ୍ୟମୋଦୀ ଶ୍ରୋତାଙ୍କୁ ତନ୍ମୟ- ତଲ୍ଲୀନ କରିପାରନ୍ତି - ଏ କଥା ସହଜରେ ବିଶ୍ୱାସ କରିହୁଏନା । ପ୍ରଫୁଲ୍ଲ ସାରଙ୍କ ବହୁପ୍ରସୂ ବ୍ୟକ୍ତିତ୍ୱର ଆଉ ଏକ ଦିଗ ଉନ୍ମୋଚିତ ହୋଇଥିଲା, ଯେତେବେଳେ ଇଂରାଜୀ ବିଭାଗର ବାର୍ଷିକ ଉତ୍ସବ ପାଇଁ ବୃନ୍ଦଗାୟନର ପ୍ରସ୍ତୁତି ଚାଲିଥିଲା । ପୂର୍ବରୁ ମୋର ପୂଜ୍ୟଗୁରୁ ପ୍ରାଧ୍ୟାପକ ଭୀମସେନ ମିଶ୍ର ଙ୍କ ଠାରୁ ପ୍ରଫେସର ମହାନ୍ତି ଜଣେ ଉଚ୍ଚକୋଟୀର ଅଭିନେତା ଓ ନାଟ୍ୟ ନିର୍ଦ୍ଦେଶକ ବୋଲି ମୁଁ ଶୁଣିଥିଲି ଏବଂ 'ଅଥେଲୋ' ନାଟକରେ ତାଙ୍କ ଅଭିନୟ କୁଆଡେ ପେଷାଦାର ଅଭିନେତାଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିଲା । ତେବେ ଆମ ବିଭାଗର କିଛି ଛାତ୍ର ବୃନ୍ଦଗାୟନ ଅଭ୍ୟାସ ପାଇଁ ପ୍ରଫୁଲ୍ଲ ସାରଙ୍କ ରେଭେନ୍ସା ପରିସରସ୍ଥ ଆବାସକୁ ଗଲେ ଓ ସେମାନଙ୍କ ମଧ୍ୟରେ ମୁଁ ବି ଥାଏ । ସାରଙ୍କ ରଚନା

"ଆମେ ଉଚ୍ଛୁଳା ମେଘର ଫୁଆର, ଆମେ ଜୋଛନା ବାଉଳା ଜୁଆର" ଯେତିକି ଭାବପୂର୍ଣ୍ଣ ଥିଲା, ତା'ର ସଂଗୀତ ସଂଯୋଜନା ବି ଥିଲା ସେତିକି ହୃଦୟସ୍ପର୍ଶୀ । ଆମ ଗାଇବାକୁ ୨/୪ ଥର ଶୁଣିବା ପରେ ଆବଶ୍ୟକୀୟ ସଂଶୋଧନ କରିଥିଲେ ପ୍ରଫେସର୍ ମହାନ୍ତି ଓ ଗାୟନଟି ଏତେ ଚମତ୍କାର ଥିଲା ଯାହା ଅନେକ ଦିନ ପର୍ଯ୍ୟନ୍ତ ବିଭିନ୍ନ ବିଭାଗର ବାର୍ଷିକ ଉତ୍ସବ, ଛାତ୍ରନିବାସ ଓ ଛାତ୍ରୀନିବାସର ଉତ୍ସବମାନଙ୍କରେ ପରିବେଷିତ ହୋଇ ଦର୍ଶକୀୟ ଆଦୃତି ପାଇଥିଲା । ସାରଙ୍କ ଗୀତର ଭାଷା- ଭାବ ଓ ତା'ର ସାଙ୍ଗୀତିକ ଆବେଦନ ଏବେ ବି ମୋ ଭିତରେ ଅନୁରଣିତ ହୁଏ ।

ରେଭେନ୍ସା ଅଧ୍ୟକ୍ଷ ଭାବେ ପ୍ରଫେସର୍ ମହାନ୍ତି ସମସ୍ତ ବିଭାଗର ଉତ୍ସବରେ ଯୋଗ ଦିଅନ୍ତି ଓ ତାଙ୍କୁ ଶୁଣିବା ପାଇଁ ଆମେ କେଇଜଣ ଛାତ୍ର ଚାତକର ତୃଷା ନେଇ ଅପେକ୍ଷା ରଖୁ । ତେବେ, ସେ ଯେଉଁ ବିଭାଗରେ ଉପସ୍ଥିତ ରହି ସମ୍ବୋଧନ ରଖନ୍ତି, ସେହି ବିଷୟ ଓ ଆଲୋଚ୍ୟ ପ୍ରସଂଗ ଉପରେ ନିଜର ବକ୍ତବ୍ୟ ରଖି ସମସ୍ତଙ୍କୁ ଚକିତ କରନ୍ତି । ଏକଦା ଅର୍ଥନୀତି ବିଭାଗରେ ଏକ ସମ୍ମାନରେ ଡ. ମହାନ୍ତି ଭାରତୀୟ ଅର୍ଥନୀତି ଓ ବିଶ୍ୱ ଅର୍ଥନୀତି ଉପରେ ତାଙ୍କର ବକ୍ତବ୍ୟ ରଖି ଆସିଥିବା ଅତିଥି ବକ୍ତାଙ୍କୁ ଏତେ ପ୍ରଭାବିତ କରିଥିଲା ଯେ, ସେ ଆଉ ବିଶେଷ କିଛି ନ କହି କେବଳ ପ୍ରଫେସର୍

ମହାନ୍ତିଙ୍କ ବକ୍ତବ୍ୟର ଭୂୟସୀ ପ୍ରଶଂସା କରିଥିଲେ । ପରବର୍ତ୍ତୀ ସମୟରେ ମୁଁ ବିଭିନ୍ନ ମଂଚରେ ପ୍ରଫେସର୍ ମହାନ୍ତିଙ୍କୁ ଶୁଣିବାର ସୌଭାଗ୍ୟ ପାଇଛି । ଦୂରଦର୍ଶନରେ ତାଙ୍କ ସହ ବହୁବାର ଆଳାପ କରିବାର ଗୌରବ ପ୍ରାପ୍ତ ହୋଇଛି । ମୁଁ ଅନୁଭବ କରିଛି, ସାର୍‌ଙ୍କ ପ୍ରତିଟି ଶବ୍ଦ ଶ୍ରାବଣ ରାତିର ଗୀତିମୟ ମେଘମଲ୍ଲାର, ତନ୍ମୟତାର ଦୀପକ ରାଗିଣୀ ଯାହା ଧ୍ରୁପଦିରେ ଶୁଣାଇଛି ଭାବମୟତାର ସ୍ତବକ; ଆଉ ବି ଖରସ୍ରୋତା ନଦୀର ଚୋରାବାଲି ପରି ଟାଣିନିଏ ପ୍ରତିଟି ଶ୍ରୋତାର ମନ ଓ ପ୍ରାଣ କୁ । ଭାଷା, ସାହିତ୍ୟ ଓ ସଂସ୍କୃତିର ଭିନ୍ନ ଏକ କୋଣାର୍କ- ପ୍ରଫେସର୍ ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ବ୍ୟକ୍ତିତ୍ୱର ପରଶ ନିଶବ୍ଦକୁ କେବେ ଶବ୍ଦମୟ କରିଛି ତ, କେବେ ପୁଣି ସୃଜନୀର ସ୍ୱର୍ଶରେ ବାଙ୍‌ମୟ ଅଭିବ୍ୟକ୍ତି ହୋଇ ସୃଷ୍ଟି କରିଛି ଅପୂର୍ବ କମ୍ପନ । ଅଧ୍ୟାପନାର ପ୍ରଶସ୍ତ ଅୟନରେ ମୋ ପରି ଅନେକ ପାନ୍ଥଙ୍କ ମାର୍ଗଦର୍ଶକ ଓ ଦିଗବାରେଣୀ ସାଜିଥିବା ପ୍ରଫେସର୍ ପ୍ରଫୁଲ୍ଲ ମହାନ୍ତି ପ୍ରାତଃ ସ୍ମରଣୀୟ ବିଭୂତି ହୋଇରହିଥିବେ । ସାରସ୍ୱତ ସାଧନାର ଆତ୍ମମଗ୍ନ ତପସ୍ୱୀ ପୂଜ୍ୟ ପ୍ରଫେସର୍ ମହାନ୍ତି ନିର୍ଲିପ୍ତ ଭାବନାର ନୀଳାଚଳରେ, ନିବିଷ୍ଟ ଆଳାପର ନୈମିଷାରଣ୍ୟରେ, ଉଚ୍ଚାଟିତ ହୃଦୟର ହିମାଦ୍ରୀରେ ଭାବମୟ ମୂର୍ଚ୍ଛନାର ପଦ୍ମତୋଳା ଶୁଣାଇ ଉତ୍‌ଥାନପାଦ ମଣିଷଙ୍କୁ ଟାଣି ନେଉଥାନ୍ତୁ ତମସାରୁ ଆଲୋକ ଆଡକୁ । ଦୀର୍ଘ ନିରାମୟ ଜୀବନ ନେଇ ଆମ ସାରସ୍ୱତ ବାଙ୍‌ମୟକୁ ସମୃଦ୍ଧ କରୁଥାନ୍ତୁ ସ୍ୱକୀୟ ସୃଜନୀର ଉପହାରରେ । ସ୍ମୃତି- ଅନୁଭୂତିର ବେଦୀ ମୂଳେ ପ୍ରଫେସର୍ ମହାନ୍ତିଙ୍କୁ ମୋର ଆଭୂମି ପ୍ରଣତି ।



# ଗୋପବନ୍ଧୁଙ୍କ ସତ୍ୟବାଦୀରେ
# ପ୍ରଫେସର ମହାନ୍ତିଙ୍କ ସ୍ୱର୍ଣ୍ଣ ତ୍ରିଭୂଜ

ପ୍ରଶାନ୍ତ ମହାନ୍ତି

ଦୁଃଖ ହେଉ ବା ସୁଖ ହେଉ ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ଅଂତରଂଗ ଏଥିରେ ଦ୍ୱିମତ ହେବାର ନାହିଁ। ସୁଖ ପରି ଦୁଃଖ ବି ଜୀବନକୁ ଜାବୁଡ଼ି ଧରେ। ନିଜକୁ ଖୋଜିବା ପାଇଁ ଅନ୍ୟକୁ ବୁଝିବା ଲାଗି ଦୁଃଖ ମନୁଷ୍ୟକୁ ଅନେକ ସମୟରେ ବାଧ୍ୟ କରିଥାଏ। ଏଇ ଅଂତରଂଗ ମୁହୂର୍ତ୍ତ ମନୁଷ୍ୟ ପାଇଁ ଯେତିକି ଭାବପୂଣ୍ଣର୍ଣ୍ଣ ହୋଇ ଉଠେ, ତା' ଭିତରେ ଜୀବନ ସେତିକି ବୈଚିତ୍ର୍ୟମୟ ହୋଇ ଉଠେ। ଜୀବନର ଏଇ ବୈଚିତ୍ର୍ୟ ଅନନ୍ୟ ପୁଣି ଏହାରି ଭିତରେ ଥାଏ ଅନେକ ନିଆରାପଣର ଲୁକ୍କାୟିତ ଆଭା।

ନିଜକୁ ଖୋଜିବା ଭିତରେ ଏଇ ଅଦୃଶ୍ୟ ଆଭାକୁ ଯେତେବେଳେ ମନୁଷ୍ୟ ଆବେଗର ସହିତ ଆପଣେଇ ନିଏ, ସେଇ ଆଭା ମନୁଷ୍ୟ ଭିତରେ ଆତ୍ମବିଶ୍ୱାସର ତରଂଗ ସୃଷ୍ଟିକରି ବାହାର ଦୁନିଆକୁ ଆସିବାକୁ ନିରଂତର ଚେଷ୍ଟା ଜାରି ରଖେ। ବାହାରେ ଆତ୍ମପ୍ରକାଶର ଅଭିମୁଖ୍ୟ ସଜର୍ତ୍ତନଶୀଳତା ବ୍ୟତୀତ ଅନ୍ୟ କିଛି ହୋଇ ନପାରେ। ସାମାଜିକ ପ୍ରାଣୀ ବା ଚେତନଶୀଳ ମନୁଷ୍ୟ ଭାବରେ ଆମେ ଜୀବନକୁ ସକାରାତ୍ମକ ଦୃଷ୍ଟିଭଙ୍ଗୀ ନେଇ ଦେଖିବାର ପ୍ରକ୍ରିୟାକୁ ଜୀବଧମର୍ତ୍ତ ଭାବେ ଗ୍ରହଣ କଲେ ବୋଧହୁଏ ଠିକ୍ ହେବ।

ଏଇ ବିଷୟର ବୋଧକୁ ନେଇ ଜଣେ ପ୍ରଜ୍ଞାପୁରୁଷଙ୍କ ସୃଷ୍ଟି ସଂପର୍କରେ କେତେକ ଭାବାବେଗକୁ ପ୍ରକାଶ କରିବା ଏଇ କ୍ଷୁଦ୍ର ପ୍ରବଂଧର ଆଭିମୁଖ୍ୟ। ଡ଼. ପ୍ରଫୁଲ କୁମାର ମହାଂତି : ଶିକ୍ଷାବିତ୍, ଗବେଷକ, ଦକ୍ଷପ୍ରଶାସକ, କବିଗାଳ୍ପିକ, ନାଟ୍ୟକାର, ନିର୍ଦ୍ଦେଶକ, ପ୍ରାବଂଧିକ, ଅନୁବାଦକ। ଆଧୁନିକ ଜୀବନଚର୍ଯ୍ୟା ସହିତ

ମୂଲ୍ୟବୋଧଭିତ୍ତିକ ଜୀବନର ଜୟଗାନକରି ପ୍ରାଚ୍ୟ ତଥା ପାଶ୍ଚାତ୍ୟ ଜୀବନର ନବ ମୂଲ୍ୟାୟନ ଯାହାଙ୍କ ଭାବାବେଗର ନିଖୁଣ ନିଦର୍ଶନ, ସେ ସୁବକ୍ତା ଆଉ ଜଣେ ଦରଦୀ ମନୁଷ୍ୟ। ତାଂକର ଅନୁଭବ କେବଳ ଗ୍ରଂଥ ଅଧ୍ୟାୟରୁ ନୁହେ ଜୀବନକୁ ତନ୍ନ ତନ୍ନ କରି ଦେଖିବା ଅଗଣିତ ମନୁଷ୍ୟ ଭିତରେ ନିରହଂକାର ଜୀବନର ନିଆରା ପଣକୁ ସଜର୍ଜନାତ୍ମକ ଆବେଗ ଭିତରେ ପ୍ରତିବିଂବିତ କରିବା ସହ Hate the sin not the sinner ବୋଲି ମୁକ୍ତକଂଠରେ ଘୋଷଣା କରିବାର ଦାଂଭିକ ମଣିଷ ପ୍ରଫେସର ପ୍ରଫୁଲ କୁମାର ମହାଂତି।

ସେ ଓଡ଼ିଆ ସାହିତ୍ୟର ଅନ୍ୟତମ ବିଘରବଂତ ସମାଲୋଚକ ଏବଂ ସ୍ରଷ୍ଟା। ଅନୁଭବର ତୀବ୍ରତା ହିଁ ତାଂକ ସୃଷ୍ଟିର ପୃଷ୍ଠଭୂମି। ଅଧ୍ୟୟନ ଆଉ ଅନୁଶୀଳନ ତାଂକ ଚେତନାର ଦୁଇଟି ପ୍ରଲଂବିତ ରେଖା ଯାହାକୁ ନେଇ ସହଜରେ ଆଂକିହେବ ଜଣେ ପ୍ରତିଭା ସଂପନ୍ନ ବ୍ୟକ୍ତିଂକ ଭାବ ଚେତନାର ସୁବର୍ଣ୍ଣ ତ୍ରିଭୂଜ । ଗୋପବଂଧୁଂକ ସତ୍ୟବାଦୀରେ ପ୍ରକାଶିତ ଗୋଟିଏ କବିତା, ଗୋଟିଏ ଗଳ୍ପ, ଏବଂ ଗୋଟିଏ ପ୍ରବଂଧକୁ ନେଇ ମୋର ଲେଖା ଗତିଶୀଳ।

କବିତା : "ଏଇଟା ମୋର କୋଉ ଅବତାର!" (ଗୋପବଂଧୁଙ୍କ ସତ୍ୟବାଦୀ ସେପ୍ଟେମ୍ବର ୨୦୧୭)

ନିଜର ପ୍ରଜ୍ଞା ପ୍ରବଣତା ଆଉ ପ୍ରୟୋଜନକୁ ଆଧାର କରି ଚେତନଶୀଳ ମନୁଷ୍ୟ ତାର ଅଂତଦୃଷ୍ଟି ଜରିଆରେ ପ୍ରଶ୍ନକରେ। ବହୁ ମାନସିକ ସଂତୁଳନ ଅଧ୍ୟୟନ ଅନୁଶୀଳନ ପରେ ନିଜେ ଖୋଜୁଥିବା ଉତ୍ତର ପାଇଯାଏ। ବିଶ୍ୱ ଇତିହାସରେ ଏହାର ଅନେକ ନଜର ରହିଛି। ବିଶିଷ୍ଟ ବୈଜ୍ଞାନିକ C.V. Raman ବା ଗୌତମରୁ ବୁଦ୍ଧରେ ରୂପାଂତରିତ ହୋଇଥିବା ଯୁଗ ପୁରୁଷଂକ ଜୀବନଚର୍ଯ୍ୟାକୁ ଅନୁଧ୍ୟାନ କଲେ ଆମେ ସେହି ସିଂଦ୍ଧାତରେ ଉପନୀତ ହେବା ଯେଉଁଠି ଆମେ ବିଶ୍ୱାସ କରିବାକୁ ବାଧ ହେବା "ପ୍ରଶ୍ନ କର୍ତ୍ତା ହିଁ ଉତ୍ତରଦାତା।"

ଆଲୋଚ୍ୟ କବିତା "ଏଇଟା ମୋର କୋଉ ଅବତାର"ର କବି ପ୍ରଫେସର ମହାଂତି ହିଁ କାବ୍ୟ ନାୟକ। ଅତି ସାଧାରଣ ମଣିଷଟିଏ। ରକ୍ତ ମାଂସର ଶରୀରରେ ଧୂଳିମାଟିର ମଣିଷଟିଏ। ଯେମିତି ସବୁରି ଭିତରେ ମୁଁ। ସେଇଠି ଅସାଧାରଣତ୍ୱ ପ୍ରତିପାଦିତ ହୁଏ, ଯେଉଁଠି ବ୍ୟକ୍ତିତ୍ୱ ନଥାଇ ନେତୃତ୍ୱ ଜ୍ଞାନ ନଥାଇ ପ୍ରବଚନ ଦୀକ୍ଷାଂତ

ଭାଷଣ ମାଟିରୁ ଅନଂତ ଆକାଶ ଯାଏ ପରିବ୍ୟାପ୍ତ ହୋଇଥାଏ ସେଇଠି ଫୁଲମାଳ, ଶଂଖଧ୍ୱନି, ଘଂଟ, କରତାଳି ଧରି ପ୍ରବଂଚନର ମୁଖା ପିଂଧି ମଣିଷ ଆସଂତି । କିଂତୁ କବିଂକ ନିଷ୍କପଟ ପ୍ରକାଶ ଭଂଗୀରୁ ଉତୁରି ଆସିଥିବା କୋମଳ ଶାବଲିଳ ଶବ୍ଦ ପ୍ରଥମରୁ କହେ "ମୋର ଘରିପଟେ ଠିଆ ହୋଇ କେହି ମୋର ଜୟଗାନ କରୁନାହିଁ, ଫୁଲମାଳ ପଡୁନାହିଁ, ଅକାତରେ କେହି ଫିଙ୍ଗୁନାହିଁ ଟଂକାସୁନା, ମୋର ପାଦତଳେ ଯେମିତି ଫିଙ୍ଗନ୍ତି ଲୋକେ, ମଂଦିର ଗୁରୁଦ୍ୱାର ଡ଼ବା ପେଡ଼ି ବାକ୍ସରେ, ମୁଣ୍ଡିଆ ମାରି ପାଦଧୂଳି ନେଇ କିଏ, ସାର୍ଥକ ହେଲା ଜୀବନ ବୋଲି କହୁନାହିଁ।" (ଏଇଟା ମୋର କୋଉ ଅବତାର)

ଉପରୋକ୍ତ କବିତାଂଶର ସରଳ ପଦସଂଭାର ଭିତରେ ନିରହଂକାର କବି ମଣିଷର ଜୀବନ ଚିତ୍ର ସ୍ରଷ୍ଟା ଜୀବନରୁ କିଛି ସମୟ ଅତୀତ ସହ, ଅନାଗତ ସମୟର ଅପେକ୍ଷାରେ ଭବିଷ୍ୟ କିଂତୁ ବର୍ତ୍ତମାନକୁ ନେଇ କବିଂକ ପ୍ରଶ୍ନ "ମୁଁ କଣ କରୁଛି ଏକା ଏକା ଏଇ ପୃଥିବୀରେ।" ଜନ ବିସ୍ଫୋରଣର ପୃଥିବୀ ହୋହଲ୍ଲା ସବୁଠି । ଯେଝା ବାଟରେ ଆଜି ଅର୍ଜୁନ ଆଉ ଅଭିମନ୍ୟୁ। ଏଇଠି କବିଂକ ବ୍ୟକ୍ତି ସତ୍ତା ସ୍ୱାର୍ଥ କୈଂଦ୍ରିକ ହେଲେ ହେଁ ସ୍ୱପ୍ନାବିଷ୍ଟ, କବିଂକ ଆବେଗଭରା ହୃଦୟର ସଂଳାପ ମାଟି ମଂଡ଼ପରୁ ଅନଂତ ଆକାଶ ଯାଏ ପରିବ୍ୟାପ୍ତ । ନିଜର ଅଭିପ୍ସା ଭିତରେ, ଧୂସର ମାଟିଚଟାଣରୁ ମଳିନ ମଂଦାରକୁ ଗୋଟେଇ ତା'ର ନଷ୍ଟ ଦେହରୁ ଧୂଳି ଝାଡ଼ି ଛାତିରେ ଲଗାଇ ସୂର୍ଯ୍ୟଂକୁ ରଶ୍ମି ମାଗିବାର ଆବେଗ ନିତ୍ୟ ନୈମିକତାଠୁ ଅନେକ ଉର୍ଦ୍ଧ୍ୱରେ କାରଣ ସଜଫୁଲର ମହକରୁ ବେଦାଂତ ଦର୍ଶନ ଅପେକ୍ଷା ମାଟି ଛଟୁଥିବା ମଂଦାରରେ କବିଂକ ଆତ୍ମନିବେଦନ ନିଆରା ପ୍ରାଣର ସ୍ପଦନ ବ୍ୟତୀତ ଅନ୍ୟ କିଛି ହୋଇ ନପାରେ।

ବସଂତ ଏକ ଋତୁ ଅନୁଭବ ନା ସ୍ରଷ୍ଟାର ନିଜପଣକୁ ରୋମାଂଟିକ ପ୍ରବଣତାରେ ଅକ୍ତିଆର କରି ନେଇଥିବା ଗୋଟିଏ ନିଃଶବ୍ଦ ମୁହୂର୍ତ୍ତ କହିବା ମୁସ୍କିଲ୍। କିଂତୁ କବି ଦୃଷ୍ଟିରେ ରେଣୁ ଏକ ବ୍ୟକ୍ତିସତ୍ତା ହୋଇପାରେ, ଅଥଚ ପଦ୍ମଫୁଲ ପାଖୁଡ଼ାକୁ ମେଲି ତାର ବସଂତ ରଂଗର ଇତିହାସ ଖୋଜିବା କବିଂକ ସୂକ୍ଷ୍ମ ଚେତନାର ଏକ ନିବର୍ଚ୍ଚାଚିତ ପ୍ରତିଛବି।

ତେବେ ମୁଁ କଣ କରୁଛି ଏଠି ଏକା ଏକା ଏଇ ପୃଥିବୀରେ ଲୋଟି ପଡୁଥିବା ମଂଦାର ଦେହରୁ ଧୂଳିଝାଡ଼ି, ଛାତିରେ ଲଗାଇ ମୁଁ ସୂର୍ଯ୍ୟକୁ ମାଗୁଛି ରଶ୍ମି । ପଦ୍ମଫୁଲ

ପାଖୁଡ଼ାକୁ ମେଲି ମାଲି ଖୋଜୁଛି ମୁଁ ରେଣୁର ବସଂତ ରଂଗର ଇତିହାସ, ମାଟି ଏହି ମହାମଂଚରେ ଜପୁଛି କେବଳ ତା'ର ନାଁ ଯାହାର ଠିକଣା ମୁଁ ପାଇନାହିଁ, କେବେ ହେଲେ କେଉଁ ଅବତାରେ କେଉଁଠି ଦେଖିଥିଲି କେବେ ମନେ ମଧ ନାହିଁ କିଂତୁ ଛାଇ ପରି ଘେରିଛି ମୋତେ ଦିନ ରାତି ହଜା ହଜା ପଲକର ପରମ ବିଭୂତି। (ଏଇଟା ମୋର କୋଉ ଅବତାର)

ଯେଉଁଠି ଖୋଜିବ ସତ୍ୟ ସେଇଠି ବିଶ୍ୱାସ ରଖିବାକୁ ହୁଏ। ତାର ଗୋଟାଏ ଥିଲା ଅତୀତ। ସେ ଅତୀତ ଯଂତ୍ରଣାସିକ୍ତ ହେଲେ ବି ନିଜ ଭିତରେ ଏକ ମୁଗ୍ଧ ଅନୁଭବର ସ୍ମୃତି ପାଇଁ ମଣିଷର ବ୍ୟସ୍ତତା ନିଜ ଅନୁଭବର ଅପାସୋରା କାହାଣୀ ଏଥିରେ ଦ୍ୱିମତ ହେବା ସଂଭବ ନୁହେ। ପଲ୍ଲୀ କବି ନଂଦ କିଶୋରଙ୍କ ଶୀଳଭାବର ମୁଗ୍ଧ ଉଚ୍ଚାରଣରେ -

"ପ୍ରେମିକ ଜୀବନ ସାର ଦରପଣ
ଅଂତର ପରୀକ୍ଷା ପାଇଁ
ନାହିଁ ଯଦି ପ୍ରେମ ହୃଦ ଅଭ୍ୟଂତରେ
ଛାୟା ବା ପଡ଼ିବ କାହିଁ।"

କବିଂକର ଏଇ ନିଷ୍କପଟ ଅଭିବ୍ୟକ୍ତି ପରେ ଜଣେ ସାଧାରଣ ପାଠକ କବିତାର ପରବର୍ତ୍ତୀ ପର୍ଯ୍ୟାୟକୁ ଅପେକ୍ଷା ନ କରିପାରେ କିଂତୁ ଜଣେ ଅନୁଭବି ପାଠକ କବିତାର ଚରମ ପରିଣତିକୁ ନିଶ୍ଚୟ ଅପେକ୍ଷା କରିବ। କାରଣ କବି ହୃଦୟର ଆବେଗ ବିଶେଷକକରି ରୋମାଂଟିକ ପ୍ରବଣତାକୁ ଆଧାର କରି ଯେଉଁ ଭାବ ସ୍ୱପ୍ନ ଆଉ ବିଶ୍ୱାସର ବଳୟଟିଏ ସୃଷ୍ଟି କରିଥିବ। ସେଥିରୁ ରସିକ ପାଠକ ନିଜକୁ ମୁକୁଳାଇ ପାରିବ ନାହିଁ।

ପ୍ରଜ୍ଞା ପୁରୁଷ କବି ପ୍ରାଣ ପ୍ରଫୁଲ୍ଲ ମହାଂତି ନିଜ କାବ୍ୟ ବ୍ୟକ୍ତିତ୍ୱକୁ ଅଧିକ ରସାଣିତ କରିବା ଲାଗି ଆଲୋଚ୍ୟ କବିତା ମଧ୍ୟରେ ଅତି ସଫଳଭାବେ ଦ୍ୱାପର ଏବଂ ତ୍ରେତୟାଯୁଗର ମିଥିକୁ ପ୍ରୟୋଗ କରିଛଂତି। ଆମ ସାଂସ୍କୃତିକ ଜୀବନଧାରାକୁ ମହାଭାରତ ଏବଂ ରାମାୟଣ ଆଛନ୍ନ କରି ରଖିଥିଲେ ମଧ କୃଷ୍ଣ ଏବଂ ରାମ ଅବତାର ନେଇ ଆସିବା ଉଦ୍ଦେଶ୍ୟ ପ୍ରଣୋଦିତ ତାହା ବିଶ୍ୱଜନ ବିଦିତା କୃଷ୍ଣଙ୍କ ଗୋପଲୀଳା ପ୍ରସଂଗ ବା ପିତାଂକ ସତ୍ୟକୁ ସମ୍ମାନ ହେବା ଲାଗି ରାମଂକ ବନଗମନ ଘଟଣା ସହିତ ଜାନକୀ ଦେବୀଂକ ବନଗମନ ଜୈବିକ ଆକାଂକ୍ଷାର ଏକ ଏକ ଭାବପୂର୍ଣ୍ଣ ଦିଗ।

ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଭାଷାରେ :

"ଏ ଦେହ ଥିଲେ ସବର୍ଭ ପାଇ
ଜଳେ ଯେ ସନ ଚଂଦ୍ରଛାଇ ।"

କବି ପ୍ରଫୁଲ କୁମାର ମହାଂତିଙ୍କ ଆଲୋଚ୍ୟ କବିତା ପ୍ରଦତ୍ତ ଅଂଶ:-

"ଦେହର ବେଭାର ନେଇ ସେମାନେ ଅନଂତ ଶୟନରେ ମାତିଛନ୍ତି, କେବେ ଦିନେ ବିରହ ଜ୍ୱାଳାରେ ମାପି ନାହାଂତି ପ୍ରେମର ଉତ୍ତାପ ପଂଚଭୂତରେ ।"

"If grass can grow through cement love can find you every time in your life." (CHER)

କେବଳ ପ୍ରାଚ୍ୟ ନୁହ ପାଶ୍ଚାତ୍ୟ ଦେଶର ଚିଂତା ନାୟକ ମାନେ ବି ବିଶ୍ୱାସ ରଖଂତି ବହୁ ଅତୀତର ସ୍ୱପ୍ନକୁ ସାର୍ଥକ ରୂପ ଦେବା ପାଇଁ ଚେତନଶୀଳ ପ୍ରାଣୀକୁ ଜନ୍ମପରେ ଜନ୍ମକୁ ଅପେକ୍ଷା କରିବାକୁ ପଡ଼ିଥାଏ । ଏ ସଂପର୍କରେ ବୁଦ୍ଧ ଜାତକ ସଚେତନଭାବେ ଅନେକ ଜନ୍ମପରେ ଗୌତମଂକ ଆଭିମୁଖ୍ୟ ବୁଦ୍ଧ ରୂପରେ ଆତ୍ମପ୍ରକାଶ କରିବା କଥା କହିଛି ।

ଆଲୋଚ୍ୟ କବିତାରେ ସେଇ ବିଶ୍ୱାସ ବୋଧକୁ ନେଇ କବି ପ୍ରଫୁଲ କୁମାର ମହାଂତି କହଂତି:-

"ଖୋଜୁଛି ତାକୁ ଯାହାକୁ ମୁଁ ପାଇବିନି/ ଏହା ହିଁ ମୋ ପ୍ରେମ ଅବତାର ।"

ଖୋଜି ନପାଇବାର ଯଂତ୍ରଣା ଭିତରେ ଆନଂଦ ଜଣେ ଦାର୍ଶନିକର ଭକ୍ତି ବା ପାଗଳପଣିଆ ନୁହେ ଜୀବନକୁ ଜୀବନ ପରି ଦେଖିବା ସହ ଅନୁଭବର ତୀବ୍ରତାକୁ ନେଇ ଯେମିତି Arthor Miller ଙ୍କୁ ସ୍ମରଣ କରିବା:-

"We the modern men are standing in such a railway station to which platform the train will not come."

ପ୍ରେମ ପାଇଁ ସବୁ ତାପ ସହିବାର ଦାଂଭୋକ୍ତି ପଛରେ ଯେଉଁ ସତ୍ୟଟି

ଲୁକ୍କାୟିତ ତାହା, "Even memory is not necessary for love. There is a land of the living and a land of the dead and the bridge is love. The only survival, the only meaning (Thornton Wilder)

କଅଁଳ ମନଛୁଆଁ ଶବ୍ଦରେ ଭାବର ତରଂଗ ବୋଧେ ଆଲୋଚ୍ୟ କବିତାରେ ଏତିକି କହିଛି ଜୀବନ ପାଇଁ ଅନ୍ୟତମ ଚିରଂତନ ସତ୍ୟ-ପ୍ରେମ ।

ପ୍ରବଂଧ, "କିଏ ଚିହ୍ନିଚକି ଆପଣାକୁ ଆପେ" (ଗୋପବଂଧୁଂକ ସତ୍ୟବାଦୀ - ଏପ୍ରିଲ-୨୦୧୯)

ସୂକ୍ଷ୍ମ ଅନୁଭବର ବୌଦ୍ଧିକ କଳା ପ୍ରବଂଧ । ସ୍ରଷ୍ଟାଂକ (ପ୍ରାବଂଧିକ) ଯୁକ୍ତି ଓ ବିଚାର ପଛରେ ବ୍ୟକ୍ତିଗତ ଜୀବନର ଦର୍ଶନ, ସମାଜର ପ୍ରତିବିଂବ ସହିତ ଅଧ୍ୟୟନ ଅନୁଶୀଳ ଏବଂ ଦାଂଭିକ ଉଦ୍‌ଘୋଷଣା ପୁଣି ମୌଳିକ ଦୃଷ୍ଟିଭଂଗୀ ଅତି ଯତ୍ନଶୀଳ ଭାବେ ପରିପ୍ରକାଶ ହୋଇଥାଏ ।

ପ୍ରବଂଧ ଏକ କ୍ଷୁଦ୍ର ବାମନ ଯାହାର ଗୋଟିଏ ପାଦ ପୃଥିବୀ ଉପରେ (ବାସ୍ତବତା) ନିଜ ସ୍ଥିତିକୁ ଜାହିର କରେ । ଦ୍ୱିତୀୟଟି ଆକାଶରେ ଅର୍ଥାତ କଳ୍ପିତ ବାସ୍ତବତାକୁ ସ୍ୱୀକାର କଲାବେଳେ ତୃତୀୟଟି ପାଠକର ମୁଣ୍ଡ ଉପରେ ରହି ବୌଦ୍ଧିକ ଚେତନାର ପରିବୃଦ୍ଧି ପାଇଁ ସହାୟତା ଦେଇଥାଏ ।

ପ୍ରଫେସର ପ୍ରଫୁଲ୍ଲ କୁମାର ମହାଂତିଙ୍କ ଆଲୋଚ୍ୟ ପ୍ରବଂଧ "କିଏ ତୁମେ ଚିହ୍ନିଚକି ଆପଣାକୁ ଆପେ" ସଂପର୍କରେ କିଛି କହିଲା ବେଳେ ମହାମାନବ ମହାତ୍ମାଗାଂଧିଙ୍କର ଗୋଟିଏ ଉକ୍ତି ମନକୁ ଛୁଏଁ "ପୃଥିବୀର ସେହି ମଣିଷ ସବୁଠାରୁ ଦୁଃଖୀ ଯିଏ ନିଜକୁ ଚିହ୍ନି ନଥାଏ ।"ଗାଂଧୀଜୀଂକ ଉପରୋକ୍ତ ବକ୍ତବ୍ୟ ପଛରେ ଯେଉଁ ସତ୍ୟଟି ଲୁକ୍କାୟିତ ତାହା ତାଂକର ବ୍ୟକ୍ତିଗତ ଜୀବନର ଅନୁଭବ । ଆମେ ଆମର ଚଳଣିକୁ ଭିତ୍ତି ନକରି ଯେଉଁ ଋହାଣୀରେ ନିଜକୁ ମୂଲ୍ୟାଂକନ କରୁ ତାର ନକାରାତ୍ମକ ଦିଗଟି ନିଜକୁ କେବେ କେବେ ନ୍ୟୁନ କରି ଦେଖିବାକୁ ବାଧ୍ୟ କରେ ତ ଆଉ କେବେ ରାତିଠୁ ସ୍ୱପ୍ନ ଅଧିକ ହୋଇଯାଏ । ତେଣୁ ନିଜେ ଯାହା ତାହା ଅନୁଭବ କରିବାର କ୍ଷମତା ଜଣେ ବିଋରବଂତ ପୁରୁଷର ଆତ୍ମ ସମୀକ୍ଷା ଉପରେ ପ୍ରତିଷ୍ଠିତ ଏଥିରେ ଦ୍ୱିମତ ହେବାର ନାହିଁ ।

ପ୍ରାବଂଧିକ ନିଜ ପତ୍ନିଙ୍କର ଅବଚେତନ ମନତଳୁ ଝରି ଆସିଥିବା ସ୍ୱଗତୋକ୍ତି, "ମୁଁ ଏବେ ନିଜକୁ ଖୋଜୁଛିରେ ସାମାନ୍ୟ ହଡ଼ବଡ଼େଇ କହିଥିଲେ, ତୁମେ ତୁମେ ଯେମିତି ମୁଁ, ମୁଁ ଯେମିତି ଏ ମାଛିଟା ବି ସେମିତି। ହାମଲେଟ୍ ହାମଲେଟ୍ ପରି, କୃଷ୍ଣ ତାଂକ ନିଜପରି। ସମସ୍ତେ ନିଜ ନିଜର ପରିଚୟ ନେଇ ଜୀବନ କଟାଇ ଦିଅଂତି ଇତିହାସର କାଳଖଂଡରେ।"

ତଥା କିଥିତ ଧାରାକୁ ଆଶ୍ରୟ କରି ରଚିତ ହେଉଥିବା ଓଡ଼ିଆ ପ୍ରବଂଧ ସରଣୀରେ କେତେକ ମୌଳିକ ଚିଂତାର ପ୍ରାବଂଧିକଂକଠାରୁ ଅନେକ ବ୍ୟତିକ୍ରମର ଭାଷ୍ୟକାର ପ୍ରଫେସର ପ୍ରଫୁଲ୍ଲ କୁମାର ମହାଂତି । ନିଆରା କରି ଦେଖିବା ସହିତ ପୁଂଖାନୁପୁଂଖ ଭାବେ ତଥ୍ୟକୁ ବିଶ୍ଳେଷଣ କରିବା ଆଉ ନିଆରା କରି ଅନନ୍ୟ ଭାବେ ଗଢ଼ିତୋଳିବାର ପ୍ରଜ୍ଞା ପୁରୁଷ, ପ୍ରାବଂଧିକ ମହାଂତି। ବେଳେବେଳେ ଏମିତି ଲାଗେ ତାଂକର ମନର ସବୁ ପ୍ରଶ୍ନର ଉତ୍ତର ନିଜର ଅସାଧାରଣ ବିଚ୍ଛର ଶକ୍ତି ଦ୍ୱାରା ନିଜ ଅଜାଣତରେ ସେ ପ୍ରକାଶ କରିଦିଅନ୍ତି।

ନିଜେ ନିଜର ପରିଚୟ ନେଇ କାଳଖଂଡ଼ରେ ହଜିଯିବାର ଚରମ ସତ୍ୟତା ଭିତରେ - ଶ୍ୱେତ କେତୁ ଉଦ୍ଦାଳକ ପ୍ରସଂଗକୁ ଆଲୋଚ୍ୟ ପ୍ରବଂଧରେ ଉପସ୍ଥାପନ କରି ପ୍ରାବଂଧିକ କହଂତି "ମୁଁ କୁ ଜାଣିବା ଚହ୍ନିବା ଆୟତନ, ଆକାର ମାପିବା ରୂପ ରଂଗରସ ଛଂଦକୁ ବୁଝିବା ପ୍ରାୟ ଅସଂଭବ।" ନିଜକୁ ଆକଳନ କରିବାର ପରିମାପକଟି କ'ଣ ?

ପ୍ରାବଂଧିକଂକ ଯୁକ୍ତି ଜ୍ଞାନ ଏବଂ ଆତ୍ମଜ୍ଞାନ ଗୋଟିଏ ସରଳରେଖାର ଦୁଇଟି ବିଂଦୁ। ଜ୍ଞାନ ସିଦ୍ଧ ବ୍ୟକ୍ତି ଭିତରେ ଅସାଧାରଣତ୍ୱକୁ ଅନୁଭବ କରାଯାଇପାରେ କିଂତୁ ସେ ଜାଗତିକ ଜୀବନଠୁ ନିଜକୁ ଅଲଗା କରି ଗଢ଼ି ତୋଳି ପାରିବ ନାହିଁ। କାରଣ ପ୍ରଥମେ ସେ ମଣିଷ, ଦ୍ୱିତୀୟରେ ଆଉକିଛି Aristotleଙ୍କ ଭାଷାରେ "Man is a social animal" ସେ ପ୍ରଜ୍ଞାବାନ ହେଲେ ବି ଅସହାୟ ଏବଂ ନିଭର୍ରଶୀଳ।

"No man is an island, entire of itself, every man is a piece of the continent, a part of the main" (John Donne)

ସୃଷ୍ଟିର ବୈଚିତ୍ର୍ୟକୁ ଅନୁଧ୍ୟାନ କଲେ ଜଣାଯାଏ, ପ୍ରତ୍ୟେକ ପ୍ରାଣୀ ନିର୍ଭରଶୀଳ

- ଅନ୍ୟର ସହାୟତା ବିନା କେବେ ଜୀବନ ତାର ଗତି ପ୍ରବୃତି ଏବଂ ସ୍ଥିତିକୁ ଅନୁଭବ କରିପାରେନା । ଅତୀତର ସଂପକର୍ତ୍ତ ବା ନିର୍ଭରଶୀଳତା ବିବର୍ତ୍ତିତ ଧାରାରେ ପରିବର୍ତ୍ତନକୁ ସ୍ୱୀକାର କରେ ଏବଂ ତାକୁ ଆଧାରକରି ବାଟ ଚାଲେ । ପରିବର୍ତ୍ତନକୁ ଆପଣେଇ ନେଇଥିବା ମଣିଷଟିର ମଧ ସମୟକ୍ରମେ ସଂଜ୍ଞା ଓ ସ୍ୱରୂପର ପରିବର୍ତ୍ତନ ଘଟେ । ଯେମିତି ଜଣେ ଭାରତୀୟ ଛାତ୍ର ଅଧୟନ, ରୋଜଗାରକ୍ଷମ, ବିବାହ ପରେ, ଶେଷରେ ନିଜର ଧର୍ମ ବଦଳାଇ ବିଦେଶରେ ନାଗରିକତ୍ୱ ଗ୍ରହଣ କରେ । ସେହି ପୃଷ୍ଠଭୂମି ଉପରେ ପ୍ରାବଂଧିକଂକ ପ୍ରଶ୍ନ କିଂତୁ ପରିବର୍ତ୍ତନର ସତ୍ୟ ସହିତ ବ୍ୟକ୍ତିର ପରିଚୟ ଯଦି ଜଡ଼ିତ ଏଇ ସତ୍ୟର ପରିମାପକ କ'ଣ ?

ପ୍ରାବଂଧିକଂକ ଗଭୀର ଅଂତଦୃଷ୍ଟି ଯେଉଁ ଭଳି ଜୀବନକୁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଶ୍ଳେଷଣ କରିଛି ବାସ୍ତବିକ ତାର ତୁଳନା ହିଁ "ଏପରି ହୋଇପାରେ ଗୋଲାପ ଫୁଲ କହିଲେ ସୁଂଦର ନା ବାସ୍ତବ ?" ଲେଖକଂକ ବିଚାରରେ ଫୁଲ ସୁଂଦର - ତେଣୁ ଗୋଲାପଫୁଲ ବି ସୁଂଦର । ଗୋଲାପର ସୌଂଦର୍ଯ୍ୟ ଉପଭୋଗ ପାଇଁ ପ୍ରତ୍ୟେକ ମନୁଷ୍ୟର ମାନସିକତା ଏକ ନୁହଁ । ଦର୍ଶକର ରସବୋଧ ହିଁ ଗୋଲାପର ସୌଂଦର୍ଯ୍ୟ ସଂପର୍କରେ କିଛି କହେ ।

ମନୁଷ୍ୟର ହାତ ଗଢ଼ା ଠାକୁରକୁ ସର୍ବ ଶକ୍ତିମାନ କହିବା ଏବଂ ତାଂକର ଇଚ୍ଛାରେ ପତ୍ର କଅଁଳେ : ପବନ ବହେ ତାଂକର ବିନା ଆଶୀର୍ବାଦରେ କିଛି ବି ହୁଏନା ବୋଲି କହି ନିଜକୁ ତାଂକର ଦାସାନୁଦାସ କହିବାକୁ ମନୁଷ୍ୟ ଦିନେ ଭୂଲି ନଥିଲା । ସର୍ବଶକ୍ତିମାନ, ହାତଗଢ଼ା ବା କଳ୍ପିତ ଈଶ୍ୱରଂକ ବାଣୀ ଯାହା ମଣିଷ ଦ୍ୱାରା ଲିଖିତ ତାରି ନାମରେ ନିୟମ କରି ଯେମିତି ସେ ଏଯାବତ୍ କହିଆସିଛି । ସେ ପରମାତ୍ମା, ମୁଁ ତାଂକର ଅଂଶ ବିଶେଷ, ଆତ୍ମା । ମୁଁ ନିମିତ୍ତ ମାତ୍ର । ଯାହାକିଛି ତାଂକର ଇଚ୍ଛାରେ - ସେଇ ପରମାତ୍ମାଂକ ସଂପର୍କରେ ଅଧିକ ଗୁରୁତ୍ୱ ଦେଇ ଯେମିତି କୁହାଯାଏ:-

"କରି କରାଉଥଏ ମୁହିଁ,
ମୋ ବିନେ ଅନ୍ୟ ଗତି ନାହିଁ ।"

କେବଳ ଏଇ ଭାବରେ ମନୁଷ୍ୟର କର୍ମପ୍ରବଣତାକୁ ନେଇ ପ୍ରଶ୍ନ ଉଠେନି, ଧାର୍ମିକ ପ୍ରବଣତା ଜରିଆରେ ଯେମିତି ସ୍ୱତଃ ମନୁଷ୍ୟ ଭିତରେ ହୀନମନ୍ୟତା ଜାଗ୍ରତ ହୁଏ ।

ମନୁଷ୍ୟର ଜ୍ଞାନ ପରିବେଶରୁ ସୃଷ୍ଟି ହେବା ଜାଗତିକ ସତ୍ୟ । କେବଳ ସଭ୍ୟତା ବଦଳେନି ସଂସ୍କୃତି ମଧ୍ୟ ବଦଳେ ପରିବର୍ତ୍ତନ ଦେଇ ଗତି କରୁଥିବା ମନୁଷ୍ୟର ପ୍ରାଚୀନ ସଂସ୍କୃତିକୁ ଖୋଜିଲେ ହତାଶ ହେବାଟା ହିଁ ସତ୍ୟ ଭାବରେ ଉପନୀତ ହୁଏ ବ୍ୟବସ୍ଥାର ପରିବର୍ତ୍ତନରେ କଷ୍ଟ ବଦଳରେ ସହଜରେ ବର୍ତ୍ତମାନ ଉପଲବ୍ଧ । ତପସ୍ୱୀମାନେ ଆଜି ଗଛତଳେ, ମୁକ୍ତଆକାଶରେ ଧ୍ୟାନ ରତ ନହୋଇ ଶୀତ ତାପ ନିୟଂତ୍ରିତ କୋଠରୀକୁ ଆଶ୍ରୟ କରି ଜୀବନ ବିତାଇବା ଏହି ପ୍ରାଚୀନ ଜୀବନ ଚର୍ଯ୍ୟାଠାରୁ କେତେ ଆଗରେ ତାହା ଦିବାଲୋକପରି ସ୍ୱଚ୍ଛ ।

ବିଶ୍ୱର ଗୋଟିଏ ପ୍ରାଂତରେ ଘଟିଯାଉଥିବା ବିପର୍ଯ୍ୟୟ ପ୍ରତି ପରମୁହୂର୍ତ୍ତରେ ସଚେତନ ହୋଇ ସମାଧାନର ସୂତ୍ର ଖୋଜିବାରେ ମଣିଷ ତତ୍ପର ହେବାଟି ଆତ୍ମଜ୍ଞାନ ହୋଇପାରେ । ଗୋଟିଏ ଗଣତାଂତ୍ରିକ ରାଷ୍ଟ୍ରରେ ବ୍ୟକ୍ତିଗତ ଜୀବନର ସୁରକ୍ଷା ପାଇଁ ବା ରାଷ୍ଟ୍ରର ସୁରକ୍ଷା ପାଇଁ ଅନେକ ଗଠନ ମୂଳକ ପଦକ୍ଷେପ ନିଆଯାଏ । ସେଥିରୁ ତ୍ରୁଟିବିଚ୍ୟୁତିର ଶେଷ ନିଷ୍ପତ୍ତି ଉଚ୍ଚତମ ନ୍ୟାୟାଳୟର ନିର୍ଦ୍ଦେଶକୁ ଅପେକ୍ଷା କରିଥାଏ । ସେଇଠି ବ୍ୟବସ୍ଥା ପାଇଁ ଗଢ଼ି ଉଠିଥିବା ନିୟମ ଯାହା ସତ୍ୟର ମୁଖା ପିଂଧି ଆସିଥିଲା ତାକୁ ଉଚ୍ଚତମ ନ୍ୟାୟାଳୟ ଯେଉଁ ମାନଦଂଡ଼ରେ ମାପିଲା ତାହାହିଁ ସତ୍ୟ । ତେଣୁ ଏଇ କ୍ଷେତ୍ରରେ କେଉଁଟି ସବର୍ତ୍ତକାଳୀନ ସତ୍ୟ ?

ଆମେ ଜାଣୁ ଫକିରମୋହନ ଦିନେ ନିଜର ପ୍ରତିମୂର୍ତ୍ତି ନିର୍ମାଣ କରିଥିଲେ । ଆଜିର ବାପା ତାର ପୁତ୍ରଠାରୁ ଏହା ଆଶା ନକଲେ ବି ରାଜନୀତିକ ଦୃଷ୍ଟିରୁ ବିଶ୍ୱର ସର୍ବବୃହତ୍ତମ ମୂର୍ତ୍ତି ପ୍ରତିଷ୍ଠା କରିବାର ଉଦାହରଣ ଅନେକ ରହିଛି । ପୁଣି ଧର୍ମ ଦୃଷ୍ଟିରୁ ବା ରାଜନୀତି ଦୃଷ୍ଟିରୁ ମହାପୁରୁଷମାନଂକ ମୂର୍ତ୍ତି ଭାଂଗିବାର ଅନେକ ନଜିର ଆଜି ଇତିହାସର ବିଷୟ ହୋଇଛି । ଚିହ୍ନା ଜଣା ନଥିବା ବ୍ୟକ୍ତିଙ୍କ ପ୍ରତିମୂର୍ତ୍ତି ପର୍ଯ୍ୟଟନ ସ୍ଥଳିର ମାନ୍ୟତାପାଇ ଅର୍ଥ ଆଦାୟର ମାଧ୍ୟମ ହେବା ସତ୍ୟ ନା ଆମ ସଭ୍ୟତାର ଏକ ଅଂଶ ?

କେବଳ ଆଜି ବା ଏଇ ଶତାବ୍ଦୀର କଥା ନୁହଁ ସଭ୍ୟତାର ଆଲୋକ ସ୍ପର୍ଶକଲା ଦିନରୁ ମନୁଷ୍ୟ ମୁଖାପିଂଧା ପରିବେଶକୁ ଖାପ ଖୁଆଇ ମଣିଷ ନିଜର ନିଆରା ପରିଚୟ ସୃଷ୍ଟି କରିଆସିଛି । ସଂଧ୍ୟାରେ ତିଳକ ଧାରଣ କରି ଏକନିଷ୍ଠ ଦାଂପତ୍ୟ ଜୀବନର କଥା କହୁଥିବା ମଣିଷଟି ରାତ୍ରିର ଅଂଧାର ଗଳିରେ ଲଂପଟ ସାଜିବାର ଅନେକ ନଜିର ରହିଛି । ଧର୍ମ ନାମରେ ଲୁଂଠନ, ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ମଣିଷ କେବେ ମୁଂଡ଼ରେ

ଗାଂଧୀ ଟୋପିତ ଆଉ କେବେ ଲାଲ୍‌ଝଂଡ଼ା ଧରିଥାଏ । ଏହା କେବେ ବି ବିଧି ନିର୍ଦ୍ଦେଶ ନୁହଁ । ଇଚ୍ଛାର ସମ୍ରାଟ ସ୍ୱାର୍ଥକୁ ଆଖି ଆଗରେ ରଖି ପରିଏଣ୍ଟା ପରି ରଂଗ ବଦଳାଏ - ଦୋଷ ମୁକ୍ତି ପାଇଁ ସେଇବାଣୀର ଆଶ୍ରୟ ନେଇ ଅନ୍ୟକୁ ବା ନିଜକୁ ପ୍ରବୋଧାଏ:-

"ମନ ତୋହର ନିଜ ଗୁରୁ
ଉଦ୍ଧବ କେତେ ହୋ ପଚ୍ଚରୁ ।"

ଏହା କ'ଣ ବ୍ୟକ୍ତିର ନିଜସ୍ୱ ପରିଚୟ ? ଏଇ ଭଳି ବ୍ୟକ୍ତିମାନଂକୁ ଚିହ୍ନିବାର ଆବଶ୍ୟକତା ସଂପର୍କରେ ପ୍ରାବଂଧିକ ଖୁବ୍ ସଚେତନ ।

ନିଆରା ଦୃଷ୍ଟିଭଂଗୀ ନେଇ ଜୀବନକୁ ଜୀବନ ପରି ମୂଲ୍ୟାଂକନ କରୁଥିବା ପ୍ରାବଂଧିକ ପ୍ରଫେସର ମହାଂତି ନିଜର ଅନୁଭବ ଏବଂ ସ୍ୱାଭିମାନ ପ୍ରତି ସଚେତନ ରହି ଠିକ୍ ସମୟରେ ନୈତିକ ଦାୟିତ୍ୱ ସଂପାଦିତ କରୁଥିବା ବ୍ୟକ୍ତି ସଂପର୍କରେ କହଂତି "ପିତା ମାତାଂକ ଶ୍ରାଦ୍ଧ ପରେ ଗଂଗାରେ ସେମାନଂକ ଅସ୍ଥି ବିସର୍ଜନ କରିଥିଲି । ସେମାନଂକୁ ବାହା ଦେଇଛି ପିଲାଂକ ଠାରୁ କିଛି ମାଗେ ନାହିଁ । ପିଲାଂକୁ ଉଚିତ ପାଠ ପଢ଼ାଇ ସେମାନଂକୁ କିଛି ମାଗେ ନାହିଁ । ତେଣୁ ମୁଁ ନିଜକୁ ଚିହ୍ନିଚି : ଏହା କହିଲା ବେଳେ ମଧ୍ୟ ହସ ମାଡ଼େ ।"

ଢ଼ୋକେ ପିଇ ଦଂଡ଼େ ଜୀଇବା ପାଇଁ ଯଦି କୌଣସି ରାଷ୍ଟ୍ର ବା ରାଷ୍ଟ୍ରପତି ପାଖରେ ମୁଣ୍ଡ ନୁଆଁଇ ନାହିଁ ଏହା ହିଁ ପ୍ରାବଂଧିକଂକ ପ୍ରକୃତ ପରିଚୟ । ସ୍ୱାଭିମାନ ହିଁ ତାଙ୍କ ବ୍ୟକ୍ତିଗତ ଜୀବନର ଗୌରବ Give me macho or give me death.

କାଉଁରିଆ କାଠି ଭାଂଗେ କିଂତୁ ନିଜକୁ ନୁଆଂଇ ନଥାଏ ।

ସମୟର ସୌଦାଗର ହେବା ନିଜକୁ କୌଣସି ମତେ ବଂଚେଇ ରଖିବାର ଲାଗି ସଂକୀର୍ଣ୍ଣତା ଭିତରେ ହଜି ଆତ୍ମ ପରିଚୟ ଦେବା ଲଜିଂରେ Bedsheet ବଦଳିବା ସଂଗେ ସମାନ । ନିଜର ଗୋଟିଏ ପରିଚୟ ଯାହା ଆଚରଣ ଉଚ୍ଚାରଣକୁ ଆଧାର କରି ଜୀବନ ବିତାଏ, ତାର ଦ୍ୱିତୀୟ ପରିଚୟ କିଛି ନଥାଏ । ନିଜର ନିଆରା ପୃଥିବୀରେ ପ୍ରାବଂଧିକ ଏକକ ସମ୍ରାଟ । ଅନ୍ୟକୁ ଭଲ ପାଇ ନିଜକୁ ନିବିଡ଼ ଭାବରେ ଭଲ ପାଇ କାହାଠାରୁ ଜାଣିଛେଏ ଭଲ ପାଇବା ଆଶା ରଖିନଥାଂତି ।

ପ୍ରାବଂଧିକଂକ ବୌଦ୍ଧିକ ବିଚ୍ଛାରହିଁ ତାଂକର ନିଆରାପଣର ସ୍ୱାକ୍ଷର। ପଢ଼ିଲେ ଲାଗେ ଯେମିତି "To set up an essayist is to set up the judge of values."

***

ଗଳ୍ପ : ଅଭାବିତ : ଗୋପବଂଧୁଂକ ସତ୍ୟବାଦୀ (ଜୁନ୍ - ୧୯୧୭)

"କଥାରେ ଅଛି କହି ଜାଣିଲେ କଥା ସୁଂଦର, ବାଂଧି ଜାଣିଲେ ମଥା ସୁଂଦର।" ପୁଣି ଗପ କହିବା ଗପ ଶୁଣିବା ମଣିଷର ଏକ ସହଜାତ ପ୍ରବୃତ୍ତି। ଭାଷା ଜାଣିବା ଦିନରୁ ମଣିଷ ଏ ପ୍ରକ୍ରିୟା ଜାରି ରଖିଚି।

ଘଟଣା ବହୁଳ ଜୀବନର ଅନୁଭବ ସହିତ କିଛି କଳ୍ପନାକୁ ଫେଣ୍ଟି ସ୍ରଷ୍ଟା ନିଜକୁ ମୁକ୍ତ କରିବାର ଆବେଗର ମାଧ୍ୟମ ଗପ, କବିତା, ନାଟକ, ପ୍ରବଂଧ ବା ଅନ୍ୟକିଛି ହୋଇପାରେ। ଜଣେ ଭଲ ପାଠକ ଗ୍ରଂଥରୁ କିଛି ଉପାଦାନ ସଂଗ୍ରହ କରି ମୌଳିକ ଚିଂତା ସହିତ କଳ୍ପନାର ରଂଗରେ ଯାହା ଆଂକି ଦିଏ, ତାହାକୁ କାଳ ତାର ବିଚ୍ଛରରେ ମୂଲ୍ୟାଙ୍କନ କରେ। ଜୀବନର ଗତି ସହିତ ସମୟର ଆହ୍ୱାନ ମନୁଷ୍ୟକୁ (ସ୍ରଷ୍ଟା) ଯେଉଁଭଳି ସୃଜନୀ କଳାରେ ବିବଶ କରେ ତାହା ହିଁ ତାର ସୃଷ୍ଟିର ନିଆରାପଣ ଏବଂ ସେଇ ଆଭିମୁଖ୍ୟକୁ ପ୍ରତିବିଂବିତ କରାଏ।

ସାଂପ୍ରତିକ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନ କରି ଯେଉଁ କେତେଜଣ ସାଧକ ଆଗାମୀ ପୀଢ଼ି ପାଇଁ ପାଦ ଚିହ୍ନ ଛାଡ଼ିଯାଇଛନ୍ତି ସେଥିମଧ୍ୟରୁ ପ୍ରଫେସର ପ୍ରଫୁଲ୍ଲ କୁମାର ମହାଂତି ଅନ୍ୟତମ । ତାଂକର କଥା କହିବାର ଶୈଳୀ ସହିତ ବିଷୟବସ୍ତୁର ଉପସ୍ଥାପନା ଅନେକଂକ ଭିତରୁ ବାରି ହୋଇପଡ଼େ। ସାଧାରଣ ଘଟଣାକୁ ଅସାଧାରଣ କରି ଗଢ଼ି ତୋଳିବାର ବୈଚିତ୍ର୍ୟ, ପ୍ରଫେସର ମହାଂତିଂକ କଳାତ୍ମକ ଆବେଗର ନିଖୁଣ ନିଦର୍ଶନ। ମପାଚୁପା ଶବ୍ଦ ଭିତରେ ଜୀବନକୁ ବେଶ୍ କରି ଖୋଜିବାର ପ୍ରବଣତା ହିଁ ତାଂକ ଗଳ୍ପ କଥନର ଅନ୍ୟତମ ସୌଂଦର୍ଯ୍ୟାନୁଭୂତି। ନାଟକୀୟତା ସହିତ କଥନ ଶୈଳୀ ପାଠକକୁ ଏକ ନିଆରା ପରିବେଶକୁ ଟାଣିନିଏ। ଚରିତ୍ରଗୁଡ଼ିକ ହାତ ପାଆଂତାରା ସମସ୍ୟାଗୁଡ଼ିକ ଖୁବ୍ ଆପଣାର ସେହି ଉପଲବ୍ଧିକୁ ନେଇ ତାଂକର "ଅଭାବିତ" ଆମ ସାମାଜିକ ଜୀବନର ଗୋଟିଏ ଅବଦମିତ ସତ୍ୟକୁ ଉଦ୍‌ଘାଟନ କରିଛି।

ଆଲୋଚ୍ୟ ଗଳ୍ପ ଅଭାବିତ ଓଡ଼ିଆ ଗଳ୍ପ ସାହିତ୍ୟରେ ଏକ ଅନନ୍ୟ ଉଦାହରଣ ହୋଇରହିବ। ଜୀବନରେ ଭଲପାଇବା ତାକୁ ଆଧାର କରି ବିବାହ କରିବା ଏବଂ ମନୋମାଳିନ୍ୟ ପରେ ଛାଡ଼ପତ୍ର ଦେବା ଗଳ୍ପର ହୁଏତ ଭାରତୀୟ ସାହିତ୍ୟରେ ପ୍ରବଳ ଭାବେ ଆତ୍ମ ପ୍ରକାଶ କରିଛି। ଜଣେ ସାଧାରଣ ପାଠକ ଏଇ କଥାକୁ ଗଳ୍ପର ତ୍ରୀଭୁଜଟିଏ ଆଂକିପାରେ କିଂତୁ ଆଲୋଚ୍ୟ ଗଳ୍ପଟି ଗାଳ୍ପିକ ମହାଂତିକ ମୁଗ୍ଧ ମାନସିକତାରୁ ଉତୁରିଆସି ଯେଉଁଭଳି ସ୍ୱଷ୍ଟର୍ଦ୍ଧ ଏବଂ ସ୍ମରଣୀୟ ତ୍ରିଭୁଜର ମାନ୍ୟତା ଗ୍ରହଣ କରିଛି ତାହା ଅନେକ ଆଲୋଚନାକୁ ଅପେକ୍ଷା ରଖେ।

ଗଳ୍ପର ନାଟକୀୟ ଆରଂଭ ଅବିଶ୍ୱସନୀୟ ହେଲେ ବି ଉଦ୍ଦେଶ୍ୟ ପ୍ରଣୋଦିତ ଏବଂ ସତ୍ୟ ଉପରେ ଆଧାରିତ ଯାହାକୁ ପ୍ରଥମରୁ କହିହେବ, "ଝିମିଟି ଖେଳରୁ ମହାଭାରତ" - ଗଳ୍ପର ଆରଂଭ ଶୂନ୍ୟ ଆକାଶର ଚଡ଼କ ବିଶ୍ୱବାସୀଂକୁ ଦୋହଲେଇଦେବା ଭଳି। ପାଠକଂକୁ ସ୍ୱତଃ ଆଶ୍ଚର୍ଯ୍ୟର ବଳୟ ଭିତରକୁ ଟାଣିନିଏ। ଅଂତିମ ପରିଣତି : ଖୁବ୍ ଅଶ୍ଳୀଳ ତେଣୁ ଭାବପୂର୍ଣ୍ଣ ସଂଳାପରେ ପ୍ରଶ୍ନୋତ୍ତର ଛଳରେ ପରିସମାପ୍ତି ଘୋଷଣା କରିଛି।" ମୁଁ ଏକା ନିଖୋଜ ଯାତ୍ରାରେ ଯାଉଛି ।

କିଂତୁ କାହିଁକି ?

ନିଜକୁ ଖୋଜିବା ପାଇଁ

କେଉଁଠି ଖୋଜିବ ନିଜକୁ ?

ଏଇ ମାଟି ଉପରେ।

ସୀତା ହରଣ : ରାବଣ ମରଣରେ ରାମାୟଣର ପରିଣତି ନା, ଯାରି ଭିତରେ ଅନେକ କିଛି ରହିଯିବାର ସତ୍ୟତା ରହିଛି ? ତାହା ଆମର ଚେତନାର ପରିସରକୁ ସ୍ପର୍ଶ କଲା ପରି ଶତାବ୍ଦୀ ମଣିଷର ମାନସିକତା ବା ଖିଆଲି ଭାବ କିପରି ଆମ ପାରିବାରିକ ବା ସାମାଜିକ ଜୀବନକୁ ନଷ୍ଟ କରେ ତାର ଜ୍ୱଳଂତ ନମୁନା ଆଲୋଚ୍ୟ "ଅଭାବିତ" ଗଳ୍ପ। ଭଲପାଇ ବିବାହ କରିଥିବାର ଦୁଇଟି ଚରିତ୍ର ଅଳକା ଏବଂ ଆକାଶ। ଦଶବର୍ଷର ଶୃଙ୍ଖଳିତ ରୋମାଂଟିକ ଜୀବନର ପରିସମାପ୍ତିକୁ ଅପେକ୍ଷା ନକରି ବିବାହର ଦଶମ ବାର୍ଷିକୀ ପାଳନକୁ ଝଗଡ଼ାରୁ ଆରଂଭ କରିବାର ପ୍ରାମାଣିକ ଦଲିଲ ଗଳ୍ପ ଅଭାବିତ। ଗଳ୍ପ / ଗଳ୍ପ ନାୟିକା ଅଳକାର ବିଶ୍ୱାସ ବାହରର ଏଇ ଦଖଲ ଦିଆ ଅକ୍ରୋଶ, ଯାହା

ଗଳ୍ପ ନାୟକ ଆକାଶର କଣ୍ଠରୁ ଝରିଆସିଛି। ତାହା ନାୟିକା ଅଳକା ପାଇଁ ବିଷଭରା ତୀର ସଦୃଶ୍ୟ। ବିଶ୍ୱାସ ନହେଲେ ବି ସେଇ ମନୋଭାବକୁ ଆହୁରି ଦୃଢ଼ କରିବା ଲାଗି ଅଳକା ସଂଭ୍ରମତା ରକ୍ଷା କରି କହିଛି ଜୀବନ ଭିତରେ ଆମର ଦିନେ ମୁହଁ ଫୁଲାଫୁଲି ନାହିଁ - ସେଟା କ'ଣ ଅଡୁଆ ଲାଗୁନାହିଁ? ଏଇ ଭଳି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଗଳ୍ପ ନାୟକ ଆକାଶର ଉକ୍ତି - ଝଗଡ଼ା ପାଟିତୁଣ୍ଡ ମଧ୍ୟ ଜୀବନର ଏକ ଆବଶ୍ୟକୀୟ ଅଂଗ।"

ଦାଂପତ୍ୟ ଜୀବନ ମଧ୍ୟରେ ମୁହଁ ଫୁଲାଫୁଲି ହେବା ଅଭିମାନ ସହ ଝଗଡ଼ା କରିବା ଆମ ସାମାଜିକ ଜୀବନର ଏକ ଅଂଶ। ଏହାର ସତ୍ୟତାକୁ ଆମେ ସାମ୍ନା କରୁଛୁ। କିଂତୁ ଉଦ୍ଦେଶ୍ୟମୂଳକ ଭାବେ ମୁଗ୍ଧ ଆଉ ମୁକ୍ତ ପରିବେଶକୁ କଳୁଷିତ କରିବାର ଅର୍ଥ : ଅନର୍ଥର କାରଣ ହୋଇ ଯେଉଁ ଅଭାବିତ ପରିସ୍ଥିତି ସୃଷ୍ଟି କରେ ତାର ପରିଣତିକୁ ଅପେକ୍ଷା କଲାବେଳେ ନେଡ଼ି ଗୁଡ଼ କହୁଣିକୁ ବହିଯାଇଥାଏ।

ଗଳ୍ପ ନାୟିକା ଏଇ ବାର୍ଷିକ ପରିବେଶରୁ ନିଜକୁ ମୁକୁଳେଇ ପରିବେଶକୁ ହାଲକା କରିବାକୁ ବହୁବାର ଚେଷ୍ଟା କରି ବିଫଳ ହୋଇଛି ଯାହାକୁ ଆମେ Nostalgia କହୁ - ଅଳକାର ଉକ୍ତିଟି ଏଇଠି ସ୍ମରଣୀୟ ମନେ ହୁଏ। "ଦେଖ ଆକାଶ ତମେ କହି ଆସିଚ ସେ ପ୍ରଥମ ଦେଖାରୁ ସେଇ ରେଭେନ୍ସା କଲେଜ ବାରଣ୍ଡାରୁ ତମେମତେ ଭଲ ପାଇଚ। ମୋ' ଭିତରେ ତମେ ଦେଖିଚ ପ୍ରେମ ସତ୍ୟ ଓ ଈଶ୍ୱର।"

ଉଭୟଂକ ଭଲ ପାଇବାର ଗଭୀରତା ସତ୍ତ୍ୱେ ଆକାଶର ନିଷ୍ଠୁର ଅଭିବ୍ୟକ୍ତି ଅଳକାର ସବୁ ବିଶ୍ୱାସକୁ ଧୋଇ ଦେଇଛି। ଅଳକା ପ୍ରତି ଆକାଶର ଆସକ୍ତି ମୂଳରେ ତାର ସୌଂଦର୍ଯ୍ୟା ଏବଂ ମାତ୍ରାଧିକ ଭାବେ ଭଲପାଇବାର ପରିପ୍ରକାଶ ପାଇଁ ତା' କଣ୍ଠରୁ ଝରିଆସିବା ଚଟୁବାଣୀର ସତ୍ୟତାକୁ ଉପସ୍ଥାପନା କରିବା ଲାଗି ଆକାଶର ଶେଷ ନିଷ୍ଠୁର ବକ୍ତବ୍ୟଟି ଏମିତି ଭାବେ ଅଳକାକୁ ଆଂଦୋଳିତ କରିଛି - ଯାହା ଗାଳ୍ପିକଂକ ଭାଷାରେ, "ପୁରୁଷର ଚଟୁବାଣୀ ପଛରେ ଗୋଟିଏ ଯୌନ ଭୋକ ଥାଏ। ସେ ଭୋକର ପରି ତୃପ୍ତି ପାଇଁ ସେ ଏମିତି ଅନେକ କଥା କହେ - ଏଇ ଭଳି ପାଶବିକ ଉକ୍ତିରେ ଭାଂଗିଯାଇଛି ଅଳକାର ବିଶ୍ୱାସର ବଂଧ। ତେଣୁ ସେ କହିଛି "ତା ହେଲେ ତମେ ଗୋଟିଏ ଠକ, ଭଣ୍ଡ, ମିଛୁଆ ସରକାରର ଏତେବଡ଼ ପଦବୀରେ ଥାଇ ମଧ୍ୟ ତମର ଚରିତ୍ରର ସାଧୁତା ନାହିଁ।

ବାପାଂକର ଷ୍ଟ୍ରୋକ ପରେ ଭୁବନେଶ୍ୱର ରଘୁନାଥପୁରୁ ନଯାଇ କଟକ ଯିବା ପୁଣି ଏକମାତ୍ର ପୁଅ ଗୋଲୁର ସୁଂଦର ଭବିଷ୍ୟତ ଗଢ଼ିବା ଲାଗି ତାକୁ ରଷିଭ୍ୟାଲୀରେ ପଢ଼ାଇ ବାର ସବୁ ସର୍ତ୍ତ ମୂଳରେ ଆକାଶ କିଂତୁ ନିଂଦିତ ଗଜପତି ଭଳି ଅଭାବିତ ପରିସ୍ଥିତିର କେଂଦ୍ର ବିଂଦୁ ଆଜି ଅଳକା ।

ଏ ଶତାବ୍ଦୀର ମଣିଷ ସଭ୍ୟ ଶିକ୍ଷିତ ଅଧିକ ରୋମାଂଟିକ୍ ପ୍ରବଣ ହେଲେ ବି ଜୀବନ ଅଂତ ସାରଶୂନ୍ୟ। ଅତୀତର ଜୀବନକୁ ଭୁଲିବାକୁ ସେ ଯେମିତି କହେ, "Forget the past it is related errors coutseness of parents, laxities unrealities of principle."

ଆଲୋଚ୍ୟ ଗଳ୍ପର କେଂଦ୍ର ବିଂଦୁ ଗୋଟିଏ ବାକ୍ୟ "ଆସ ଆଜି ଝଗଡ଼ା କରିବା" ଅଭାବିତ ସ୍ୱପ୍ନାବିଷ୍ଟ ନୁହ ଅତୀତର ରୋମଂଥନ। ଜୀବନର ସତ୍ୟତା ସଂଳାପରେ ନା କର୍ମପ୍ରବଣତାରେ ପ୍ରତିଫଳିତ ହେଲେ ବି ମଣିଷର ଅବଚେତନ ମନତଳେ ଜମାଟ ବାଂଧି ରହିଥିବା ଅଭିପ୍ସାର ପ୍ରତିଫଳନ। ସ୍ୱଷ୍ଟ ଦିବାଲୋକରେ ମଣିଷର ମୁଖା ବୋଲିଦିଏ।

ଘଂଟାଏ ଝଗଡ଼ା କରିବା ତାପରେ ଦୁହେଁ ମିଶି ଗାଧୁଆ ଘରେ ପଶିବା ରୋମାଂଟିକ୍ ପ୍ରବଣତା ଆଖିର ସ୍ୱପ୍ନ ନହୋଇ ଲୁହରେ ରୂପାନ୍ତରିତ ହୋଇଯାଇଛି । ଏଇଥିପାଇଁ ସଭ୍ୟ ମଣିଷର ଅସଭ୍ୟ ଆଚରଣ ହିଁ ଏକମାତ୍ର ସତ୍ୟ । ଏହା ସଭ୍ୟତାର ନୁହ ନଗ୍ନ ପାଶବିକତାର ଏକ ସଂକେତ, ଯେଉଁଠି ସ୍ୱତଃ ମଣିଷ ମାନବିକ ମୂଲ୍ୟବୋଧରୁ ଦୂରେଇ ଯାଇ ଏକ ଜାଙ୍ଗଲିକ ସଭ୍ୟତା ଭିତରକୁ ପୂର୍ବବତ୍ ଯେମିତି ଫେରିଯାଇଛ। ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଜୀବନକୁ ଯେଉଁଭଳି ଗାଳ୍ପିକ ଅଳକା ଏବଂ ଅକାଶ ଚରିତ୍ରରେ ବିଶ୍ଳେଷଣ କରିଛନ୍ତି ତାହା ପ୍ରଣିଧାନ ଯୋଗ୍ୟ।

ଗଳ୍ପଟି ସୁଖ ପାଠ୍ୟ ଏବଂ ସ୍ମରଣୀୟ ।

ବହିଘର, ଦିଗଂତ ମାର୍ଗ
ଭଂଜନଗର, ଗଂଜାମ
ମୋ : ୯୪୩୮୦୦୬୮୮୬

***

# ପ୍ରଫୁଲ୍ଲ ସୃଷ୍ଟି ମାଳିକା

ତରୁଣକାନ୍ତି ମହାନ୍ତି

ପ୍ରମୋଦିତା ପ୍ରମୋଦିନୀ( ୧ )ଙ୍କ ସାରଥୀ ସାହିତ୍ୟର ମହାରଥୀ,
ପ୍ରଦ୍ୟୁମ୍ନ( ୨ ) ଦ୍ୟୁପ୍ତିର ସ୍ରଷ୍ଟା ଶ୍ୟାମଳିମା(୩) ଶୋଭାରେ ବ୍ରତୀ;
ସରମି( ୪ ) ରହିଥାନ୍ତି ପ୍ରବନ୍ଧର ଅନ୍ତରାଳେ ଏହି ଉତ୍କଳ ଭାଷାର ଭାରତୀ।

ଆପଣଙ୍କ ପାଦେ ପ୍ରଣିପାତ କରେ ମୁଁ ତାରୁଣ୍ୟ( ୫ )ର ସଙ୍ଗୀତ(୬)ର ତାଳେ,
ସତୀଙ୍କୁ ହରାଇ ନାଥ( ୭ ) ଯେପରି ବୁଡ଼ି ରହିଥିଲେ ନିଜ ଚକ୍ଷୁର ପ୍ରେମଜଳେ;
ଜାତୀୟ ଶ୍ରଦ୍ଧା ସମ୍ମାନ ପୃଷ୍ଠଭୂମେ ସାହିତ୍ୟ ମହାସଭାର କୋଳାହଳେ।

ପୁରସ୍କାର ଅଦୃଷ୍ଟ ନିଜ ସୃଷ୍ଟିରେ ସ୍ରଷ୍ଟା ଆପଣ ନିମଗ୍ନ,
ଶୈଳ( ୮ ) ସୁତାସୁତ ଆଶୀର୍ବାଦେ ମଳିନ ଆଜି ସବୁ ବାଧାବିଘ୍ନ;
ଯଦିଚ ସାଂସାରିକ ଚିତ୍ରକାବ୍ୟ( ୯ ) କେବେ ରହେନା ଶୂନ୍ୟ।

କ୍ଲିଓପାଟ୍ରାର( ୧୦ ) ଶୋଭା ଅବା ଦ୍ରୌପଦୀର( ୧୧ ) ସତୀତ୍ୱ କିମ୍ବା କନ୍ନଡ( ୧୨ ) ଇତିହାସ,
ସରାଗ( ୧୩) ସନ୍ନ୍ୟାସୀର ଚକ୍ଷୁରେ ଆପଣ ଦେଖିଥିଲେ କଳାଜହ୍ନ( ୧୪ )ଯୁକ୍ତ ମଳାଆକାଶ;( ୧୫ )
ଇଂରାଜୀର ବ୍ୟୁତ୍ପତ୍ତି ସାଥେ ସମୃଦ୍ଧ ଓଡ଼ିଆ ସଜାଏ ଶତାବ୍ଦୀ( ୧୬) ଏକବିଂଶ।

ଅଧ୍ୟାପନା ଓ ଅଧ୍ୟୟନକୁ ନେଇ ସୃଷ୍ଟ ଆପଣଙ୍କ ନବ ମୂଲ୍ୟାୟନ,
ସ୍ୱଭାବର( ୧୭) ଅନୁବାଦ ପାଶ୍ଚାତ୍ୟ ସାହିତ୍ୟ( ୧୮ ) ଗବେଷଣା ଦରଶାଏ କ୍ରମ ଆଲୋଡ଼ନ;
ମନ୍ତ୍ରମୁଗ୍ଧ ସର୍ବେ ଶୁଣି ତବ ବାମନ ଘୋଷଯାତ୍ରାର( ୧୯ ) ଉଦାତ୍ତ ପ୍ରବଚନ।

ପ୍ରଫୁଲ୍ଲିତ ହୃଦୟ ସହ ନବଚିନ୍ତା ଓ ଚେତନାର(୨୦) ନଦାଘ(୨୧) କବି ଆପଣ,
ବିରହ ଓ ଅନ୍ୟ ବିଭାବ(୨୨) ସବୁ ନେଇ ଗଢ଼ିଛନ୍ତି କିଛି ଆକାଶ ଓ ମାଟିର ସୋପାନ(୨୩);
ପ୍ରଣାମ ମନାସି ଦେଖୁଥାଏ ଶତାବ୍ଦୀର ଶେଷ ଅଙ୍କେ ଆପଣଙ୍କ ଗୀତା ଆବାହନ।(୨୪)

ସୂଚନା : *(୧) ପ୍ରମୋଦିନୀ - ପତ୍ନୀଙ୍କ ନାମ, (୨) ପ୍ରଦ୍ୟୁମ୍ନ - ପୁତ୍ରଙ୍କ ନାମ, (୩) ଶ୍ୟାମଳୀ - ଜ୍ୟେଷ୍ଠାକନ୍ୟା, (୪) ସରମି - କନିଷ୍ଠା କନ୍ୟା, (୫) ତାରୁଣ୍ୟ - କନିଷ୍ଠ ଜାମାତା ତରୁଣ, (୬) ସଙ୍ଗୀତ - ପୁତ୍ରବଧୂ, (୭) ସତୀଙ୍କୁ ହରାଇ ନାଥ - ଜ୍ୟେଷ୍ଠ ଜାମାତା ସତୀନାଥ, (୮) ଶୈଳସୁତାସୁତ - ଶ୍ରୀଗଣେଶ - କୁଳଦେବତା, (୯) ଚିତ୍ରକାବ୍ୟ - ଘରର ନାମ, (୧୨) କନ୍ନ' ଇତିହାସ ଗବେଷଣା, (୧୬) ଏକବିଂଶ ଶତାବ୍ଦୀ - ସଂପାଦିତ ପତ୍ରିକା, (୧୭) ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ 'କୀଚକ ବଧ'ର ଇଂରାଜୀ ଅନୁବାଦ, (୧୮) ସେକ୍‌ସପିୟର ଓ ଟି.ଏସ୍.ଇଲିୟଟ୍‌ଙ୍କ ନାଟକ ଉପରେ ଗବେଷଣା, (୧୯) ଶ୍ରୀଜଗନ୍ନାଥ ରଥଯାତ୍ରାର ଜାତୀୟ ସ୍ତରରେ ଇଂରାଜୀ ଧାରାବିବରଣୀ, (୨୦) ସଂପାଦନା, (୨୪) ଶତାବ୍ଦୀର ଶେଷ ଅଙ୍କରେ ଭଗବତ୍ ଗୀତା - କେନ୍ଦ୍ରୀୟ ସାହିତ୍ୟ ଏକାଡେମି ପୁରସ୍କୃତ ଗ୍ରନ୍ଥ, ୧୦,୧୧,୧୩,୧୪,୧୫,୨୧,୨୨,୨୩ - ରଚିତ ପୁସ୍ତକ - ସରାଗ ସନ୍ନ୍ୟାସୀ, କଳାଜହ୍ନ, ମଳା ଆକାଶ, ଦ୍ରୌପଦୀର ସତୀତ୍ୱ, ନିଦାଘର କବି, ବିରହ ଓ ଅନ୍ୟ ବିଭାବମାନେ, କିଛି ଆକାଶ ଓ ମାଟି।*



# ମୁଁ ତାଙ୍କୁ ଯେପରି ଜାଣେ

ଡକ୍ଟର ହୃଷୀକେଶ ମଲ୍ଲିକ

ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ସହ ବ୍ୟକ୍ତିଗତ ଭାବେ କେବେ ଦେଖା ହେଲା ତାହା ମୋର ସଠିକ୍ ମନେ ନାହିଁ। କିନ୍ତୁ ଦେଖା ହେଲା ବେଳକୁ ସେ ଓଡ଼ିଆ ସମାଲୋଚନା ସାହିତ୍ୟର ଏକ ପ୍ରତିମାନ ହୋଇ ସାରିଥିଲେ। ପ୍ରଜ୍ଞା ଓ ନିରହଂକାରତା ଦୁଇଟି ଏକାଠି କ୍ୱଚିତ୍ ବିଦ୍ୱାନଙ୍କ ଠାରେ ଦେଖିବାକୁ ମିଳିଥାଏ। ଯାହା ମୁଁ ଏହି ମହାନୁଭବୀ ବ୍ୟକ୍ତିଙ୍କ ଠାରେ ଦେଖିଥିଲି। ସଦା ହସ ହସ, ଛଳ ଛଳ ଝରଣାଟିଏ ଯେପରି ତା'ର ସମସ୍ତ ବଣ୍ୟ-ସୁଷମାକୁ ନେଇ ବହିଯିବାକୁ ଉଦ୍ୟତ, ଏପରି ଲାଗେ।

ପ୍ରଫେସର ମହାନ୍ତି ଇଂରାଜୀ ଭାଷା-ସାହିତ୍ୟର ଅଧ୍ୟାପକ। ଏ ଭାଷା ସାହିତ୍ୟରେ ତ ଗଭୀରତା ରହିବଇ ରହିବ। କିନ୍ତୁ ଇଂରାଜୀ ସାହିତ୍ୟର ଛାତ୍ର ଓ ଅନୁଗାମୀ ହେବା ସତ୍ତ୍ୱେ ତାଙ୍କଠାରେ ଓଡ଼ିଆ ଭାଷା ଓ ସାହିତ୍ୟକୁ ନେଇ ଯେଉଁ ଗଭୀର ଜ୍ଞାନ ବିଦ୍ୟମାନ, ତାହା ତାଙ୍କ ସମକାଳୀନ କ୍ୱଚିତ୍ ବ୍ୟକ୍ତିଙ୍କ ଠାରେ ଦେଖାଯାଏ। ପ୍ରଫେସର୍ ବିଧୁଭୂଷଣ ଦାସ, ପ୍ରଭାତନଳିନୀ ଦାସ, ଯତୀନ୍ଦ୍ରମୋହନ ମହାନ୍ତିଙ୍କ ସାରଣୀରେ ଶୋଭା ପାଉଥିବା ସେ ଅନ୍ୟତମ ନକ୍ଷତ୍ର। ସାରଳା ଦାସଙ୍କ ଠାରୁ ଆରମ୍ଭ କରି ସୌରୀନ୍ଦ୍ର ବାରିକଙ୍କ ଯାଏଁ ଓଡ଼ିଆ ସାହିତ୍ୟର ନାଡ଼ିନକ୍ଷତ୍ର ତାଙ୍କୁ ଜଣା। ନାଟକ ଆଦି ସୃଜନଶୀଳ ସାହିତ୍ୟରେ ଲେଖନୀ ଚାଳନା କରି ସଫଳତାର ଅଧିକାରୀ ହୋଇଥିଲେ ବି ମୁଖ୍ୟତଃ ଓଡ଼ିଆ ସାହିତ୍ୟ ତାଙ୍କୁ ଚିହ୍ନେ ଜଣେ ଦୂରଦୃଷ୍ଟି ସଂପନ୍ନ ସମାଲୋଚକ ଭାବେ। 'ବିରହ ଓ ଅନ୍ୟ ବିଭାବ ମାନେ' ଭଳି ଉଚ୍ଚକୋଟୀର ସମାଲୋଚନାଗ୍ରନ୍ଥର ସେ ପ୍ରଣେତା। ଶ୍ରୀମଦ୍ ଭଗବଦ୍ ଗୀତା ଉପରେ ତାଂକର ଥିବା ପାଣ୍ଡିତ୍ୟ ଓ ମୌଳିକ ଅନୁଶୀଳନକୁ ମନଦେଇ ଅନୁଧ୍ୟାନ କଲେ ତାଂକ ସମାଲୋଚକୀୟ ଉଚ୍ଚତାର ଆକଳନ କରିହୁଏ।

ପ୍ରଫେସର୍ ମହାନ୍ତିଙ୍କ ଅନ୍ତଃସ୍ଥଳରେ ମନେହୁଏ ଯେପରି କୋଟିଏ ମହୁମାଛି ଭଲପାଇବାର ଗୀତ ଗାଇ ବସା ବାଂଧିଛନ୍ତି। ଯେକୌଣସି ପ୍ରସଂଗ ହେଉ, ଏହି ମହୁଫେଣାରେ ଟିକେ ଜିଜ୍ଞାସାର ନିଆଁ ବଢ଼ ଚେଇଁଦେଲେ ସେ ମୁକୁଳି ପଡ଼ନ୍ତି ତାଙ୍କ ଜୀବନର ସବୁତକ ଅଧ୍ୟୟନଗତ ସାଧନକୁ ନେଇ। ପୁରୁଣାକୁ ନୂଆ ବାଗରେ ଦେଖିବାର ପ୍ରଦୀପଟିଏ ଯେ ତାଂକ ଭିତରେ ଦିକି ଦିକି ହେଇ ଜଳୁଥାଏ, ଏହା ତାଂକ ଲେଖାମାନ ପଢ଼ିଲେ ଜାଣିହୁଏ। ସେ ଆମ ସମୟର ଜଣେ ଖୁବ୍ ସୃଜନଦୀପ୍ତ ଅନୁବାଦକ। ଗଙ୍ଗାଧରଙ୍କ 'କୀଚକ ବଧ', ମନୋରଞ୍ଜନଙ୍କ 'କାଠଘୋଡ଼ା' ଓ ପ୍ରତିଭା ରାୟଙ୍କ 'ମଗ୍ନମାଟି'ର ସେ ଇଂରାଜୀ ଅନୁବାଦ କରିଛନ୍ତି।

ତାଙ୍କର ଅନ୍ୟ ପରିଚୟ ହେଲା ପ୍ରଶାସନିକ ପରିଚୟ। ରେଭେନ୍ସା ମହାବିଦ୍ୟାଳୟ ହେଉ କି ଖଲିକୋଟ ମହାବିଦ୍ୟାଳୟ ହେଉ, ଯେଉଁଠି ସେ ଅଧକ୍ଷ ଭାବେ କାର୍ଯ୍ୟ କରିଛଂତି, ସେଠାରେ ସେ ତାଙ୍କ ପଦଚିହ୍ନ ଛାଡ଼ି ଆସିଛନ୍ତି। ଲେଖକ ଓ ପ୍ରଶାସକ ଭାବେ ତାଂକ ସ୍ୱାଭିମାନର ଅନ୍ତ ନାହିଁ। ପରମ୍ପରା ଅନୁସାରେ ରେଭେନ୍ସା ମହାବିଦ୍ୟାଳୟର ଅଧକ୍ଷମାନେ ହିଁ ପରବର୍ତ୍ତୀ ପର୍ଯ୍ୟାୟରେ ଉଚ୍ଚଶିକ୍ଷା ବିଭାଗର ନିର୍ଦ୍ଦେଶକ ଭାବେ ନିଯୁକ୍ତ ହୋଇଥାନ୍ତି। କିନ୍ତୁ ପ୍ରଫେସର୍ ମହାନ୍ତିଙ୍କ କ୍ଷେତ୍ରରେ ଏହା ବ୍ୟତିକ୍ରମ କରାଯିବାରୁ ସେ ଅବଶ୍ୟ ଆଘାତ ପାଇଥିବେ। କିନ୍ତୁ ପାହାଡ଼ କାହାର ପଦାଘାତରେ କେବେ ଦବିଯାଏ ନାହିଁ କି ମୁଣ୍ଡ ନୁଆଇଁ ନାହିଁ। ମେଘ ତା' ଦେହରେ ଧକ୍କା ଖାଇ ମାଟିକୁ ଓହ୍ଲାଏ। ସ୍ୱାଭିମାନୀ ପ୍ରଫେସର୍ ମହାନ୍ତି ବରଂ ଚାକିରିକୁ ଛି' କରି ଦେଇଛନ୍ତି। କିନ୍ତୁ ନିଜର ସ୍ୱାଭିମାନକୁ କେବେ କି ଜଳାଞ୍ଜଳି ଦେଇ ନାହାନ୍ତି।

ଅଶୀ ଦଶକର କଥା, 'ସାଂପ୍ରତିକ' ସାହିତ୍ୟ ଅନୁଷ୍ଠାନ ପକ୍ଷରୁ ପ୍ରଫେସର୍ ନିତ୍ୟାନନ୍ଦ ଶତପଥୀଙ୍କ ଉଦ୍ୟମରେ ବାଙ୍ଗାଲୋର୍‌ରେ କନ୍ନଡ଼ ଓ ଓଡ଼ିଆ ସାହିତ୍ୟର ଏକ ଦ୍ୱିପାକ୍ଷିକ ସାହିତ୍ୟ ସମ୍ମେଳନ ଅନୁଷ୍ଠିତ ହେଉଥାଏ। ସମ୍ମେଳନ ଆଗରୁ ଏହାକୁ ସଂଗଠିତ କରିବାପାଇଁ ମୁଁ ଓ ମୋର ବନ୍ଧୁ ପ୍ରଫେସର୍ ବସନ୍ତ କୁମାର ପଣ୍ଡା ଆଗତୁରା ବାଙ୍ଗାଲୋର ଯାଇଥାଉଁ। ଅନ୍ୟ ସାହିତ୍ୟିକଙ୍କ ସହ ପ୍ରଫେସର ମହାନ୍ତି ବାଙ୍ଗାଲୋରରେ ପହଞ୍ଚିଥିଲେ ଓ ଦୁଇଦୁନିଆ ଏଇ ସମ୍ମେଳନର ପ୍ରଥମ ଦିନରେ ଓଡ଼ିଆ କଥା ସାହିତ୍ୟ ସଂପର୍କରେ ତାଙ୍କର ଅଭିଭାଷଣ ପ୍ରଦାନ କରିଥିଲେ। ସେ ଅଭିଭାଷଣ ଯିଏ ଶୁଣିଛନ୍ତି, ସେ ଆଜିଯାଏଁ ଅବଶ୍ୟ ମନେ ରଖିଥିବେ ତାଙ୍କର ବିଦ୍‌ବତ୍ତାକୁ। ତା'ପରେ ଦିଲ୍ଲୀରେ ଅନୁଷ୍ଠିତ 'ସାଂପ୍ରତିକ'ର

ଦ୍ୱି-ଭାଷିକ ସମ୍ମେଳନକୁ ପ୍ରଫେସର୍ ମହାନ୍ତିଙ୍କ ସହ ସାଂଗହୋଇ (ଅନ୍ୟ ଲେଖିକା, ଲେଖକଙ୍କ ଗହଣରେ) ଯିବାର ସୌଭାଗ୍ୟ ମୋର ହୋଇଛି। ସାଂଗମେଳରେ କଥା ହେଲା ବେଳେ କି ତାଂକର କହିବା ଭଂଗୀରେ ଏକ ଜୀବନ୍ତ ଦୃପ୍ତିଥାଏ। ବୟସ ନିର୍ବିଶେଷରେ ସମସ୍ତେ ଯେପରି ତାଙ୍କର ସମବୟସୀ ଓ ସମଧର୍ମୀ - ଏପରି ସେମାନେ କହନ୍ତି।

ଅନ୍ୟ ଏକ ଅନୁଭୂତିର କଥା କହିବି। ତାହା ହେଉଛି ରେଭେନ୍ସା ମହାବିଦ୍ୟାଳୟରେ ସେ ଅଧକ୍ଷ ଥିବା ବେଳର କଥା। ମୁଁ ସେତେବେଳକୁ ରେଭେନ୍ସାରୁ ବଦଳି ହୋଇ ଫକୀରମୋହନ ମହାବିଦ୍ୟାଳୟକୁ ଚାଲିଯାଇଥାଏ। କିନ୍ତୁ ମୋ ପରିବାର କଟକରେ ଓମ.ଏମ.ପି ଛକରେ ଥିବା ସରକାରୀ କ୍ୱାର୍ଟର୍ସରେ ରହୁଥାନ୍ତି। କାରଣ ପିଲାମାନେ କଟକରେ ପଢୁଥାନ୍ତି। ସରକାରୀ ନିୟମ ଅନୁସାରେ ବଦଳି ହୋଇ ଯିବାର ଅନ୍ତତଃ ତିନିମାସ ମଧରେ କ୍ୱାର୍ଟର୍ସ ଛାଡ଼ିବା କଥା। ମୋତେ କଲେଜ ପକ୍ଷରୁ ନୋଟିସ୍ ହେଉଥାଏ। ମୁଁ କିନ୍ତୁ ପରିସ୍ଥିତି ଦୃଷ୍ଟିରୁ କ୍ୱାର୍ଟର୍ସ ଛାଡୁନଥାଏ। ଥରେ ଅଧକ୍ଷ ମହାନ୍ତି ମୋତେ ଡକାଇ ପଠାଇଲେ। ମୁଁ ଯାଇ ତାଙ୍କୁ ଭେଟିଲି ତାଙ୍କ ପ୍ରକୋଷ୍ଠରେ। ସେ ହସି ହସି କହିଲେ - 'ତମେ କ୍ୱାର୍ଟର୍ସ ଛାଡୁନାଁ କାହିଁକି ?' ସେ ମୋତେ ବ୍ୟକ୍ତିଗତ ଭାବେ ଆଗରୁ ଜାଣିଥିବାରୁ 'ତମେ' ବୋଲି ସମ୍ବୋଧନ କରିଥିଲେ। ମୁଁ ତାଙ୍କ ସାହିତ୍ୟ ବିଷୟକୁ ଆଲୋଚନାର ମୋଡ଼ ବଦଳାଇ କ୍ୱାର୍ଟର୍ସ ପ୍ରସଙ୍ଗକୁ ଗୌଣ କରିଦେବାର ଲକ୍ଷ୍ୟରେ ଥାଏ। ସେ କିନ୍ତୁ ନଛୋଡ଼୍ ବନ୍ଧା। ଯୁଆଡ଼କୁ କଥା ବୁଲାଇଲେ ବି ତାଙ୍କର ବକ୍ତବ୍ୟ କେନ୍ଦ୍ରିତ ଥାଏ ମୋ' କ୍ୱାର୍ଟର୍ସ ଛାଡ଼ିବା ପ୍ରସଙ୍ଗରେ। ସେତେବେଳେ ସେ ଲେଖକ ପ୍ରଫୁଲ୍ଲ କୁମାର ମହାନ୍ତି ନ ଥା'ନ୍ତି, ଥା'ନ୍ତି ରେଭେନ୍ସା ମହାବିଦ୍ୟାଳୟର ଅଧକ୍ଷ - ଏକଥା ମୁଁ ବୁଝିପାରି ସିଧା ସଳଖ କ୍ୱାର୍ଟର୍ସ ଛାଡ଼ିବାର ପ୍ରତିଶ୍ରୁତି ଦେଇ ତାଙ୍କ ଠୁଁ ବିଦାୟ ନେଲି। ଏହା ଉଲ୍ଲେଖ କରିବାର କାରଣ ହେଉଛି, ପ୍ରଫେସର୍ ମହାନ୍ତି ଯେତେବେଳେ ଯେଉଁ ଭୂମିକାରେ ଥାଆନ୍ତି, ସେଇ ଭୂମିକାରେ ସେ ସଫଳ ଅଭିନୟ କରିଥାନ୍ତି। କ୍ୱଚିତ୍ ପ୍ରଶାସକଙ୍କ ଠାରେ ଏପରି ଆସକ୍ତିଶୁନ୍ୟ ପ୍ରଶାସନିକ ଗୁଣ ଦେଖିବାକୁ ମିଳିଥାଏ।

ମୋତେ ଓ ବିଶେଷକରି ମୋ' କବିତାକୁ ପ୍ରଫେସର୍ ମହାନ୍ତି ଖୁବ୍ ଭଲ ପାଆନ୍ତି। (ମାଉସୀ) ତାଙ୍କ ପତ୍ନୀ ବି ମୋ କବିତା ପଢ଼ନ୍ତି। ମୋର ପ୍ରାୟ ବହି ମୁଁ ତାଙ୍କୁ ଦେଇଥାଏ। ସେ ମୋ କବିତା ପଢ଼ିବା ସହିତ ତାଙ୍କ ଅନୁଭବକୁ ଏକ ନିବନ୍ଧ ଆକାରରେ ମୋତେ

ଲେଖିଦେଇଥିଲେ। ଯାହା ଡ. ହରିଶ୍ଚନ୍ଦ୍ର ବେହେରାଙ୍କ ସଂପାଦିତ 'ଅକ୍ଷାଂଶ' ପତ୍ରିକାର ଏକ ପୂଜା ସଂଖ୍ୟାରେ ପ୍ରକାଶ ପାଇଥିଲା। ଈଶ୍ୱର ତାଙ୍କୁ ଶାରୀରିକ ଭାବେ ଅନେକ ଯାତନା ଭୋଗ ଦେଇ ମଝିରେ ମଝିରେ ତାଂକ ଧୈର୍ଯ୍ୟର ପରୀକ୍ଷା କରିଛନ୍ତି। କିନ୍ତୁ ଦୃଢ଼ ଇଚ୍ଛାଶକ୍ତି ବଳରେ ସେ ସବୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଆଜି ଅଶୀ ବର୍ଷ ବୟସରେ ପଦାର୍ପଣ କରିଛନ୍ତି। ସେ ଶତାୟୁ ହେବେ। ଏ ବିଶ୍ୱାସ ମୋର ରହିଛି। ଇତି ମଧ୍ୟରେ ସେ ମୋର ଖୁବ୍ ନିକଟତମ ହୋଇ ଯାଇଛନ୍ତି। ସଂପର୍କ ଆନୁଷ୍ଠାନିକତା ଅତିକ୍ରମ କରି ପାରିବାରିକ ହୋଇଛି।

ଉତ୍ତର ଭୁବନେଶ୍ୱରକୁ ସ୍ଥାୟୀ ବାସସ୍ଥାନ ଭାବେ ବାଛିନେବା ପରେ ତାଙ୍କ ଘରକୁ ମୁଁ କେତେବାର ଯାଇଛି। ପାଖାପାଖି ବସି ସୁଖଦୁଃଖ ହେଇଛୁଁ। ଖୁବ୍ ନିକଟତର। ପ୍ରତିଭା ରାୟଂକ 'ଯାଜ୍ଞସେନୀ'ର ଶହେତମ ପ୍ରକାଶନ ଉତ୍ସବ (ମେ' ଫେୟାର ହୋଟେଲ)ରେ ତାଙ୍କ ସହ ମୋର ଭେଟ ହୋଇଥିଲା। ସେ କହିଲେ – 'ହୃଷୀ ତମେ ଏତେ ପାଖରେ ଅଛ, ଆସୁନାହଁ କାହିଁକି ? ନ ଆସିଲେ, ଟେଲିଫୋନ୍ ତ ଅଛି, କଥା ହେଉ ନାହଁ କାହିଁକି ? ତମେ ତ ଧରିତ୍ରୀ ଏଡ଼ିଟର ଅଛ। ଭଲ କଥା। ତା'ର ସାପଂଦକୀୟ ପୃଷ୍ଠାରେ ଏଣିକି ମୁଁ ଲେଖିବି। ତମେ ତାଗିଦ୍ କରି ଲେଖା ନେବ। ଅଶୀ ବର୍ଷ ଛୁଇଁଥିବା ଜଣେ ରୋଗଦୀର୍ଣ୍ଣ ବ୍ୟକ୍ତିଙ୍କର ଲେଖିବା ପ୍ରତି ଏ ଆସକ୍ତି ଦେଖି ମୁଁ ଅଭିଭୂତ ହୋଇଥିଲି। ମନେ ମନେ ମା' ଶ୍ରୀଅରବିନ୍ଦଙ୍କୁ ପ୍ରାର୍ଥନା କରିଥିଲି। – "ପ୍ରଭୁ ! ଏଇ ଜୀବନ-ରଂଗ ମଣିଷଟିକୁ ଦୀର୍ଘାୟୁ କର। ନୀରୋଗ ରଖ ଓ ତାଙ୍କ ଲେଖନୀରେ ଅଭୂତପୂର୍ବ 'ବାକ୍'ରେ ନିଜକୁ ପ୍ରକଟ କର। ଏ ପ୍ରାର୍ଥନା ପ୍ରଫେସର ମହାନ୍ତିଙ୍କ ପାଇଁ ମୁଁ ବରାବର କହିଥାଏ। ସେ ଏବେ 'ଜ୍ଞାନପୀଠ' ପାଇଁ ଓଡ଼ିଆ ଭାଷା କମିଟିର ଆବାହକ ମନୋନୀତ ହୋଇଛନ୍ତି। ଏହା ଆମ ସମସ୍ତଙ୍କ ପାଇଁ ଗର୍ବର ବିଷୟ। ତାଙ୍କୁ ମୋର ଗଭୀରତମ ଅଭିନନ୍ଦନ।

ମିରା ପୟର, ୩୩୧/୧୯.୦୫/୪୦
ଶ୍ରୀଅରବିନ୍ଦ ନଗର
ଚନ୍ଦ୍ରଶେଖରପୁର
ଭୁବନେଶ୍ୱର – ୭୫୧୦୧୬
ମୋ : ୯୮୫୩୨୮୭୭୫୫

# ମାନବପ୍ରେମୀ ସାରସ୍ୱତ ସାଧକ

ପ୍ରଫେସର ଉପେନ୍ଦ୍ର ପ୍ରସାଦ ନାୟକ

ଏ ଅଖଣ୍ଡ ବିଶ୍ୱରେ ଏମିତି ଜଣେ ଜଣେ ମହାନ୍ କୀର୍ତ୍ତିଧର ଯଶସ୍ୱୀ ସାଧକ ଜନ୍ମଗ୍ରହଣ କରିଥାନ୍ତି, ଯେ କି ନିଜେ ମାନବ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ପ୍ରତିଟି ଜନଗଣଙ୍କୁ ଅନ୍ତରଙ୍ଗ ଭାବେ ଭଲପାଇବା ସଙ୍ଗେ ସଙ୍ଗେ କୋଟି ଜନଗଣଙ୍କ କଲ୍ୟାଣ ନିମନ୍ତେ ନାନାଦି କାର୍ଯ୍ୟ କରି ଜନମାନସରେ ଚିର ସ୍ମରଣୀୟ ହୋଇପାରନ୍ତି । ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି ସେହିପରି ଜଣେ ବ୍ୟକ୍ତିସତ୍ତା ଯେ କି ଜଣେ ଇଂରାଜୀ ଭାଷା ସାହିତ୍ୟର ସ୍ୱନାମଧନ୍ୟ ଶିକ୍ଷାବିତ୍ ଭାବେ ପ୍ରତିଷ୍ଠାଲାଭ କରିବା ସଙ୍ଗେ ସଙ୍ଗେ ଜଣେ ଯଶସ୍ୱୀ ସାରସ୍ୱତ ସାଧକଭାବେ ନିଜକୁ ପ୍ରତିଷ୍ଠିତ କରିପାରିଛନ୍ତି ।

ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି ଓଡ଼ିଶାର ଶିକ୍ଷା ଜଗତ ତଥା ସାହିତ୍ୟ ଜଗତରେ ଏକ ଶ୍ରଦ୍ଧାଶୀଳଉଚ୍ଚାରଣ । ଇଂରାଜୀ ଭାଷା ସାହିତ୍ୟରେ ଶିକ୍ଷାଦାନ କରି ଜଣେ ଛାତ୍ରବତ୍ସଳ ଅଧାପକ ଭାବେ ସାରା ଓଡ଼ିଶାରେ ଲୋକପ୍ରିୟତା ଅର୍ଜନ କରିବା ସହିତ ଜଣେ ଶିକ୍ଷା ପ୍ରଶାସକ ଭାବେ ରେଭେନ୍‌ସା ଓ ଖଲ୍ଲିକୋଟ ପରି ମହାନ୍ ଶିକ୍ଷାନୁଷ୍ଠାନର ଅଧକ୍ଷ ଭାବେ ଖ୍ୟାତି ଅର୍ଜନ କରିପାରିଛନ୍ତି ।

ଉଭୟ ଓଡ଼ିଆ ଓ ଇଂରାଜୀ ସାହିତ୍ୟର ବିଭିନ୍ନ ବିଭବ ଉପରେ ଲେଖନୀ ଚାଳନା କରି ଅଶେଷ ଲୋକପ୍ରିୟତା ଅର୍ଜନ କରିବା ସଙ୍ଗେ ସଙ୍ଗେ ଉଭୟ ଓଡ଼ିଆ ଓ ଇଂରାଜୀ ସାହିତ୍ୟଭଣ୍ଡାରକୁ ବହୁଭାବରେ ସମୃଦ୍ଧ କରିପାରିଛନ୍ତି ।

ଡକ୍ଟର ମହାନ୍ତିଙ୍କର ରଚନା ଶୈଳୀ ଏବଂ ତାଙ୍କ ବିଚାର ବିମର୍ଶର ଧାରା ସଂପୂର୍ଣ୍ଣ ନିଆରା । ଜଣେ ମହାନ୍ ପ୍ରଜ୍ଞାଦୀପ୍ତ ସମାଲୋଚକ ଭାବେ ତାଙ୍କର ଅକଳନ ପ୍ରତିଷ୍ଠା ତାଙ୍କୁ ସାହିତ୍ୟ ଜଗତରେ ଏକ ଶୋଭାବନ୍ତ ଶିଖର ପ୍ରଦେଶରେ ଅଧିଷ୍ଠିତ କରିପାରିଛି ।

ସାହିତ୍ୟର ବିଭିନ୍ନ ବିଭାଗରେ ସେ ଲେଖନୀ ଚାଳନା କରି ଯଶସ୍ୱୀ ହୋଇଥିଲେ ମଧ୍ୟ ଜଣେ ସୁସମାଲୋଚକ ଓ ପ୍ରାବନ୍ଧିକ ଭାବେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ । ତାଙ୍କ ସମାଲୋଚନାର ନିରପେକ୍ଷତା ଏବଂ ଯୁକ୍ତିନିଷ୍ଠ ବିଶ୍ଳେଷଣର ପଟାନ୍ତର ନାହିଁ । ତାଙ୍କ ରଚନାର ଧାରା ସାଧାରଣ ଆଲୋଚନାର ଧାରାଠାରୁ ବହୁ ଊର୍ଦ୍ଧ୍ୱରେ । ତାଙ୍କ ସମାଲୋଚନାର ସ୍ୱତନ୍ତ୍ର ଶୈଳୀ ଏବଂ ଅନୁଶୀଳନ ତଥା ଅନୁଧ୍ୟାନର ମାର୍ଗ କଥାକଥିତ ଆଲୋଚନର ଭଙ୍ଗୀରୁ ଯେ ସଂପୂର୍ଣ୍ଣ ସ୍ୱତନ୍ତ୍ର, ଏଥିରେ ସଂଦେହ ନାହିଁ । ସେ ଯେଉଁ ବକ୍ତବ୍ୟ ଉପସ୍ଥାପିତ କରନ୍ତି ବା ଯେଉଁ ଅଭିବ୍ୟକ୍ତି ବ୍ୟକ୍ତ କରନ୍ତି, ତହିଁରେ ସେ ଯଥେଷ୍ଟ ପ୍ରମାଣ ତଥା ପ୍ରାସଙ୍ଗିକ ଦୃଷ୍ଟାନ୍ତର ଆଲେଖ୍ୟ ବର୍ଣ୍ଣନା କରିଥାଆନ୍ତି । ଏଥିରୁ ତାଙ୍କର ପ୍ରଜ୍ଞା, ଗଭୀରତା ଏବଂ ଅଧ୍ୟୟନର ପରିସର ସ୍ପଷ୍ଟ ପ୍ରତିବିମ୍ବିତ ହୁଏ ।

ବିଭିନ୍ନ ସାହିତ୍ୟ ସଂସ୍କୃତି ଅନୁଷ୍ଠାନର ଆଲୋଚନା ସଭା, ସମ୍ମାନ ଏବଂ କର୍ମଶାଳା ଆଦିରେ ସଭାମୁଖ୍ୟ, ମୁଖ୍ୟ ଅତିଥି ଭାବେ ଯୋଗଦେଇ ଅନର୍ଗଳ ଔଜସ୍ୱିନୀ ଭାଷଣରେ ସେ ଯେପରି ଦର୍ଶକମଣ୍ଡଳୀଙ୍କୁ ଚମତ୍କୃତ କରିଥାନ୍ତି ସେହିପରି ବିଭିନ୍ନ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ଯୋଗଦାନ କରି ଛାତ୍ରଛାତ୍ରୀ ତଥା ଅଧ୍ୟାପକ ଅଧ୍ୟାପିକାଙ୍କ ଗହଣରେ ବକ୍ତବ୍ୟ ଉପସ୍ଥାପନ କରି ଲୋକପ୍ରିୟତା ଅର୍ଜନ କରିପାରନ୍ତି । ତେଣୁ ଜଣେ ଉଚ୍ଚମାନର ବାଗ୍ମୀ ଭାବରେ ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି ଓଡ଼ିଶାରେ ବହୁଭାବରେ ପ୍ରଶଂସିତ ଓ ପ୍ରଚାରିତ । ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରେ ତାଙ୍କର ଓଜସ୍ୱିନୀ ଭାଷଣ ପ୍ରଦାନ କରିବାର ଦକ୍ଷତା ସର୍ବଜନ ସ୍ୱୀକାର୍ଯ୍ୟ ।

ମନନଧର୍ମୀ ବକ୍ତୃତା ଓ ସୃଜନଶୀଳ ସ୍ୱତନ୍ତ୍ର ସମାଲୋଚନା ବ୍ୟତୀତ ଡକ୍ଟର ପ୍ରଫୁଲ୍ଲ ମହାନ୍ତି ମଧ୍ୟ ଜଣେ ସୃଜନଶୀଳ ସ୍ରଷ୍ଟା ଭାବେ ବହୁ ଯଶର ଅଧିକାରୀ । ତାଙ୍କ ରଚନାର ମୌଳିକ ଚିନ୍ତା ଏବଂ ରଚନାର ଉଭୟ ଅଙ୍ଗ ଓ ଆତ୍ମା ଅତ୍ୟନ୍ତ ସ୍ପଷ୍ଟ ଓ ପରିଚ୍ଛନ୍ନ । କଂଚା ହାତର ଲେଖକ ନହୋଇ ଥିବାରୁ ତାଙ୍କ ଚିନ୍ତା-ଚେତନା ଦିଗ୍‌ବଳୟ ଅତ୍ୟନ୍ତ ସୁଦୂରପ୍ରସାରୀ । ସମାଲୋଚନା ବ୍ୟତୀତ ସେ ନାଟକ, ଗଳ୍ପ ଓ ସ୍ତମ୍ଭ ରଚନା ସହିତ ଅନୁବାଦ, ସମ୍ପାଦନା ଓ ସଂକଳନ କ୍ଷେତ୍ରରେ ମଧ୍ୟ ତାଙ୍କର ଅପୂର୍ବ ପାରଦର୍ଶିତା ପ୍ରଦର୍ଶନ କରିପାରିଛନ୍ତି । ତାଙ୍କ ସମାଲାଚନା ଗ୍ରନ୍ଥମାନଙ୍କ ମଧ୍ୟରେ 'ବିରହ ଓ ଅନ୍ୟ ବିଭବମାନେ', 'ଭାରତୀୟ ସଂସ୍କୃତି ଓ ଭଗବତ୍ ଗୀତା', 'କିଛି ମାଟି କିଛି ଆକାଶ',

'ସାହିତ୍ୟରେ ଜୀବନରାଗ' ଓ 'ନିଦାଘରେ କବି' ଆଦି ପ୍ରଧାନ । ରାମାୟଣ ଓ ମହାଭାରତ ପରି ମହାକାବ୍ୟର ତତ୍ତ୍ୱାନୁଶୀଳନରେ ତାଙ୍କର ରଚିତ ଗ୍ରନ୍ଥ 'ଇଚ୍ଛାର ପୃଥିବୀ' ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର ସ୍ଥାନ ଦାବୀ କରେ । ତାଙ୍କର ରଚିତ ନାଟକାନଙ୍କ ମଧ୍ୟରେ 'ମଲା ଜହ୍ନ', 'ସରାଗ ସନ୍ନ୍ୟାସୀ', 'କଳାଜହ୍ନ' ଓ 'ଝରା କୁହେଳୀ' ଆଦି ପ୍ରଧାନ । ଏତଦ୍‌ବ୍ୟତୀତ ତାଙ୍କର ବହୁ ନାଟକର ପାଣ୍ଡୁଲିପି ନଷ୍ଟପ୍ରାୟ । ତାଙ୍କ ଗଳ୍ପ ସଂକଳନ - 'ଶେଷ ଅପେକ୍ଷା' ଓଡ଼ିଆ କଥା ସାହିତ୍ୟରେ ଅନ୍ୟତମ ଅବଦାନ ।

ଡକ୍ଟର ପ୍ରଫୁଲ୍ଲ ମହାନ୍ତିଙ୍କ ରଚିତ ଇଂରାଜୀ ପୁସ୍ତକମାନଙ୍କ ମଧ୍ୟରେ Stories from Sarala Mahabharat', 'Reigion, Democracy and other reflections', 'Ideas and Themes', 'Festivals of Odisha', Poetry - Luminous Illusions, Editing - 'And Quiet flows the Mahanadi' (Stories), Best stories of Prativa Ray. ଅନୁବାଦ ଇଂରାଜୀରେ ଗଙ୍ଗାଧର ମେହେରଙ୍କ 'କିଚକ ବଧ', ପ୍ରତିଭା ରାୟଙ୍କ 'ମଗ୍ନମାଟି', ମନୋରଂଜନ ଦାସଙ୍କ 'କାଠଘୋଡ଼ା' ଆଦି କରିଥିବାବେଳେ ଇଂରାଜୀରୁ ଓଡ଼ିଆରେ 'କନ୍ନଡ଼ ସାହିତ୍ୟର ଇତିହାସ' ଅନୁବାଦ କରିଅଛନ୍ତି । ଇଂରାଜୀ ସମାଲୋଚନା ଗ୍ରନ୍ଥ Post Independence Odia Poetry ଓ Odia Fiction ରଚନା କରି ଉଭୟ ଓଡ଼ିଆ ଓ ଇଂରାଜୀ ସାହିତ୍ୟକୁ ସମୃଦ୍ଧ କରି ସ୍ମରଣୀୟ ହୋଇଅଛନ୍ତି । ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ବହୁ ସରକାରୀ ଓ ବେସରକାରୀ ଅନୁଷ୍ଠାନ ପକ୍ଷରୁ ମଧ୍ୟ ପୁରସ୍କୃତ ଓ ସମ୍ମାନିତ ହୋଇଅଛନ୍ତି ।

ଏତାଦୃଶ ସାହିତ୍ୟିକ ପ୍ରତିଭା ବ୍ୟତୀତ ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି ଜଣେ ମାନବପ୍ରେମୀ ମଣିଷ ପରି ମଣିଷ । ମଣିଷକୁ ଭଲ ପାଇବାରେ ସେ ଯେତିକି ଉଦାର, ସ୍ୱାଭିମାନ ତଥା ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାରେ ସେ ତତୋଧିକ କଠୋର । ଅନ୍ୟାୟ, ଅନୀତି, ଅବିଚାର ସହି ସାଧାରଣ ଭାବେ ମୀମାଂସା କରିବାରେ ସେ ପକ୍ଷପାତି ନୁହଁନ୍ତି । ଏପରି ବହୁ ଦୃଷ୍ଟାନ୍ତ ତାଙ୍କ ଜୀବନଚର୍ଯ୍ୟାରୁ ଦେଖିବାକୁ ମିଳିଥାଏ ।

ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ସହିତ ମୋର ପରିଚୟ ଓ ସଂପର୍କ ଦୀର୍ଘ ଚାଳିଶ ବର୍ଷର । ପ୍ରଥମେ ତାଙ୍କର ଚିକିତ୍ସାରୁ ପରିଚୟ ଆରମ୍ଭ ହୋଇଥିଲେ ହେଁ

ପରବର୍ତ୍ତୀ ସମୟରେ ତାହା ପାରିବାରିକ ସଂପର୍କରେ ପରିଣତ ହୋଇଛି ଏବଂ ତାହା ଆଜିଯାଏ ଅତୁଟ ରହିପାରିଛି । ମାନବପ୍ରେମୀ ମଣିଷଙ୍କର ଏହା ହିଁ ପ୍ରଧାନ ଗୁଣ । ସେ କହନ୍ତି – ମନୁଷ୍ୟ ଯଦି ତା'ର ମାନବିକତା ରକ୍ଷା କରିନପାରେ, ଯଦି ତା'ର ମାନବଧର୍ମ ରକ୍ଷା ନ କରିପାରେ ସେ ମାନବ ପଦବାଚ୍ୟ ହେବ କି ? ତାଙ୍କର ବହୁ ବକ୍ତୃତା ମୁଁ ଶ୍ରବଣ କରିଛି ବିମୋହିତ ହୋଇଛି ।

ଡକ୍ଟର ପ୍ରଫୁଲ୍ଲ ମହାନ୍ତି ମୋର ସାହିତ୍ୟିକ ପ୍ରତିଭାକୁ ପ୍ରଶଂସା କରିବାରେ କେବେ କୁଣ୍ଠାବୋଧ କରିନାହାନ୍ତି । ମୋର କବିତା, ନାଟକ, ନାଟ୍ୟ ନିର୍ଦ୍ଦେଶନା ଓ ଅଭିନୟରେ ପ୍ରଲୁବ୍ଧ ବୋଲି ପ୍ରଶଂସା କରି କହନ୍ତି । ଅନୁରୋଧ କ୍ରମେ ମୋର ନାଟକ 'ଅନ୍ଧ ଆଭିଜାତ୍ୟ' ଓ କବିତାଗ୍ରନ୍ଥ 'ସତ୍ୟ ଅସତ୍ୟ ମହାସତ୍ୟ'ର ମୁଖବନ୍ଧ ସେ ରଚନା କରିଛନ୍ତି ।

ପ୍ରଫୁଲ୍ଲ ମହାନ୍ତି ଯେଉଁ ସଭା ସମିତି କିମ୍ବା କୌଣସି ସାମାଜିକ ଅନୁଷ୍ଠାନକୁ ନିମନ୍ତ୍ରଣ କଲେ ମୁଁ ନଯାଇ ଏଡ଼ାଇ ଦେଇ ରହିପାରେ ନାହିଁ । ମୁଁ ତାଙ୍କୁ ଯେତେବେଳେ ଯେଉଁ ଯେଉଁ ଉତ୍ସବକୁ ଅତିଥି ଭାବେ ନିମନ୍ତ୍ରଣ କରିଛି, ଅନୁରୋଧ କରିଛି, ସେ ମୋ ଅନୁରୋଧ ଏଡ଼ାଇ ଦେଇ ନାହାନ୍ତି । ବିଶେଷ କରି ସେ ଆମ ଗ୍ରାମ ଜଗନ୍ନାଥ ପ୍ରସାଦ ସ୍କୁଲର ସୁବର୍ଣ୍ଣ ଜୟନ୍ତୀକୁ ମୋ ଅନୁରୋଧରେ ଯୋଗଦାନ କରି ଏକ ଓଜସ୍ୱିନୀ ଭାଷଣ ଦେଇ ଆମ ଅଞ୍ଚଳର ଜନସାଧାରଣଙ୍କୁ ଚମତ୍କୃତ କରିଦେଇଥିଲେ । ସେହିପରି ମୋ ଅନୁରୋଧରେ ସେ କାମାକ୍ଷାନଗର କଲେଜର ରଜତ ଜୟନ୍ତୀ ଉତ୍ସବରେ ଅତିଥି ଭାବେ ଯୋଗଦାନ କରି ଉଦ୍‌ବୋଧନ ଦେଇଥିଲେ । ତାଙ୍କ ଧର୍ମପତ୍ନୀ ଶ୍ରୀମତୀ ମହାନ୍ତି ମୋତେ ଶ୍ରଦ୍ଧା କରନ୍ତି, ପିଲାମାନେ ସମ୍ମାନ ଜଣାନ୍ତି । ସେ ହେଉଛନ୍ତି ଓଡ଼ିଶାର ବିଶିଷ୍ଟ ଲେଖକ ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର ବିଜେତା ଲକ୍ଷ୍ମୀଧର ନାୟକଙ୍କ ଜାମାତା । ମୁଁ ଲକ୍ଷ୍ମୀଧର ନାୟକଙ୍କର ଅନ୍ୟତମ ପ୍ରିୟ ପାଠକ । ସେ ସଂପର୍କ ମଧ୍ୟ ଆମ ସଂପର୍କକୁ ଦୃଢ଼ୀଭୂତ କରିବାର ଅନ୍ୟତମ କାରଣ । ସେ ଆଜି ବୟସର ଅପରାହ୍ଣରେ । ମୁଁ ମଧ୍ୟ ଦଶବର୍ଷ ହେଲା ଅବସର ନେଲିଣି । ତାଙ୍କ ଅବଶିଷ୍ଟ ଜୀବନ ସୁଖମୟ ହେଉ, ସେ ନିରାମୟ ଜୀବଯାପନ କରି ସାରସ୍ୱତ ସାଧନାରେ ବ୍ରତୀ ଥାଆନ୍ତୁ, ଏତିକି କାମନା ।

# ନିରେଖୁଛ ଜୀବନ ଜଗତ

ପାର୍ଥିବ ଦୁନିଆଁରେ ବୁଡୁବୁଡୁ ହୋଇନ ବୋଲି
ଅର୍ଥ ଓ କ୍ଷମତାରେ ପାଗଳ ହୋଇନ ବୋଲି
ମୂଲ୍ୟବୋଧରେ ବିଶ୍ୱାସ କରି
ସ୍ୱାଭିମାନକୁ ବଳି ଦେଇନି ବୋଲି
ତୁମେ ମହାଦର୍ପରେ
ଛାତି ଟାଣ କରି ଚାଲି ପାରୁଛ
ରାଜରାସ୍ତାରେ ବଡ଼ ବଡ଼ ପାହୁଣ୍ଡ ପକାଇ ।
ତୁମକୁ ଛୁଇଁ ପାରିନି ହିଂସା, ଈର୍ଷା
ଦୁର୍ନୀତି ବା କାଳିମାର ଛାଇ
ଆଗକୁ ଚାଲୁଛ ତୁମେ ବଡ଼ ବଡ଼ ପାହୁଣ୍ଡ ପକାଇ ।

ସଂସ୍କୃତିକୁ ସାମ୍ନାକରି
ସୃଷ୍ଟି ଓ ଦୃଷ୍ଟିକୁ
ସଂପ୍ରସାରିତ କରିଛ ବିଶ୍ୱର ଗବାକ୍ଷ ଯାଏ
ଗିରିବନ ସାଗର ବତାଶ
ମାଟିରୁ ଆକାଶ ଯାଏ
କେହି ବାଦ୍ ଯାଇନାହାନ୍ତି ତୁମ ଦୃଷ୍ଟିରେ
ହସି ଉଠିଛି ଫୁଲବନ ଛଏଁ ଛାଏଁ
କେହି ଅବା ନାହିଁ ଅନ୍ତରାୟେ
ତୁମ ଦୃଷ୍ଟି ଦିଗ୍‌ବଳୟ ଯାଏ ।

ସବୁ ସଂକଟକୁ ଏଡ଼ାଇ ଦେଇଛ
ନୀତି ପ୍ରୀତି ସତ୍ୟରଙ୍ଗ କରିନାହଁ ପଛ

ଶାନ୍ତିର ମଳୟ ପିଇ
ଚଢ଼ିଅଛ ପ୍ରଜ୍ଞାର ପାହାଚ ।

ନ୍ୟାୟର ପତାକା ଧରି
ଟେକିଅଛ ଉପରକୁ ହାତ
ଘୃଣା ନାହିଁ ତଳ ପାହାଚକୁ
ହସି ହସି ପରଖିଛ ଭଲମନ୍ଦ
ନିରେଖିଛ ଜୀବନ ଜଗତ ।

*(ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ଉଦ୍ଦେଶ୍ୟରେ)*



# ସାମ୍ବାଦିକ ଡକ୍ଟର ପ୍ରଫୁଲ୍ଲ ମହାନ୍ତି

**ସୁଭାଷ ଶତପଥୀ**

ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି କେବଳ ରାଜ୍ୟର ନୁହନ୍ତି, ଦେଶର ଜଣେ ସୁନାମଧନ୍ୟ ଶିକ୍ଷାବିତ୍ ଭାବେ ସମସ୍ତଙ୍କ ନିକଟରେ ସୁପରିଚିତ। ଇଂରାଜୀ ସାହିତ୍ୟର ଜଣେ ଅଧ୍ୟାପକ ଭାବେ ଦୀର୍ଘ ସାଢ଼େତିନି ଦଶନ୍ଧି ଧରି ତାଙ୍କର ଅଧ୍ୟାପନା ଜୀବନରେ ସେ ଅନେକ କୃତୀଛାତ୍ରଛାତ୍ରୀଙ୍କୁ ମାର୍ଗଦର୍ଶନ କରାଇଛନ୍ତି ଓ ସେମାନେ ଏବେ ନିଜ ନିଜ କ୍ଷେତ୍ରରେ ସୁପ୍ରତିଷ୍ଠିତ। ପ୍ରଫେସର ମହାନ୍ତି, ଯାହାଙ୍କୁ ମୁଁ ସମ୍ମାନର ସହ 'ସାର୍' ବୋଲି ସମ୍ବୋଧନ କରେ, ଯଦିଚ ମୁଁ ଇଂରାଜୀ ସାହିତ୍ୟର ଛାତ୍ର, ତଥାପି ତାଙ୍କର ସିଧାସଳଖ ଛାତ୍ର ନଥିଲି।ଏହାର କାରଣ ହେଲା- ମୋର ସ୍ନାତକୋତ୍ତର ଶିକ୍ଷା ଉତ୍କଳ ବିଶ୍ୱବିଦ୍ୟାଳୟର ଇଂରାଜୀଭାଷା ଓ ସାହିତ୍ୟ ବିଭାଗରୁ ଯେତେବେଳେ କିସେ ରେଭେନ୍ସା କଲେଜ କିମ୍ବା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଥିଲେ। କିନ୍ତୁ ଘଟଣାଚକ୍ରରେ ତାଙ୍କ ସହ ମୋର ସାକ୍ଷାତହୋଇଥିଲା ୧୯୯୭ ମସିହାରେ, କର୍ମକ୍ଷେତ୍ରରେ। ପ୍ରଫୁଲ୍ଲସାର୍ କେବଳ ଇଂରାଜୀ ସାହିତ୍ୟର ଅଧ୍ୟାପକ ନୁହନ୍ତି, ତାଙ୍କର ଆଉ ଗୋଟିଏ ବଡ଼ ପରିଚୟ ହେଲା ତାଙ୍କର ସାହିତ୍ୟାନୁରାଗ। କବିତାଠାରୁ ନାଟକ, ଗଳ୍ପ ଠାରୁ ସମାଲୋଚନା ଓ ପ୍ରବନ୍ଧ, ସବୁଥିରେ ତାଙ୍କର ଦଖଲ। କିନ୍ତୁ ଚାକିରୀର ଶେଷ ପର୍ଯ୍ୟାୟରେ ପ୍ରଫେସର ପଦବୀରୁ ଇସ୍ତଫା ଦେଇ ସେ ପାଦ ବଢ଼ାଇଥିଲେ ଆଉ ଗୋଟିଏ ନୂଆକ୍ଷେତ୍ରକୁ: ସାମ୍ବାଦିକତା। ସାମ୍ବାଦିକତା ଏବେ ପାଶ୍ଚାତ୍ୟ ଜଗତରେ ସାହିତ୍ୟର ସଦ୍ୟତମ ବିଭାଗ ଭାବେ ସ୍ୱୀକୃତ।ଏହାର ପ୍ରମାଣ ମୁଁ ଦେଖିବାକୁ ପାଇଥିଲି ସାରଙ୍କ ପାଖରେ।

୧୯୯୭ ମସିହାରେ ଆମର ଦେଖାସାକ୍ଷାତ 'ସମୟ' ସମ୍ବାଦପତ୍ର କାର୍ଯ୍ୟାଳୟରେ। ସେତେବେଳେ ନୂଆକରି ସମ୍ବାଦପତ୍ର ଆତ୍ମପ୍ରକାଶ କରିଥାଏ। 'ସମୟ ସାପ୍ତାହିକୀ' ପତ୍ରିକାର ସଂପାଦକ ହୋଇ ସେ ଯୋଗ ଦେଇଥାନ୍ତି। କିଛି ସହକର୍ମୀଙ୍କ ମନରେ ଦ୍ୱନ୍ଦ୍ୱ ଥାଏ ଓ

ସେମାନେ ତାହା ପରୋକ୍ଷରେ ଚୁପୁରୁ ଚାପୁରୁ ହେଉଥାନ୍ତି ଯେ ପ୍ରଫୁଲ୍ଲ ମହାନ୍ତି ଇଂରାଜୀ ପ୍ରଫେସର। ଓଡ଼ିଆ କ'ଣ ଲେଖିବେ ଓ ଗୋଟିଏ ସାପ୍ତାହିକୀ ପତ୍ରିକାର ଅବା କି ସମ୍ପାଦନା କରିବେ ? କିନ୍ତୁ ସେମାନଙ୍କ ସମସ୍ତଙ୍କ ଆଶଙ୍କାକୁ ଗୋଟିଏ ଦୁଇଟି ଲେଖାରେ ସାର୍ ଭୁଲ୍ ବୋଲି ପ୍ରମାଣିତ କରି ଦେଇଥିଲେ। ଏହାର କାରଣ ପାଶ୍ଚାତ୍ୟ ସାହିତ୍ୟଠାରୁ ନେଇ ଦେଶର ସଦ୍ୟତମ ରାଜନୀତି ଓ ଅର୍ଥନୀତି ସଂପର୍କରେ ତାଙ୍କର ଅଗାଧ ଜ୍ଞାନ ଓ ସେ ତାହାକୁ ସଂପୂର୍ଣ୍ଣ ନିଆରା ଓ ଭିନ୍ନଢଙ୍ଗରେ ତର୍ଜମା କରୁଥିଲେ।ଏଯାବତ୍ ତାଙ୍କର 'ସାଂପ୍ରତିକୀ' ସ୍ତମ୍ଭରେ ଏହା ଜାରିରହିଛି।

ପ୍ରଥମ ଦେଖା ସାକ୍ଷାତରୁ ହିଁ ସେ ମୋତେ ସ୍ନେହ କରି ବସିଥିଲେ। ସମ୍ଭବତଃ ଏହାର କାରଣ ଥିଲା, ଇଂରାଜୀ ସାହିତ୍ୟର ଉଭୟେ ଥିଲୁ ଛାତ୍ର। ଇଂରାଜୀ ପ୍ରଫେସର ହେଲେ ସୁଦ୍ଧା ସାର୍‌ଙ୍କ ଓଡ଼ିଆ ଲେଖା ଯେତିକି ଶୁଦ୍ଧ ସେତିକି ଯୁକ୍ତିନିଷ୍ଠ ଓ ପ୍ରଭାବୀ। ଏହା ତାଙ୍କ ଇଂରାଜୀ ସାହିତ୍ୟ ଅଧ୍ୟୟନ ଓ ଅଧ୍ୟାପନାର ଶୃଙ୍ଖଳା ବୋଲି ମୁଁ ଭାବେ।

ସାରଙ୍କ ବିଶେଷତ୍ୱ ହେଲା, କେବଳ ସାହିତ୍ୟ ନୁହେଁ, ସବୁଥିରେ ତାଙ୍କର ରୁଚି। ସବୁକଥା ଜାଣିବାର ଆଗ୍ରହ ଓ ନିଷ୍ଠା। ଏପରିକି କ୍ରିକେଟ୍ ଖେଳରେ କେଉଁ ବ୍ୟାଟ୍ସମ୍ୟାନ କେତେ ରନ୍ ସଂଗ୍ରହ କଲା ଓ କେଉଁ ବୋଲର୍ କିଭଳି ବୋଲିଂ କରିବାରେ ମାହିର୍ ସେକଥା ତାଙ୍କୁ ଭଲଭାବେ ଜଣା। ଫୁଟବଲ ଖେଳରେ ତ ତାଙ୍କ ରଚି ସର୍ବାଧିକ। କେବଳ ଜାଣିବା ନୁହେଁ, ପଢ଼ାପଢ଼ିରେ ମଧ୍ୟ ସମସ୍ତଙ୍କଠାରୁ ସେ ଆଗୁଆ। ଅନ୍ୟ ଭାଷାରେ କହିବାକୁ ଗଲେ ସେ ଜଣେ "ପଲିମାଥ୍"। ସାହିତ୍ୟଠାରୁ ରାଜନୀତି, ସମାଜବିଜ୍ଞାନ, ଦର୍ଶନ, ବିଜ୍ଞାନ ଠାରୁ ନେଇ କ୍ରୀଡ଼ା ପର୍ଯ୍ୟନ୍ତ ଯାହା ଉପରେ ଆଲୋଚନା କର, ସାର ସେଥିରେ ଚଟାପଟ ସାମିଲ ହୋଇଯିବେ ଓ କିଛି ନୂଆ ତଥ୍ୟ, ନୂଆ ଦିଗ ଓ ନୂଆ ମତ ଉପସ୍ଥାପନ କରି ସମସ୍ତଙ୍କୁ ଚମକାଇ ଦେବେ। ଏପରିକି ସଂଗୀତ କଥା ପଡ଼ିଲେ ସେ ସେଇ ଆଲୋଚନାକୁ ଡେଇଁ ପଡ଼ିବେ। ତେଣୁ ସାର୍‌ଙ୍କ ଠାରେ ଜଣେ ପର୍ଫେକ୍ଟ ଜର୍ଣ୍ଣାଲିଷ୍ଟର ସବୁ ଉପାଦାନ ଥିବା ସମ୍ବାଦପତ୍ର କାର୍ଯ୍ୟାଳୟର ସମସ୍ତ ସହକର୍ମୀ ଅଚିରେ ଜାଣିପାରିଥିଲେ।

ସାରଙ୍କ ଠାରେ ଗୋଟିଏ ଲକ୍ଷଣ ଯେ କେହି ସହଜରେ ଲକ୍ଷ୍ୟ କରିପାରିବେ। ତାହା ହେଉଛି ତାଙ୍କର ତୁରୁବୁରିଆ ଭାବ। ଯାହା ପଢ଼ିବାକୁ ଥିବ, ଏକାସିଟିଂରେ ପଢ଼ିଦେବେ। ଯାହା କିଛି ଲେଖିବେ ଗୋଟିଏ ଥର ତଳକୁ ମୁଣ୍ଡକରି ବସି ଲେଖିଦେବେ। ଆଉ ଥରେ ପଢ଼ିବେ ନାହିଁ କି ତାକୁ ଚାହିଁବେନି। ଅଧିକାଂଶ ସମୟରେ ମୋତେ ଦେଇଦେବେ

ପଢ଼ିବାକୁ। ମୁଁ ଯଦି କିଛି (କଦବା କେମିତି) ନାଁଟିଏ ଯୋଡ଼ିବାକୁ କି ଆଉଟିକେ ବଦଳାଇବାକୁ କହିବି, ତାଙ୍କର ସେଇ ଗୋଟିଏ ସିଗନେଚର୍ ଉତ୍ତର- 'ଯାହା କହୁଚ, କରିଦିଅ ହେ... ମୋତେ ଦେଖେଇବା ଦରକାର ନାହିଁ।' ସାର୍ ସବୁବେଳେ କହନ୍ତି- My first draft is my final draft. ସତକୁ ସତ ତାଙ୍କ ହାତଲେଖା ଯିଏ ପଢ଼ିବ, ତା'ର ପ୍ରମାଣ ନିଶ୍ଚିତ ପାଇଯିବ। ସଦାବେଳେ ଏ୪ ସାଇଜ୍ ଅର୍ଦ୍ଧ ନୂଆ ବଣ୍ଡ୍‌ପେପର ଛଡ଼ା ଆଉ କୌଣସି ପେପରରେ ସାର୍ ଲେଖନ୍ତିନି। ଆଉ ସଦାବେଳେ ଗୋଟିଏ ଦୁଇଟି ପାର୍କର କି ସେଫର୍‌ପେନ୍ ତାଙ୍କ ସଫାରି ପକେଟରେ ମରା ହୋଇଥିବ। ସେଇଥିରେ ସେ ଲେଖନ୍ତି।

ସାପ୍ତାହିକ ପତ୍ରିକା କହିଲେ ରାଜନୀତିଠାରୁ ଆରମ୍ଭ କରି ସାମାଜିକ, ଅର୍ଥନୈତିକ ଓ ଅନ୍ୟାନ୍ୟ ପ୍ରସଙ୍ଗ ରହିଥାଏ। ପୁଣି ପ୍ରତି ସପ୍ତାହରେ ପ୍ରକାଶ ପାଉଥିବାରୁ ସେଥିପାଇଁ ନିଜେ ଲେଖିବା, ଅନ୍ୟାନ୍ୟ ଲେଖା ସଂଗ୍ରହ କରିବା ଓ ସେସବୁକୁ ଭଲଭାବେ ସଂପାଦନା କରି ପ୍ରକାଶ କରିବା ଦୁରୂହ ବ୍ୟାପାର। କିନ୍ତୁ ସାର୍ ଏସବୁ କାମରେ ପ୍ରଥମ ସଂଖ୍ୟାରୁ ହିଁ ନିଜର ସଫଳତା ପ୍ରତିପାଦିତ କରିପାରିଥିଲେ।

ସାରଙ୍କ ସଂପାଦକୀୟ ବେଶ୍ ବଳିଷ୍ଠ, ଯୁକ୍ତିନିଷ୍ଠ ଓ ଗଠନମୂଳକ। ମନେଅଛି, ୧୯୯୭ ମସିହା ପ୍ରାରମ୍ଭରେ ରାଜପଥରେ ନିର୍ମିତ ହୋଇଥିବା ହମ୍ପସ୍ ଉପରେ ସେ ଲେଖିଥିବା ଏକ ସଂପାଦକୀୟ। ଖୋର୍ଦ୍ଧା ନିକଟରେ ଥିବା ସୁଉଚ୍ଚ ହମ୍ପ ଯୋଗୁ ଦୁର୍ଘଟଣା ଘଟି କେତେଜଣ ଯୁବକ ପ୍ରାଣ ହରାଇଥାନ୍ତି। ତାହା ଏକ ଘଟଣା କିମ୍ବା ଦୁର୍ଘଟଣା ମାତ୍ର। କିନ୍ତୁ ହମ୍ପସ କେମିତି ଦୁର୍ଘଟଣାର କାରଣ ପାଲଟିଲା ଓ ବେଗ କିଭଳି ଆମ ଭିତରୁ ଆବେଗକୁ ନିଃଶେଷ କରିଦେଇଛି ସେଇ ପ୍ରସଙ୍ଗକୁ ନେଇ ସାର ସଂପାଦକୀୟ ଲେଖିଥିଲେ। ସଂପାଦକୀୟ ନୁହେଁ ତ ତାହା ଥିଲା ଜୀବନ ସଂଗୀତ। ବେଶ୍ ଆବେଗପୂର୍ଣ୍ଣ। ଭାବ ଉଦ୍ରେକକାରୀ। ଏହି ସଂପାଦକୀୟ ପଢ଼ି କେହିଜଣେ ଜାତୀୟ ରାଜପଥର ଉଚ୍ଚପଦବୀ ଯନ୍ତ୍ରୀ ( ନାଁ ମନେନାହିଁ) ସାରଙ୍କୁ ବଧେଇ ଜଣାଇବାକୁ ଅଫିସକୁ ଆସିଥିଲେ। ନିଛକ ଘଟଣାକୁ ଯେ ଭାଷାର ସରଳତା ଓ ଭାବର ଗଭୀରତା ମାଧ୍ୟମରେ ଏକ କାଳଜୟୀ ସାହିତ୍ୟକୃତି ବନେଇ ଦିଆଯାଇପାରେ, ତାହା ସେଦିନ ମୁଁ ଦେଖିଥିଲି। ସାର୍‌ଙ୍କର ଏମିତି ଅନେକ ଲେଖା ଅଛି। ଢେର୍‌ବର୍ଷ ତଳେ ବିଶିଷ୍ଟ କଥାକାର ସୁରେନ୍ଦ୍ର ମହାନ୍ତିଙ୍କର ଗୋଟିଏ ସଂପାଦକୀୟ 'ଇନ୍ଦିରାଗାନ୍ଧୀଙ୍କ ଶେଷ ଅଭିଳାଷ' (ସମ୍ଭବତଃ ୧୯୯୪ ମସିହା ନଭେମ୍ବର ପହିଲାରେ ଲିଖିତ) ପଢ଼ି ତାଙ୍କୁ କେମିତି ବହୁଲୋକ ପ୍ରଶଂସାପତ୍ର ପଠାଇଥିଲେ ଓ ବଧେଇ ଜଣେଇବାକୁ

ଭେଟିବାକୁ ଆସିଥିଲେ ତାହା ମୋର ସ୍ମରଣ ପଡ଼ିଯାଇଥିଲା। ସେଇଠୁ ମୋର ଧାରଣା ବଦ୍ଧମୂଳ ହୋଇଥିଲା ଯେ ସାହିତ୍ୟିକମାନେ ହିଁ ସବୁଠୁ ଭଲ ସଂପାଦକୀୟ ଲେଖିପାରନ୍ତି। କେବଳ ଗୋଟିଏ ନୁହେଁ, ପ୍ରଫୁଲ୍ଲସାର୍ ଗତ ଦୁଇ ଦଶନ୍ଧି ଭିତରେ ଏମିତି ଶହଶହ ସଂପାଦକୀୟ ଲେଖିଛନ୍ତି। ବେଳେବେଳେ ମୋର ମନେହୁଏ ଯଦି ସେ ଅଧ୍ୟାପନା ନକରି କୌଣସି ଇଂରାଜୀ ଖବରକାଗଜରେ କାମ କରିଥାନ୍ତେ, ତା'ହେଲେ ନିଶ୍ଚିତ ଭାବେ ଦେଶର ଜଣେ ନାମକରା ସଂପାଦକ ହୋଇପାରିଥାନ୍ତେ।

ପରିଣତ ବୟସରେ ତାଙ୍କର ସାମ୍ବାଦିକତା କ୍ଷେତ୍ରରେ ପାଦ ଥାପିବା ପ୍ରଫେସର ମହାନ୍ତିଙ୍କୁ ଏକ ନୂତନ ପରିଚୟ ପ୍ରଦାନ କରିଛି।ଏହା ତାଙ୍କର ବୌଦ୍ଧିକ ପରିସରକୁ ଆହୁରି ବ୍ୟାପ୍ତ କରିଛି। ୮୦ ବର୍ଷରେ ସେ ପଦାର୍ପଣ କରିବା ଅବସରରେ ତାଙ୍କର ଦୀର୍ଘ ଓ ନିରାମୟ ଜୀବନ ପାଇଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା।

ମୋ: ୯୯୩୭୮୧୬୧୩୩



# Prafulla Sir:
# The Living Legend

**Suman Mahapatra**

Creativity and critical faculty, the poet and scholar are a rare combination indeed, and those gifted with both, seemingly mutually-exclusive to each other, have carved out a distinctive place in the domain of art and literature, science and philosophy. Their perceptive minds and holistic approach to life and the world have left footprints in the sands of Time and remain a source of inspiration and profound influence. One feels really fortunate as one comes across such a personality in one's life at some point or the other, the more the point of contact and intimacy the better for soul-fulfilment. The originality of mind and understanding, the comprehensive outlook and study are certainly their exclusive possessions that they radiate, and in the process transform even the lowest of the low, the meanest of the mean. My Prafulla Sir has been to me such an endearing personality, a redeeming force and constant mentor lifelong. With deep love and great reverence to my Gurudev Prof. Prafulla Kumar Mohanty (endearingly called Prafulla Sir) I record some of my revitalising moments from my long association and intimacy on the eve of his attaining eightieth year, a life full of meaning and achievements enriched with his multifarious activities and shifting paradigms. A man who always constructed his own world of wishes, his *Ichhara Pruthvi* solidly founded on his poetic beliefs and ideas, convincing arguments and logic and who always preferred to tread on 'the Road not

Taken', an original mind as he is. I am proud of being his first-born, the first brainchild.

My first meeting with Prafulla Sir dates back to 1975 as I was transferred from N.C. College, Jajpur to Khallikote College, Berhampur when the century-old institution had degenerated to an ignominious state three or four years before because of students' indiscipline and loss of sanctity in the conduct of examinations. Hats off to that great soul Prof. P.K.Das, the then Principal who took over his office during the turmoil and turbulence of decay and degeneration and boldly restored its former glory and reputation within a short time, of course taking risk on his life at each and every step. The institution will never forget the departed soul but for whom the revival and resuscitation were possible. At that time my teacher Prafulla Sir was a young Reader who had rendered his ungrudging help and support to the Principal enriching his strength and authority by gladly taking up extra-curricular assignments like the Advisor, Students' Union, Vice-President of the Drama Association and being member of various important committees. He was loyal and devoted for a greater cause and I had personally seen him with his invincible spirits. It was not that he helped the administration but made his distinctive mark more by his academic excellence and first rate teaching. He was assigned mostly Honours and P.G. classes which he took very diligently imbibing a real interest and enthusiasm among the students. In the meantime he was selected at the national level on a cultural exchange programme to visit different places and universities in USA and to deliver lectures on culture and Indian philosophy. A spectacular achievement certainly at such a young age.

At home, after he was free from his official work, he carried on his creative and also research work towards his Doctoral degree burning the midnight lamp literally. As he was grappling with the issues of his project, he used to discuss them freely in

the department which in fact influenced and inspired us, the young junior colleagues. Those moments were really memorable especially for me that motivated me towards pursuing my research under his supervision. Greatly impressed by his profound ideas and his inimitable style, I was determined to become his scholar. Immediately after he was awarded the Ph.D, I approached him expressing my keen interest and intent to work under his supervision which he very gladly accepted. Then began our combined efforts in the year 1978 with my registration under Berhampur University. I being his first scholar had the real privilege of discussion and deliberation whenever I wanted; what I noticed in him was a fondness for interpretation of the original texts without being formulated and guided by critical opinions. His approach was unique and that of a perfectionist. His literary and critical personality was shaped and moulded by his wider reading of the original texts, both classical and modern and philosophical writings of great minds. My topic of research was 'The Growth of Maugham's Social Vision: A Study of his Major Plays' which was almost a virgin field as Somerset Maugham was popularly known and studied as a novelist and short story writer, though he had thirty two plays to his credit, eighteen of them published by William Heinemann Ltd. in three volumes. Professor Mohanty always called research a 'razor's edge' and made me work day and night towards the goal. Normally he is very friendly and amiable, gentle and soft spoken. But I was really astonished to find a totally different demeanour when he was at his study table: the stern look of a hard task master and diehard perfectionist. When he did not agree with my draft, he revised it totally, sometimes he appreciated and encouraged when my draft was up to his satisfaction. However, my apprehension made me shaky as long as I was sitting beside him with his spectacles glued to the page.

In the mean time he joined as a Reader in Berhampur University on lien from government service, but there his stay was not long. He reverted to the government and was posted as the Secretary, CHSE, Orissa; the organization was founded by him as its first Secretary. The new born babe grew under his nourishing care and vision, and its flourishing strides demonstrated his efficiency as a good and successful administrator. This new challenging assignment at Bhubaneswar, however, was not an impediment in his normal routine life of creativity and research. When he shifted to Bhubaneswar from Berhampur, I had to come on almost every or alternative week end to Bhubaneswar to finalize my thesis. He never treated me as a scholar but a member of his family, sometimes I stayed in his house at Bapujinagara. His wife, whom I address as 'Bhauja' is so loving and caring whose hospitality I can never forget. She was really a companion to Sir all through catering to all his needs, shouldering the entire household responsibility and giving him a full time towards his creative pursuits. She took all pain to arrange for me lunch and dinner, I felt quite homely because of her love and care. I came frequently to Sir's place as my thesis was in the final stage and finally the work was completed in the year 1984 and submitted to the university. He is so meticulous and perfectionist that even in the last moment I had to tear the first chapter as it somehow did not fit in his line of argument; most likely I digressed which he ruthlessly rejected. In those days the thesis was manually typed with four carbon copies. I realized my mistake, rewrote most of the portions of the first chapter which he gladly approved. Thus our intellectual endeavour of long six years had seen the light of day in the form of a dissertation for the award of Ph.D.

He is highly ambitious and would never compromise with quality and standard or would never manage with a mediocre and sub-standard. At that time the foreign examiner was a must, accordingly he sent my thesis to Prof. John Carey, Merton

College, Oxford University, a giant in the field of drama and poetry; another examiner was Prof. M.K. Naik, an equally eminent figure in the national and international level. I still remember his fearless opinion, when his friends asked Prof. Mohanty how come that 'you sent the thesis of your first scholar to Oxford, considered to be the toughest in the world and also to no less a professor like M.K. Naik.' He replied to them by using an Odia statement whose English rendering would be 'I would prefer to get a slap by a palm wearing golden rings(symbol of royalty and aristocracy)to being accepted by any Tom, Dick and Harry'. Look at his confidence and respect for excellence. Finally, when the report of John Carey came from Oxford with his greater appreciation for our original work along with his recommendation for the award of the degree, his joy knew no bounds which he did not hesitate to display before those friends who had an iota of doubt with regard to its result. This is the uncompromising quality of my Gurudev that he demonstrated at each and every stage of his life, no matter what difficulties he faced.

His administrative efficiency was again tested and his ability proved when he was posted as DDPI(General) in the office of the Directorate. Thereafter he became the Professor and Head of the English department, Khallikote College, Berhampur, a shift from administration to academics. Basically a scholar and a great teacher as he is, the department was vibrant with seminars, literary activities, stage performance and other such scholastic pursuits. Apart from his teaching and scholarship, he is a very good actor, director, a classical singer—all in one. The department became a topic of discussion and admiration in the city with his multi-dimensional personality. Thereafter he was posted as the Vice Chairman of CHSE, but there his stay was not long because of his unyielding and straightforward nature. Joined again as Professor in Khallikote college, I was still there in the same

college to work under his dynamic leadership. This time he became more vibrant and energetic with his enriched ideas and vision, made his presence felt in all the academic spheres. Eminent professors both from inside the country and abroad were invited for extramural lectures, weekly seminars were held, students were encouraged to present papers and the department on the whole was agog with literary and cultural activities.

Coincidentally both of us were transferred to Ravenshaw college, Cuttack in the year 1992 and it was to our good luck that he headed the age old post-graduate department of English as Professor otherwise known as the Sonepur Chair of English. By his bold and fearless steps, he brought about a radical change in the conduct of PG examinations, especially reporting the malpractice caring a fig for the threatening of the anti-social elements. But he would never yield or overlook any lapses. Finally, he proved his mettle as an administrator and academician when God entrusted him the onerous task of being the Principal of Ravenshaw College, the centre of excellence and culture of Odisha. I still remember his long address to the Staff Council on the very day he assumed the office, envisaging a wider spectrum of academics and scholarship with a chartered action plan. He himself composed a poem 'Ravenshaw' singing the glory and reputation of the age-old institution. The college was cleaned of the anti-social elements and the hooligans those who had a free entrance to the campus and hostels jeopardising its peace and stability. He supported by his willing and well meaning colleagues paid a visit to the hostels regularly in the evenings thereby raising the moral boost of the hostel authorities and boarders. During his time Ravenshaw Development Trust was formed aiming at its all round development and excellence. It paved the ground for the Unitary University. He was very firm and strict, but at the same time a generous and sympathetic heart was beaming all through. Ravenshaw College had a facelift with his undaunted

personality and academic stature. But unfortunately, for reasons unknown, (may be because of certain nasty campus politics and government apathy) he was transferred as the Principal of Khallikote college which he ungrudgingly accepted. The line of Emerson 'To be great is to be misunderstood' seems appropriate in this context. Even towards the last part of his service career, his undiminished will power and vitality were clearly manifest in the functioning of the new assignment. But for certain physical ailments and pressing constraints, he had to opt for voluntary retirement, just a few months before his superannuation, putting an end to his challenging but long meaningful career. He was certainly a force to reckon with in the field of academics and administration. He was an unyielding and straightforward personality throughout encountering all the vicissitudes of life, threats and challenges.

After his retirement from government service, his literary and scholarly pursuits attained legendary heights, the flight of his imagination and intellect reached the zenith with the piles of publications leading to high acclamations and accolades. It earned him the covetous Central Sahitya Academy award for his new reading and interpretation of *Srimadbhagwadgita*. The readers and scholars are well aware of his abundance of output in literature, philosophy and current social issues that I need not repeat. His writings are both in English and Odia which reveal his comprehensive study, a new and innovative look at the ancient and the modern, social, cultural and spiritual issues. He interprets the Puranas and mythology from a completely new angle and perspective, very convincing and logical. His *Ichhara Pruthvi* , a classic in Odia, embodies his deeper understanding of life and its issues woven around the superstructure of the *Ramayana* and *Mahabharat*; it envisages his worldview and certainly a milestone in philosophy and culture. His writings are very interesting, strange though at times, fill the columns of newspapers

and magazines that made the discerning readers react and respond. There is a greater variety and charm in his writings, from the lighter to serious and grave concerns of life. His inimitable and unique style reflect his personality. The latest book *Reality Revisited* is a brilliant and radical exposition of current issues, very interesting and argumentative. His lifelong pursuits, experiments in different fields of writing earned him a number of prestigious awards nationally and provincially in recognition of his versatile talent. Another important aspect of his personality that never goes unnoticed is that he is a brilliant speaker, eloquent and captivating both in English and Odia. What is remarkable about his Odia speeches is that he never uses a single English word in the course of his talk. The words are shot bullet-like, the darting of arrows reaching the target. He is invited to address the gatherings, both elite and the common, on different aspects of life. This continues even today.

Because of his publications and radical opinions he was made the prestigious Member of the Press Council of India for a particular term. Now associated with the literary publications of some esteemed dailies he keeps himself engaged, 'age cannot wither him nor custom stale his infinite variety.'

It may not be an overstatement but honorific if I describe him as an 'overreacher' who always aspired for dreamy heights and unchartered ways. He is far from being complex, is gullible because of which he has been many a time taken advantage of. It might be his shortcoming; he perpetually remains at a different height, in a forbidden territory where he really enjoys. May his fertile imagination work till the last moment of his life and may Lord Jagannath make the rest of his life healthy and long for the posterity to gain a lot more!



# A Guardian Angel

***Prof. (Dr) Ram Narayan Panda***

My joy knew no bounds when I came to know that a Souvenir was going to be released on the occasion of the Eightieth Birthday Celebration of esteemed Professor Prafulla Kumar Mohanty, my teacher who is a multifaceted genius. He is at once an iconic English teacher, a dramatist, a top-bracket scholar, an Editor-journalist, a prominent litterateur of post-independence Odisha, a Sahitya Akademi awardee, a free-thinker, a great humanist, educationist, administrator, and an orator par excellence.

Preparing a write-up on him is bound to be a daunting task, considering the fact that Professor Mohanty, an illustrious son of Mother Odisha in post-Independence India, is second to none as regards acquisition of excellence in varied fields.

Needless to mention, Teaching of English and scholarship in English Studies is his forte. My association with him dates back to 1981. After I post-graduated from Utkal University in 1980, I joined the Postgraduate Department of English, Berhampur University as a student of M.Phil. while he served the Department as a Reader in English. I was certainly charmed by his personality and enjoyed his classes immensely thanks to his oratorical skills, remarkable critical acumen, honesty of perception, mastery of the topics, amazing range of knowledge in the allied areas such as philosophy and psychology combined with an inimitable and unflinching passion for teaching.

To my good luck, he was assigned to be my M.Phil. supervisor. He literally nurtured me as a young scholar and helped me complete my M.Phil. The tips I received from him during that short period of time stood me in good stead the rest of my life. He soon quit Berhampur University in favour of administrative positions before he resumed teaching as a Professor of English at Khallikote College. Subsequently, he moved to Ravenshaw College where he retired as the Principal.

As a teacher and scholar, he has always been a role-model for the subsequent generations of scholars and teachers. Generations of scholars have looked up to him. He has shaped the lives of many academics who researched under his guidance for Ph.D. and M.Phil. For many, he has been a guardian angel, monitoring the course of their academic life.

We had the opportunity to meet on the occasion of several academic programmes such as conferences and share our views on different issues. And every time we met, I greeted him with utmost respect and he treated me with great affection. I never let go of any opportunity to get him invited to our Department to deliver lectures, particularly whenever we had UGC Refresher Courses. He never let us down. He has enthralled the participants of many refresher courses with his erudite lectures in our Department during my Headship.

He has published numerous books and articles in different areas of English and Odia literature. His famous Odia play *Kalajahna* has been widely acclaimed as a classic in the Odia theatre. It has been phenomenally successful. As an exponent of the English theatre in Odisha, he has staged many English classics such as shakespeare's *Othello*. He is also reckoned as a frontline critic of Odia literature.

As a radical administrator, he has left many tell-tale evidences of his progressive outlook in terms of development, reformation in

